# ଟେହରେସା

( ପରିବର୍ଦ୍ଧିତ ଦ୍ୱିତୀୟ ସଂସ୍କରଣ )

ଶ୍ରୀ ଫତୁରାନନ୍ଦ

ଓଙ୍କ. ମହାପାତ୍ର ଏଣ୍ଡ୍ କୋଃ
ଛାତ୍ରସାଥୀ ଅଫିସ୍
ନମଚଉଡ଼, କଟକ-୨

ପ୍ରକାଶକ :
**କେ. ମହାପାତ୍ର ଏଣ୍ଡ୍ କୋ:**
**ଛାତ୍ରସାଥୀ ଅଫିସ**
ନିମଚଉଡ଼ି, କଟକ-୨

ପ୍ରଚ୍ଛଦପଟ ଶିଳ୍ପୀ :
**ଶ୍ରୀ ଶ୍ରୀନାଥ ଚଟାର୍ଜୀ**

ପ୍ରଥମ ସଂସ୍କରଣ :
**ସେପ୍ଟେମ୍ବର—୧୯୫୯**

ପରିବର୍ଦ୍ଧିତ ଦ୍ୱିତୀୟ ସଂସ୍କରଣ :
**ମାର୍ଚ୍ଚ ୧୯୭୨**

ମୁଦ୍ରାକର :
**ଶ୍ରୀ ଜୟନ୍ତ ଷାଠିଆ**
**ଶ୍ରୀ ରାଧାନାଥ କୋ-ଅପରେଟିଭ ପ୍ରେସ୍**
ବାଲୁବଜାର, କଟକ-୨

ମୂଲ୍ୟ



## ଉତ୍ସର୍ଗ

**ଶ୍ରୀଯୁକ୍ତ ମନୋଜ ଦାସ**

ଆପଣଙ୍କର ଯଶସ୍ୱୀ ଲେଖନୀ ଓଡ଼ିଆ ଗଳ୍ପ ସାହିତ୍ୟକୁ ପରିପୁଷ୍ଟ ଏବଂ ଐଶ୍ୱର୍ଯ୍ୟମୟ କରିଛି । ଜଣେ ଉଚ୍ଚକୋଟୀର ଗାଳ୍ପିକ ଭାବରେ ଆପଣ ଅଗଣିତ ଓଡ଼ିଆ ସାହିତ୍ୟପ୍ରେମୀ ତଥା ପାଠକମାନଙ୍କ ନିକଟରେ ସୁପରିଚିତ ।

**'ଟେରେସା'**କୁ ଆଜି ଆପଣଙ୍କ ନାମରେ ଉତ୍ସର୍ଗ କରି ନିଜକୁ ଗୌରବାନ୍ୱିତ ମନେ କରୁଛି ।

ଫତୁରାନନ୍ଦ

# ଦ୍ୱିତୀୟ ସଂସ୍କରଣର ଭୂମିକା

ପ୍ରଥମ ସଂସ୍କରଣଟି ଅତି ଗ୍ଲେଟ ହୋଇଯାଇଥିଲା । ଗ୍ଲେଟ ହେବା ସବୁକ୍ଷେତ୍ରରେ ଏକ ଅଭିଶାପ । ସମସ୍ତେ ଦେଖିବାମାତ୍ରେ ହେୟଜ୍ଞାନ କରନ୍ତି । 'ହେଃ ! ଏତେ ଟିକିଏ ବହିଟାଏ କହି ଫୋପାଡ଼ି ଦିଅନ୍ତି । ଗୋଟିଏ କଳିକିଆ କଡ଼ମା କଖାରୁ ପାଖରେ ଏକ ଅଧ କୁଣ୍ଢାଳିଆ ବିରାଟକାୟ କଖାରୁ ଥୋଇଦେଲେ ଶେଷଟି ଯେ ସମସ୍ତଙ୍କ ମନ ଆକର୍ଷଣ କରିବ ଏଥିରେ ସନ୍ଦେହ ନାହିଁ ।

ଏଣୁ ଆକାର ଟିକିଏ ବଢ଼ାଇ ଦେବାପାଇଁ ଶେଷ ନଅଗୋଟି ଗପ ଯୋଡ଼ି ଦେଇଛୁ । ଏହା ପାଠକମାନଙ୍କ ଦୃଷ୍ଟି ଆଉ ଟିକିଏ ବେଶି ଆକର୍ଷଣ କରିବ ବୋଲି ଆଶା କରୁଛୁ ।

ପ୍ରଥମ ସଂସ୍କରଣର ଗନ୍ଧ ନାକରେ ବାଜିବାରୁ କେତେ ଜଣ ଓଡ଼ିଆ ଅଧ୍ୟାପକ ମୁଖ ବିକୃତ କରି କହିଛନ୍ତି—"ହେଃ—ଏଇଟା କଟକିଆ ସାହିତ୍ୟ ।" ଏଇଟା କାହାକୁ କେମିତି ଲାଗୁ ପଛକେ ମୋତେ ଖୁବ୍ ଭଲ ଲାଗିଛି । ଲେଖିଲାବେଳେ ଏଇଟା ସାହିତ୍ୟ କି ବାଇଗଣ ମୁଁ ଜାଣିନଥିଲି । ପଶୁମାନଙ୍କୁ ମଣିଷରେ ପରିଣତ କରୁଥିବା ଜଣେ ଅଧ୍ୟାପକ ଯେତେବେଳେ ତାକୁ ସାହିତ୍ୟ ପୁଣି କଟକୀ ସାହିତ୍ୟ ବୋଲି କହିଲେ ସେତେବେଳେ ମୋତେ ରସଗୋଲା ଖାଇଲାପରି ଲାଗିଲା ।

କଟକିଆଙ୍କ ଚାଲିଚଳନ, ଖାତମାଣ୍ଡି, ସମାଜଚିତ୍ର, ସଂସ୍କୃତି ବିଷୟରେ ସବୁକିଛି ଲେଖି ବସିଲେ ଗୋଟାଏ ମହାଭାରତରେ ଥାନ ଅଣ୍ଟିବ ନାହିଁ । କଟକର ତିନି ପାଖରେ ନଈ ଆଉ ଗୋଟାଏ ପାଖରେ ରେଳଲାଇନ । ଚାରିଆଡ଼ୁ ଘେରା । ଏହାର ବାହାରକୁ ଯିବାକୁ ମୋର ସାମର୍ଥ୍ୟ ନାହିଁ । ଯିଏ ବିଶ୍ୱ ପରିକ୍ରମା କରୁଛି କରୁ । ମୋର କଟକ

ଭଲ କି ମୁଁ ଭଲ । କଟକ ମାଟିରେ ଘୁଷୁରି ଘୁଷୁରି ଯଦି ଅଧିକ କିଛି ଶବ୍ଦ କାଢ଼ି ପାରିବ ମୋ ମନଟା ତୃପ୍ତ ହୋଇଯିବ । ଅଧ୍ୟାପକ ବଦ୍ରୂପ କରି ତୃପ୍ତ, ମୁଁ ବଦ୍ରୂପ ଶୁଣି ବି ତୃପ୍ତ । ମୋଟ ଉପରେ ଉଭୟେ ତୃପ୍ତ । ବାକି ରହିଗଲେ ପାଠକମାନେ । ସେମାନେ ଯଦି ତୃପ୍ତ ହୁଅନ୍ତି ହେବେ ତ କସ୍ତୀମାତ୍ର ।

ଶେଷରେ ଜେ. ମହାପାତ୍ର ଏଣ୍ଡ୍ କୋ: ର ନବବାବୁ ମୋ କାଳିକିଆ କର୍ଖାରୁକୁ ଅଧିକ୍ୱଷ୍ମାଲିଆ କଖାରୁରେ ପରିଣତ କରିଥିବାରୁ ତାଙ୍କୁ ହାର୍ଦ୍ଦିକ ଅଭିନନ୍ଦନ ଜଣାଉଅଛି ।

ଫତୁରାନନ୍ଦ

# ସୂଚୀ

# ଘଣ୍ଟି ଝଟ୍‌ର୍

ତିନି ବନ୍ଧୁଯାକ ସକାଳୁଠାରୁ ବାରଣ୍ଡାଉପରେ ବସି ଯାବତ୍ ଅଲଣା କଥାତକ ଚକାଇ ଥାଆନ୍ତି । ଚରଚରା ପାଣି ଇଆଡ଼େ ସିଆଡ଼େ ଭୂଇଁଉପରେ ମାଡ଼ିଗଲା ପରି କଥାର ସୁଅ ୟୁଆଡ଼େ ସିଆଡ଼େ ମାଡ଼ି-ଯାଉଥାଏ । ଗାଁ' ତୁଠଠାରୁ ଜାତିସଂଘ, ବର୍ଣ୍ଣବୋଧଠାରୁ ବେଦାନ୍ତ, ଟାଉଟରଠାରୁ ଜହରଲାଲ ପର୍ଯ୍ୟନ୍ତ କଥା ଲମ୍ବି ଯାଉଥାଏ । ସେମାନଙ୍କ ଭିତରୁ ଜଣେ ହଠାତ୍ ରାସ୍ତା ଉପରକୁ ଚାହିଁ ଆସ୍ତେ ଆସ୍ତେ କହିଲା, "ଆରେ ଏତ ଘଣ୍ଟିଝର୍‌ର୍ ଆସୁଛି ।" ଆଉ ଜଣେ ପଚାରିଲା, "ଆରେ ଘଣ୍ଟିଝର୍‌ର କ'ଣ ? ପ୍ରଥମ ଜଣକ କହିଲା, "ତାହା ବୁଝାଇବାର ବସ୍ତୁ ନୁହେଁ । ଯେପରି ବ୍ରହ୍ମ କହିଲେ କିଛି ବୁଝାଇ ହେବ ନାହିଁ, କେବଳ ଉପଲବ୍ଧି କରି ହେବ, ସେହିପରି ଘଣ୍ଟିଝରର ଅର୍ଥ ବୁଝାଇ ହେବ ନାହିଁ । ସେହି ଭଦ୍ରଲୋକଟି ଏଠାରେ ଆସି କିଛି ସମୟ ବସିଲେ ଘଣ୍ଟିଝରର୍ ମର୍ମ ତୁମ୍ଭେମାନେ ଉପଲବ୍ଧି କରିପାରିବ । ବର୍ତ୍ତମାନ ମୁଁ ତାକୁ ଡାକୁଛି । ଦେଖ ମୋ କଥାର କିଛି ପ୍ରତିବାଦ କରିବ ନାହିଁ । ସବୁଥିରେ ହଁ ମାରିବ ।"

ଏତକ କହିସାରି ସେ ଉଠିପଡ଼ିଲା ଓ ରାସ୍ତା ଉପରକୁ ଚାହିଁ ପାଟିକରି ଉଠିଲା, "ବିଜୟ ବାବୁ, ହୋ ବିଜୟ ବାବୁ ! ଆରେ ବିଜୟ ବାବୁ ଟିକିଏ ଶୁଣ, ୟାଡ଼କୁ ଆସ ।"

ଭଦ୍ରଲୋକଟି ଗାଡ଼ି ଫେଲ୍ ହେବା ଆଶଙ୍କାରେ ଧପାଉଥିବା ପାହାଚପର ଖପ୍ ଖପ୍ ହୋଇ ଚାଲିଯାଉଥିଲେ । ଡାକ ଶୁଣିବା ମାତ୍ରେ ମାର୍ଚ୍ଚିଂ କରୁଥିବା ସୈନ୍ୟପରି ଖଟ୍‌କରି ଅଟକିଗଲେ ଓ ସେଇ ଆଡ୍ଡାରେ ବୁଲିପଡ଼ି ଠକ୍‌ଠକ୍ ହୋଇ ଚାଲିଆସିଲେ । ପ୍ରଥମ ଭଦ୍ରବ୍ୟକ୍ତିଟି ଘରୁ ଆଉ ଖଣ୍ଡେ ଚଉକି ଟାଣିଆଣିଲେ ଓ ଲୌକିକ ସମ୍ଭାଷଣ ପରେ ଚଉକିରେ ବସିବାକୁ କହିଲେ । ମିନିଟେ ଦୁଇ ମିନିଟ୍ ସମ୍ଭାଷଣ ଭିତରେ ବିଜୟ ବାବୁ ଖୁବ୍ କମ୍‌ରେ ଦଶଥର ହାତବନ୍ଧା ଘଡ଼ିକୁ ଦେଖିପକାଇଲେ । ପ୍ରଥମ ବ୍ୟକ୍ତିଟି କହିଲା, "ଆରେ ବସନା, ଏପରି ମାଛି ଲାଗିଲା ପରି ହେଉଛ କାହିଁକି ?"

"ହଁ ହୁଁ ! ଏଇ ଯେ ଆଠଟା ବତିଶ୍ ହେଲା । ଆଉ ଆଠଟା ମିନିଟ୍ ଭିତରେ ମୋତେ ଗୋଟାଏ ଜାଗାରେ ପହଞ୍ଚିବାକୁ ପଡ଼ିବ । କ'ଣ କହୁଚ କୁହ । ମୁଁ ଚଞ୍ଚଳ ଯିବ ।"

"ହଉ ଯିବ ତ, ଏଇ ମିନିଟିଏ ଦୁଇ ମିନିଟ୍ ଟିକିଏ ବସ । ବହୁତ ଦିନରୁ ଦେଖା ହୋଇନି । ଟିକିଏ ଖୁସିଗପ କରିବା ।"

"ଖୁସି ଗପ ? ମାଫ୍ କର । ତୁମେ ତ ଭଲ କରି ଜାଣ, ମୁଁ ଗୋଟିଏ ମିନିଟ୍ ସୁଦ୍ଧା ଗପରେ କଟାଇ ପାରେ ନାହିଁ । ଗୋଟିଏ ମୁହୂର୍ତ୍ତ ବି ଅଯଥାରେ କଟାଇବା ମୋର ନୀତିବିରୁଦ୍ଧ । କ'ଣ କହୁଚ କୁହ । ଆଠଟା ତେତିଶ ହେଲା ।"

"ଏମିତି ତରତର ହେଲେ ହବନା । ତୁମ୍ଭେ କ'ଣ କେଉଁଠି ପାଞ୍ଚମିନିଟ ପାଇଁ ଧୈର୍ଯ୍ୟଧରି ବସିପାରି ନାହିଁ ?"

"ନା, କେବେ ନୁହେଁ । ସୃଷ୍ଟି ପ୍ରଳୟ ହୋଇଯାଉ ପଛେ ମୁଁ କଲୁ ପାଞ୍ଚ ମିନିଟ୍ ସୁଦ୍ଧା ଗପ କରି ଅଯଥା କାଟିପାରିବି ନାହିଁ । ଖେଳା ଖେଳ ତ ଦୂରର କଥା । ସେଗୁଡ଼ାକୁ ମୁଁ ଘୃଣା କରେ । ଓଃ ! ଆଠଟା ଚଉତିଶ ହୋଇଗଲା । ମୁଁ ଚାଲିଲି ।"

"ଆରେ ଏ ଆଚ୍ଛା ମଣିଷ ! ଆରେ ତୁମେ ଏମିତି ତୁରୁତୁରୁ ହେଲେ ଜୀବନରେ କ'ଣ କରିବ ମ ?"

"ହେଃ, ମୋର ସ୍ୱଭାବ ପାଇଁ ମୁଁ ନିଜକୁ ଗୌରବାନ୍ୱିତ ମନେକରେ । ମୁଁ ସମୟର ମୂଲ୍ୟ ବୁଝିଛି । ମୋତେ ବଡ଼ ଦୁଃଖ ଲାଗେ ଯେ ଏଇ ଓଡ଼ିଆ ଜାତିଟା ସମୟର ମୂଲ୍ୟ ସବୁଠାରୁ କମ୍ ବୁଝେ । ସେଇଥିଲାଗି ଏ ଜାତିର ଅବସ୍ଥା ଏପରି ।"

"ହଁ ହଁ ଏ ଯାହା କହୁଚ ତାହା ଠିକ୍ । ଓଡ଼ିଆଗୁଡ଼ାକ ସମୟର ଧାର ଧାରନ୍ତି ନାହିଁ । ମୋଟ ଉପରେ ସମୟ କ'ଣ ଜାଣନ୍ତି ନାହିଁ । ବାସ୍ତବିକ୍ ସମୟଟା ବଡ଼ ମୂଲ୍ୟବାନ ଜିନିଷ ।"

"ଏଥିରେ ଆଉ ସନ୍ଦେହ କରିବାର ଅଛି ? ଟିକିଏ ଭାବନ୍ତୁ ତ; କାର୍ଯ୍ୟ କରିବା ପାଇଁ ଆମର ସମୟ କେତେ କମ୍ । ଆଜିକାଲି ମଣିଷଟାଏ ଖୁବ୍ ହେଲେ ଷାଠିଏ ବର୍ଷ ବଞ୍ଚିବ, ତହିଁରୁ କୋଡ଼ିଏ ବର୍ଷ ସେ କେବଳ ନିଦରେ କଟାଏ, କୋଡ଼ିଏ ବର୍ଷ ଖାନାହାର ଓ ମଜଲିସ୍‌ରେ କଟିଯାଏ । ଆଳସ୍ୟ ଓ ବୃଥା ଗପରେ ପାଞ୍ଚ ବର୍ଷ କଟିଯାଏ । ଉଃ ! ଷାଠିଏ ବର୍ଷରୁ ରହିଲା ମାତ୍ର ପାଞ୍ଚବର୍ଷ । ଯାହାର ଭିତରେ ସବୁ କାର୍ଯ୍ୟ ସାରିବାକୁ ହେବ । ଟିକିଏ ଚିନ୍ତାକରି ଦେଖନ୍ତୁ ତ । ସମୟ କେତେ ମୂଲ୍ୟବାନ୍ ।"

"ବାସ୍ତବିକ୍ ତୁମପରି ସବୁ ଓଡ଼ିଆ ଯଦି ସମୟର ଏହି ମୂଲ୍ୟକୁ ଟିକିଏ ହେଲେ ହୃଦୟଙ୍ଗମ କରିପାରନ୍ତେ ତେବେ ଏ ଜାତିର କେତେ ଉପକାର ହୁଅନ୍ତା ! ତେବେ ତୁମେ ବାଲ୍ୟ ଓ ଯୁବାବସ୍ଥାରେ ଏପରି ଥିଲ କି ନାହିଁ କହିଲ ?"

"ପଚାରିବାକୁ ଆଉ ଅଛି ନା ! ବାଲ୍ୟାବସ୍ଥାରେ ଅନେକାଂଶ ହେଲେ ଯୁବାବସ୍ଥାରେ ଶହେ । ଯୁବାବସ୍ଥାରେ ମୋର ରୁଟିନ ବିଲ୍‌କୁଲ୍ ବନ୍ଧା । ସେକେଣ୍ଡେ ହେଲେ ଏପାଖ ସେପାଖ ହେବ ନାହିଁ । ଥରେ ଆମ ସ୍କୁଲ ହେଡ୍‌ମାଷ୍ଟର ମୋତେ କହିଥିଲେ ଯେ ସମୟଜ୍ଞାନ ବିଷୟରେ ମୁଁ ସାହେବମାନଙ୍କୁ ଟପିଯାଇଛି ।"

"ହଁ, ପ୍ରକୃତରେ ତାହା ଠିକ୍ । ସେଇଟା ତ ଆମେ ସମସ୍ତେ ଭଲ ଭାବରେ ଜାଣିଚୁ । ସମୟଜ୍ଞାନ ବିଷୟରେ ତୁମକୁ କେହି ଟପି ପାରିବେ ନାହିଁ । ହଁ, ଆଉ ଗୋଟିଏ କଥା । ସମୟଜ୍ଞାନ ଯାହାର ଖୁବ୍ ବେଶି ସେ କେବଳ ଭଲ ପାଠ ପଢ଼ାପଢ଼ି କରିପାରେ; ହେଲେ ଖେଳବାଡ଼ି ହୋଇ ପାରିବ ନାହିଁ ।"

"କ'ଣ ହେଲା, ଖେଳବାଡ଼ି ହୋଇ ପାରିବ ନାହିଁ ? ଜାଣ ମୁଁ ଜଣେ ପକ୍‌କା ଖେଳବାଡ଼ି ଥିଲି । ଏବେ ବି ଅଛି । ଫୁଟବଲ୍ କ୍ଲବ, ହକି କ୍ଲବ, ଟେନିସ୍ କ୍ଲବ ସବୁଥିରେ ମୁଁ ପ୍ରଥମ ।"

"ହଁ ସେ ପଦା ଖେଳ ହୋଇପାରେ । ସେଥିରେ କ'ଣ ମୁଣ୍ଡ ଖର୍ଚ୍ଚ ଅଛି । ଚେସ୍ ବା ତାସ୍ ପରି ଘରଭିତର ଖେଳରେ ପାରିବ କେଉଁଠୁ ?"

"ଆଜ୍ଞା କେବଳ ପଦା ଖେଳରେ ନୁହେଁ । ପଦାଖେଳ ଓ ଘର ଭିତର ଖେଳ ସବୁଥିରେ ପ୍ରଥମ ।"

"ତାସ୍‌ରେ ?"

"ଅଲବତ୍ତ ! ଏମିତି କୋଉ ରଥୀ ଦେଖିନ ଯେ କି ମୋତେ ତାସ୍‌ରେ ହଟାଇଦେବ । ବ୍ରି ଖେଳରେ ମୁଁ ଏ ପର୍ଯ୍ୟନ୍ତ କେଉଁଠାରେ ବ୍ରି ମାଷ୍ଟର ହୋଇନାହିଁ ।"

"ଏଇଟା ମିଛ କଥା । ବ୍ରି ଖେଳରେ ନିଷ୍ଟୟ ହଟିଯିବ ।"

"ଆଚ୍ଛା ବାଜି"

"କାହିଁକି ବୃଥାକଥା ଗୁଡ଼ାକ କହୁଚ ?"

"ଆଚ୍ଛା ଆସନ୍ତ ଏଇଠି ପରଖାପରଖି ହେବା ।"

"ପାରିବ ନାହିଁ, ଯାଅ ବୃଥାରେ କାହିଁକି ସମୟଗୁଡ଼ାକ ନଷ୍ଟ-କରିବ । ବୋଝଟି ନେବା ସାର ହେବ ।"

"ଇସ୍ ଏମିତି କାହିଁକି ବୋଝ ଦେଉଥିଲମ । ଆଣ ତ ତାସ୍, ଏଇଠିତ ଚାରିଜଣ ଆମେ ଅଛୁ । ଗୋଟାଏ ବାଜି ବ୍ରି ପଡ଼ୁଯାଉ ।"

"ପାଗଳ ହେଲ, କାହିଁକି ବୃଥାରେ ସମୟଗୁଡ଼ାକ ନଷ୍ଟକରିବ । ବ୍ରିରେ ମାଙ୍କଡ଼ତତ୍ତ୍ୱ ମାରିଯିବ ।"

"ଆଚ୍ଛା ଆଣ ତ ବାଜି ରହିଲା......"

ତାସ୍ ମୁଠାଏ ଆସିଲା । ଖେଳ ଆରମ୍ଭ ହେଲା । ବିଜୟବାବୁ ବଡ଼ ଉଚ୍ଚଦରର ଖେଳାଳୀ ଥିଲେ । ଅନ୍ୟ ତିନିଜଣଙ୍କର ସମ୍ମିଳିତ ଅକ୍ଳାନ୍ତ ଚେଷ୍ଟା ସତ୍ତ୍ୱେ ବିଜୟବାବୁଙ୍କୁ ବ୍ରି ମାଷ୍ଟର ହେବାକୁ ବଳଗ ଦୁଇଘଣ୍ଟା ଲାଗିଗଲା । ଖେଳ ଶେଷରେ ବିଜୟବାବୁ ହାତବନ୍ଧା ଘଡ଼ିକୁ ଦେଖିପକାଇ ଚିତ୍କାର କରି ଉଠିଲେ, "ଓଃ ! ଦଶଟା ବଯ୍ଯାଳିଶ, ଅସହ୍ୟ, ଅସହ୍ୟ......" ବିଛୁଆଡି ମାଡ଼ ଖାଇଲା ପରି ବିଜୟବାବୁ ବାଇଆକୁ ହୋଇ ଅତି ବେଗରେ ସେଠାରୁ ଚାଲିଗଲେ ।

ପ୍ରଥମ ଲୋକଟି ଅନ୍ୟ ଦୁଇଜଣଙ୍କୁ କହିଲେ "ଏଥର ଘଣ୍ଟିଝିର୍‌ର୍ କପରି ବସ୍ତୁ ଅନୁଭବ କରି ପାରିଲେ ତ ?" ଅନ୍ୟଜଣକ କହିଲା, "ଯତରେ ସେ ଗୋଟିଏ ଘଣ୍ଟିଝିର୍‌ର୍ ।

# ଧୋବେଇ ଫଂଟ୍

ତିନିଜଣଯାକ କାଠଭୂତ ହୋଇ ବସିଥାଆନ୍ତି । କାହାରି ମୁହଁରେ କଥା ନାହିଁ । ସମସ୍ୟାର ସମାଧାନପାଇଁ ଅକ୍ଲାନ୍ତ ମାନସିକ ଚେଷ୍ଟା ଚାଲିଥାଏ । ପୋଖରୀ ଭିତରେ ମାଛ ଅଣ୍ଡାଳିଲା ପରି ସମସ୍ତେ ନିଜ ନିଜର ମସ୍ତିଷ୍କକୁ ଅଣ୍ଡାଳୁଥାନ୍ତି –ଉଦ୍ଦେଶ୍ୟ, ମାଛଟା ମିଳିଯିବ ପରା ! କିନ୍ତୁ ସବୁ ଫସ୍ । ହତାଶ ହୋଇ ଅଣ୍ଡାଳିବା କାମ ଛାଡ଼ିବାକୁ ଯାଉଥିଲାବେଳେ ଗୋଟାଏ ନୂଆ ଭଦ୍ରଲୋକ ସେଠାରେ ଆସି ପହଞ୍ଚିଲେ । ଆଗନ୍ତୁକଙ୍କୁ ଲକ୍ଷ୍ୟକରି ଜଣେ କହି ଉଠିଲେ, "କି ଶ୍ରୀମାନ୍ ଠେରୁ, କୁଆଡ଼େ ଆସିବା ହେଲେ ? ଠେରୁଟି ହସି ହସି କହିଲେ, "ଏଇ ଏମିତି ଟିକିଏ ବୁଲିଆସିଲି । ଆଉ ଆପଣମାନେ କଅଣ ଏମିତି ପିଣ୍ଡୁଲାପର ବସିଅଛନ୍ତି……କଥା କ'ଣ ?"

ବିଷ୍ଣୁ ଜଣକ କହିଉଠିଲେ, "କଥା କ'ଣ କି, ଆମର ସେଇଁ ସ୍କୁଲଘର ତିଆରି ହେବାର ଅଛି, ସେଥିପାଇଁ ଜାଗାବ୍ ଅନୁଯାୟୀ ସମସ୍ତେ ଜମି ପଟ୍ଟା କରିଦେଲେଣି । ଦୁର୍ଯୋଗକୁ ସେଇ ଜମି ମଝିରେ ଜମିଦାର ଶତ୍ରୁଘ୍ନ ମଲ୍ଲିକଙ୍କର ଖଣ୍ଡେ ଜମି ରହିଯାଇଚି । ସେ ଲୋକକୁ ଯେତେ ଅନୁରୋଧ କଲେ ବି ସେ ଶୁଣୁନାହିଁ । ତାକୁ ବି ଆମେ କହିଲୁଣି, ସେ ଜମି ଲାଗି ଅଲଗା ଜାଗାରେ ଯେତିକି ଜମି ବଦଳ ଦେବୁ । ତାର କିନ୍ତୁ ଏକା ଜିଦ୍ ଦର ନାହିଁ । ଲୋକଟା କାହିଁକି ଏମିତି ଉଡ଼ୁଛି କେଜାଣି ? ସେଇ

ଖଣ୍ଡିକ ଜମି ଲାଗି ଏତେ ବଡ଼ ଜାଗାଟା ବିଲ୍ କୁଲ୍ ମାଟି ହୋଇଯିବ । ସ୍କୁଲ୍ ବ ଗୋଟିଏ ତିଆରି ହୋଇ ପାରିବ ନାହିଁ ।"

ଆଉ ଜଣେ କହିଉଠିଲା, "ସେ ଶଳା ମୂଳାଖିଆର ନାଆଁ ଧରିଲଣି, ଆଜି ତମକୁ ଖାଇବାକୁ ମିଳିବ ନାହିଁ । ଶଳାଟା ଦୁନିଆଁରେ ଖାଲି କଞ୍ଚାମୂଳା ରସ୍‌ଗସ୍ ଚୋବାଇବା ଛଡ଼ା ଆଉ କଛି ଜାଣେ ନାହିଁ ।"

ତୃତୀୟ ଜଣକ କହିଲା, "ଶଳାଟାତ କଂଜୁସ୍ ବୁଢ଼ୋ, ମୂଳା କିଣିଲାବେଳେ ପଇସାଟାଏ ଜାଗାରେ ଦୁଇପଇସା ଦେବ । ବେଳେବେଳେ ହାତ ଖୋଲି ଦୁଇ ପଇସା ଦବାରିତ ଆମେ ଦେଖିଚୁ । କାହିଁକି ଫିଙ୍ଗିଦେଲା କେଜାଣି ? ବୋଧହୁଏ ଶଳାକୁ ପହିଲେ ଯାଇ ଅନୁରୋଧ କରିଥିଲେ ଶୁଣିଥାଆନ୍ତା, ଏତେ ନେହୁରା ହେଲୁଣି, ଆଉ କ'ଣ କରିବା ?"

ଟେରି ସବୁ ଶୁଣିଶାଣି ଗୋଟାଏ ବଡ଼ 'ହୁଁ' ମାରିଲା । ତିନିଜଣଯାକ ଉତ୍ସୁକ ନୟନରେ ତା ଆଡ଼କୁ ଚାହିଁଲେ । ଠିକ୍ ଯେପରି ଯାଦୁକରର ମୁଣି ଭିତରକୁ ଦେଖଣାହାରିମାନେ ଚାହିଁରହନ୍ତି । ଟେରି କହିଲା "ଚେଷ୍ଟାର ଅସାଧ କ'ଣ ଅଛି ? ଠିକ୍ ଭାବରେ ଚେଷ୍ଟାକଲେ ହୋଇ ପାରିବ ।"

ଜଣେ କହି ଉଠିଲା, "ହଁ, ହଁ ସମସ୍ତେ ତ ଫସର ଫାଟି ଗଲେଣି, କେତେ ଅନୁରୋଧ, କେତେ ନେହୁରା—ଶେଷକୁ ଠଙ୍କା ଯାଚିଲୁ, ଶଳାଟା ପର୍ବତ ପରି ଅଟଳ, ଟିକିଏ ହେଲେ ଝୁଙ୍କୁନାହିଁ ।" ଟେରି ଉତ୍ତେଜିତ ହୋଇ କହିଲା, "କ'ଣ କହିଲ, ଝୁଙ୍କିବ ନାହିଁ ? ଶଳାକୁ ଏକା ଧୋବେଇ ପଟ୍‌ରେ ମାଟି କାମୁଡ଼େଇ ଦେବି ।"

ତିନିଜଣ ଯାକ କହି ଉଠିଲେ—"ଏଁ, ଏଁ ଧୋବେଇ ପଟ୍ ! ସେ କେମିତିଆ ଚଳ ?"

"ସେ ହେଉଛି କୁସ୍ତିର ଏକ ଦାଉଁ" । ଠିକ୍ ଭାବରେ, ଠିକ୍ ସମୟରେ ମାରିଲେ ଶତ୍ରୁ ସାଙ୍ଗେ ସାଙ୍ଗେ ମାଙ୍କଡ଼ଚିତ୍ ମାରିବ । ଟିକିଏ ଓଲଟ୍ ପାଲଟ୍ ହେଲେ ନିଜେ ମାଙ୍କଡ଼ଚିତ୍ ମାରିଯିବ ।"

"ତାପାଇଁ ଟିକିଏ ତୁମ ଧୋବେଇ ପଟ୍‌ର କରାମତି ଦେଖାଅ ।"

"ଅଚ୍ଛା, ମୁଁ ଆଜି ତା ପାଖକୁ ଯାଉଛି; କାଲି ଧୋବେଇ ପଟ୍‌ର କରାମତି କାଲି ଦେଖିବ ।"

× × ×

ସ୍ଥୂଳ ବପୁବନ୍ତ ଶଙ୍ଖୁ ମଲ୍ଲେ ସହାସ୍ୟ ବଦନରେ ପ୍ରଶ୍ନ କଲେ "କ ଶ୍ରୀମାନ୍ ଝେଣ୍ଟୁ ! ଆପଣ କୁଆଡ଼େ ?"

ଆଙ୍ଗୁଠି ମଳୁ ମଳୁ ଝେଣ୍ଟୁ କହିଲେ, "ହେଁ ହେଁ ଯେତେକ ଛନ୍ତି ନଦ ନଦୀ, ସମସ୍ତେ ମିଳନ୍ତି ଜଳଧି । ଆପଣ ହେଲେ ଜଳଧି, ଆମେ ହେଲୁ ନଦନଦୀ । କୋଉ ଲୋକଟା ଆପଣଙ୍କ ପାଖକୁ ନ ଆସୁଚି । କାହାର ବା ଆପଣଙ୍କ ପାଖରେ କାମ ନାହିଁ ?"

"ଆହେ ତୁମେ ତ ଗୋଟିଏ କବି ପାଲଟି ଗଲଣି ।"

"ଏଁ ହେଁ, ଆପଣ ଗୁଣଗ୍ରାହୀ ବୋଲି ପଦେ କହିଦେଲି । କେତେ ଜାଗା ମୁଁ ଏମିତି ନ କହୁଛି କିନ୍ତୁ ଏପରି ବଚନ କେଉଁଠାରେ ମୁଁ ଶୁଣି ନାହିଁ । ପଦ୍ମତୋଳାରେ ନାଗସାପ ସିନା ମୁଣ୍ଡ ଟେକିବ, ଏ ଡ଼େମଣା ଗୁଡ଼ାକ କୁଆଡ଼ୁ ଶୁଣିବେ ?"

"ଆଚ୍ଛା କାମ କ'ଣ ?"

"ଆଜ୍ଞା ଗୋଟାଏ ପରାମର୍ଶ ପାଇଁ ଆସିଥିଲି । ମୋ ଭାଇ ସଙ୍ଗେ ଗଣ୍ଡଗୋଳ ଲାଗି ମୁଁ ତ ଘରକୁ ଖାଇବାକୁ ଯାଉ ନ ଥିଲି, ସେ ମୋ ଘରକୁ ଆସି ସବୁ ଦୋଷ ମାଗି ନେଇ ମୋତେ ତା ଘରକୁ ଖାଇବାକୁ ଯିବାପାଇଁ ନିମନ୍ତ୍ରଣ କରିଛି । ସମସ୍ତେ କହୁଛନ୍ତି, ଯା ସାନଭାଇଟା ତ, ଗୋଡତଳେ ପଡ଼ିଲାଣି, ଯା । ମୁଁ ମନେ ମନେ ଭାବିଲି, "ଉଁ ହୁଁ ମଲ୍ଲଙ୍କ ପରାମର୍ଶ ନ ନେଲେ ଏ ସବୁ କାମରେ ହାତ ଦେବା ଠିକ୍ ନୁହେଁ ।"

"ଖବରଦାର୍ ! ମୋଟେ ସେଠାକୁ ଯିବୁ ନାହିଁ । ନର ମାୟା ନାରାୟଣଙ୍କୁ ଅଗୋଚର, ବିଷ ମିଶାଇ ଦେଇ ପାରେ ।"

"ଏଃ ! ଗାଈ ସିନା ଦୁଧ ଦେବ, ବଳଦର ଚିପିଲେ କଅଣ ହବ ? ମୋତେ ଭଗବାନ ସିନା ବାଟ ଦେଖାଇଲେ । ମୋର ସାହାପୁରୁଷ ଯେମିତି କହିଦେଲି ଆରେ ଯା, ଏ ଖଣ୍ଡ ମଣ୍ଡଳରେ ଗୋଟାଏ ବୋଲି ମୁଣ୍ଡ ଅଛି । ତାହାର ପରାମର୍ଶ ନେଇ ଯାହା କରିବୁ ।"

ଏହି ସମୟରେ ଗୋଟିଏ ଲୋକ ମୂଳା ବିଡାଏ ଆଣି ସେଠାରେ ଥୋଇଦେଲା । ମୂଳାକୁ ଦେଖିଲା ମାତ୍ରେ ଝେଣ୍ଟୁ ବକ୍ତୃତା ଆରମ୍ଭ କରିଦେଲା, "ଆଜ୍ଞା, ଏ ମୂଳାଠାରୁ ବଳି ଆଉ ଭଲ ଖାଦ୍ୟ ଏ ଜଗତରେ ନାହିଁ । X,Y,Z ଭିଟାମିନ ଏହା ଭିତରେ ଯେତେ ଅଛି ତାହା ପୃଥିବୀର ଆଉ କୌଣସି ପରିବାରେ ନାହିଁ । X ଭିଟାମିନ୍ ବୁଦ୍ଧିର ପ୍ରଖରତା

ବଢ଼ାଏ, Y ଭିଟାମିନ୍ ସାହସ, ତେଜ ବଢ଼ାଏ ଓ Z ଭିଟାମିନ୍ ଦୟା, କ୍ଷମା, ଦାନଶୀଳତା ଇତ୍ୟାଦି ନୈସର୍ଗିକ ଗୁଣର ବୃଦ୍ଧି ପ୍ରଚୁର ପରିମାଣରେ କରେ । ଯେତେ ମହାପୁରୁଷ, ବୀର, ଦାର୍ଶନିକଙ୍କର ଇତିହାସରେ ବର୍ଣ୍ଣନା ଅଛି, ପ୍ରାୟ ସମସ୍ତେ ମୂଳା ଖାଉଥିଲେ । ମହାବୀର ନେପୋଲିୟନ୍‌ଙ୍କ ପକେଟରେ ସବୁବେଳେ ମୂଳା ରହୁଥିଲା । ଓ୍ୟାଟର୍‌ଲୁ ଯୁଦ୍ଧରେ ସେ ହାରିଯିବାର ପ୍ରଧାନ କାରଣ ଥିଲା ଏହି ମୂଳା । ନେଲ୍‌ସନ୍ ଏହି ମୂଳାର ଗୁଣ ଜାଣିଥିବାରୁ ଗୁପ୍ତଚର ଲଗାଇ ନେପୋଲିଅନଙ୍କ ପାଖକୁ ଯାଉଥିବା ମୂଳାବୋଝକୁ ଛଡ଼ାଇ ନେଇଗଲେ । ଫଳରେ ନେପୋଲିଅନ୍ ହାରିଲେ । ଜୁଲିଅସ୍ ସିଜର ଓ ଆଲେକ୍‌ଜାଣ୍ଡ୍ରର୍ ସମସ୍ତେ ମୂଳା ଖାଉଥିଲେ । କାହାର କେମିତି ଇଚ୍ଛା ଥିଲା, ଆଲେକ୍‌ଜାଣ୍ଡର କିନ୍ତୁ ଧନକୁ ଟୋକେଇ ଟୋକେଇ ମୂଳା ଗ୍ରେଟେଇ ଯାଉଥିଲେ । ବାସ୍ତବିକ ସେ ଗୋଟାଏ ବୀର ଥିଲେ । ଯେମିତି ବୀର ସେମିତି ଦୟାଳୁ । ଦାନୀପଣରେ ତାଠାରୁ ବଳି । ତାଙ୍କ ଦାନ କଥା ଆପଣ ଶୁଣିଲେ ଅବାକ୍ ହେବେ । ଥରେ ଜଣେ ଦରିଦ୍ର ବୁଢ଼ା ତାଙ୍କ ପାଖକୁ କିଛି ଅର୍ଥ ପାଇବା ପାଇଁ ଗଲା । ତାକୁ ଦେଖି ଆଲେକ୍‌ଜାଣ୍ଡ୍ରର ଦୂର୍ ଦୂର୍ କରି ପ୍ରହରୀ ହାତରେ ତଡ଼ିଦେଲେ । ଲୋକଟି ଯିବାପରେ ବସି ଭାବିଲେ, "ଧିକ୍, ମୋତେ ଧିକ୍ । ଲୋକଟି ମୋତେ ପୁଣି ମାଗିବା ପାଇଁ ଗଲା ! ମୁଁ ଏହାର ଦରିଦ୍ରାବସ୍ଥା ଆଗରୁ ଜାଣିପାରିଲି ନାହିଁ ! ବାସ୍ ସେହି ଦିନ ରାତିରେ ଆଲେକ୍‌ଜାଣ୍ଡ୍ରର ଛଦ୍ମବେଶରେ ଯାଇ ସେ ଦରିଦ୍ରର ଘର ଭିତରେ ବସ୍ତାଏ ଅସରପି ଫୋପାଡ଼ି ଦେଇ ପଳାଇଆସିଲେ । ମାଗିଲେ ସେ ଦେଉ ନ ଥିଲେ କିନ୍ତୁ ଯଦି ଜାଣୁଥିଲେ ଯେ ପ୍ରକୃତରେ ଦରକାର ଅଛି, ତେବେ ଯେ ସମସ୍ତଙ୍କର ଅଜ୍ଞାତରେ ପ୍ରଚୁର ଅର୍ଥ ତାକୁ ଦେଉଥିଲେ । ଏହା କେବଳ Z ଭିଟାମିନ୍‌ର କାମ । ପାର୍ଲବକ୍ ଏହି Z ଭିଟାମିନ୍ ଆବିଷ୍କାର କରି ନୋବେଲ ପୁରସ୍କାର ପାଇଛନ୍ତି ପରା । କେବଳ କଞ୍ଚାମୂଳାରେ ଏହି X.Y.Z ଭିଟାମିନ୍ ଥାଏ ।

ଏଥିମଧ୍ୟରେ ମଲ୍ଲେ ଦୁଇଟି ମୂଳା ନିଃଶେଷ କରିଥାଆନ୍ତି । ତାହା ଦେଖି ଟେରୁ କହିବାକୁ ଲାଗିଲେ । "ଦେଖୁଛି ଆପଣଙ୍କ କଞ୍ଚା ମୂଳାର ବଡ଼ ପ୍ରିୟ ତ । ତାହା ନ ହେଲେ ଆପଣଙ୍କର ଏପରି ଗୁଣ ସବୁ କିପରି ହୋଇ ଥାଆନ୍ତା !"

"ହେଃ ! କି ଗୁଣ ବା ମୋର ଅଛି, ମୁଁ କିବା ଛାର !"

"ହିଁ ନମ୍ରନ୍ତ ଫଳିନୋ ବୃକ୍ଷାଃ, ନମ୍ରନ୍ତ ଗୁଣିନୋ ଜନାଃ । ଯାହା ଠିକ୍ ଠିକ୍ କଥା ତାହା ମୁଁ କହିଦିଏ । ଖୋସାମତିଆ କଥା ମୁଁ ଜାଣେ ନାହିଁ । ଆଉବି ମୁଁ ଭଲକରି ଜାଣିଚି ଆପଣ ଖୋସାମତର ବହୁତ ଉପରେ । ଯାହା ଦେଶରେ ବିଦ୍ୟା ଥାଏ ଓ ଯେ ବିଦ୍ୟାଦାନରେ ସାହାଯ୍ୟ କରେ ସେ ନିଶ୍ଚୟ ଆପଣଙ୍କ ପରି ହେବ, ହେବ, ହେବ ।"

"ନାହିଁ ହେ ! ବିଦ୍ୟାଦାନରେ ମୁଁ ବା କ'ଣ ସାହାଯ୍ୟ କରୁଚି ।"

"କ'ଣ ହେଲା ! ଆପଣ ଗୋବର୍ଦ୍ଧନ ମଲ୍ଲଙ୍କର ପୁଅଟି ? କିଏ ନ କହେ ଯେ ଗୋବର୍ଦ୍ଧନ ମଲ୍ଲଙ୍କର ସବୁ ଗୁଣଯାକ ଶତ୍ରୁଘନ ମଲ୍ଲଠାରେ ଦି ଦି ଗୁଣ ହୋଇ ଝଳଶି ଉଠିଚି । ଲୁଚେଇ ଲୁଚେଇ ଦାନ ଦବା ମଲ୍ଲବଂଶର ଗୋଟାଏ ପ୍ରଧାନ ଗୁଣ । ବାସ୍ତବିକ ଦାନ ଦବ ତ ଲୁଚେଇ କରି ଦେବ । ମୁଁ ଭଲକରି ଜାଣିଚି ଗୋବର୍ଦ୍ଧନ ମଲ୍ଲେ କେତେ ଛାତ୍ରଙ୍କୁ ଲୁଚେଇ ଲୁଚେଇ ଟଙ୍କା ଦେଉଥିଲେ । କେତେ ଥର ସେ ମୋତେ କହିଛନ୍ତି, "ସୁବିଧା ହେଲେ ଗାଁ'ରେ ସ୍କୁଲଟାଏ କରିଥାଆନ୍ତେ ।" ଆଉ ଛ'ଟା ମାସ ବଞ୍ଚିଥିଲେ ଗାଁ'ରେ ସ୍କୁଲଟାଏ ହୋଇ ଯାଇଥାଆନ୍ତା ।"

"ଆରେ ହିଁ ହିଁ ଗାଁ'ର ସେ ଟାଉଟରିଆ ତିନିଜଣ ଯାକ ମୋତେ ଖଣ୍ଡିଏ ଜମି ମାଗୁଥିଲେ ; କୁଆଡ଼େ ସ୍କୁଲ କରିବେ । ମୁଁ ତାଙ୍କୁ ମନା କରିଦେଇଚି ।"

"ଠିକ୍ କରିଛନ୍ତି, ସେ ଛତର, ବେକାର, ମାମଲବାଜ୍, ବଦମାସ ତିନିଟାଙ୍କୁ ଆପଣ ଜମି ଦେବେ ! ଗୁରିଆଡ଼େ କହି ବୁଲିବେ ଯେ ଆମେ ମଲ୍ଲଙ୍କଠାରୁ ମାଗିଆଣିଲୁ ! ତାଙ୍କ ମାଗନ୍ତାପଣର ଟେକ ରହନ୍ତା । ଆପଣଙ୍କର ଦାମିପଣର ଟେକ ରହନ୍ତା କେଉଁଠୁ ? ବାସ୍ତବିକ ବୁଦ୍ଧିଟାଏ ଦେଖିଲି । ଫେଟେଇ ଦେଇଛନ୍ତି, ଭଲ କରିଚନ୍ତି । ଆପଣ ଚୁପ୍‌କରି ଦାନପତ୍ରଟିଏ ଲେଖି କାହା ହାତରେ ପଠାଇ ଦିଅନ୍ତୁ । ତାହା ହେଲେ ଦାନର ମହତ୍ତ୍ୱ ରହିବ । ହିଁ ଆପଣ କ'ଣ ଜାଣନ୍ତି ନାହିଁ ଯେ, ମୁଁ ଆପଣଙ୍କୁ ଆଉ କ'ଣ କହିବି ? କିଏ ଗୋରୁ ଚରାଇଲେ ଆପଣ ମଣିଷ ଚରାଉଛନ୍ତି । ଆପଣ ଯାହା କରିଛନ୍ତି ଠିକ୍ କରିଛନ୍ତି । ଦାନପତ୍ରଟା ସେ ଛତର ତିନିଟାଙ୍କ

ପାଖକୁ ନ ପଠାଇ ସଭାପତିଙ୍କ ପାଖକୁ କାହା ହାତରେ ଲୁଚାଇ କରି ପଠାଇ ଦେବେ ।"

"ମୋର ଏତେ ହେଙ୍ଗାମରେ କଏ ପଡେ । ଆସ୍ତ ତୁମେ କାଲି ଆସି ଦାନପତ୍ରଟା ମୋଠୁ ନେଇଯାଇ ସଭାପତିଙ୍କୁ ଲୁଚାଇ କରି ଦେଇ-ଦେବ ।

× × × ×

ତିନିଜଣ ଯାକ ଟେରୁଙ୍କ ହାତରେ ଦାନପତ୍ରଟି ଦେଖି ଅବାକ୍ ହୋଇଗଲେ । ଜଣେ କହି ଉଠିଲା, "ଆରେ ସତେ ତମ ଧୋବେଇ ଫଣ୍ଡ୍‌ର ତ ଅଦ୍ଭୁତ କରାମତି !" ଟେରୁ ହସି ହସି କହିଲା, "ଶଳାଟା ଘୁରିତତ୍ ହୋଇ ପଡ଼ିଗଲା । ନ ହେଲେ କି ଦାଉଁ ନାଁ ହୋଇଥାନ୍ତା ଧୋବେଇ ଫଣ୍ଡ୍ ।"





ଡାକ୍ତରଟା ପାଶ୍ କରିବା ଲାଗି ତାକୁ କିଛି କମ୍ ମୂଲ୍ୟ ଦେବାକୁ ପଡ଼ି ନାହିଁ । ପୈତୃକ ସମ୍ପତ୍ତିରୁ ଅଧେ ବିକି, ବାକିତକ ମହାଜନ ପାଖରେ ବନ୍ଧା । ଗାଇଁର ଲୋକଙ୍କଠାରୁ ହାତ ଉଧାରି । ପାଶ୍‌ଟା ହୋଇଯିବାରୁ ସେ ସବୁପ୍ରତି ଆଉ ଖାତିର ହେଲା ନାହିଁ । ଯେତେହେଲେ ଡାକ୍ତର । ଗୋଟାଏ ବର୍ଷରେ କରଜ ସବୁ ଶୁଝି ଦେବେ । ବନ୍ଧା ସମ୍ପତ୍ତି ମୁକୁଳାଇ ଆଣିବେ ।

ଘର କରିବେ, ଦ୍ୱାର କରିବେ ଇତ୍ୟାଦି କେତେ କଥା ଯେ ଭାବିଥିଲେ ତାର ଇୟତ୍ତା ନାହିଁ । ଖାଲି ଟଙ୍କଷକ ଟହ୍ନିଁଥାଏ । ମାସ ପରେ ମାସ, ତାପରେ ବର୍ଷ ଗଡ଼ିଲାରୁ ମୁଣ୍ଡରେ ଚେତା ପଶିଲା । ମନେ ମନେ ଭାବିଲେ ଟଙ୍କାଟା ବୋଧହୁଏ ଭଗବାନଙ୍କଠାରୁ ବଡ଼ । ଏତେ କଠିନ ପରିଶ୍ରମ କରିଥିଲେ ଭଗବାନଙ୍କୁ ପାଇ ସାରନ୍ତେଣି କିନ୍ତୁ ଟଙ୍କାର ମହାତ୍ମାଙ୍କ ଦର୍ଶନ ନାହିଁ । ସହରରେ ବସି ଟଙ୍କାର ଖୋଜିବାକୁ ଆଉ ଜୁଟୁ ନଥାଏ । ବାଧ୍ୟ ହୋଇ ଦିନେ ରାତି ଅଧରେ ବସାରୁ ପେଡ଼ି ପତର ଯାକ ଗାଁ'କୁ ଛୁଟିଲେ । ଗାଁ'ରେ ଖୁବ୍ ସମ୍ମାନ ମିଳିଲା । ରୋଗୀ ଖାଉଡ଼ି ଖାଉଡ଼ି ଆସି ଦୁଆରେ ଧାରଣା ଦେଲେ; କିନ୍ତୁ ସମ୍ମାନର ମଞ୍ଜି ଧଳାଚକର ଦର୍ଶନ ନାହିଁ । କେତେବେଳେ କେମିତି ସଜନା ଛୁଇଁ ଦିଖଣ୍ଡ, ମଞ୍ଜା ଖଣ୍ଡେ, ବାଇଗଣ ଦି ସେର୍, ହାବୁଡ଼ିଯାଏ । ସେଥିରେ କି ସଦ୍ୟ

ବିଶ୍ୱବିଦ୍ୟାଳୟରୁ ଫେରୁଥିବା ଲୋକର ଗୁଜ ଗଣ ମେଶ୍ନେ ! ବହୁତ ଲୋକ ବୁଝାଉଥାନ୍ତି "ଡାକ୍ତର ବାବୁ ! ଠିକ୍ ଏ ଅସୁଧର, ଏ ମାସେ ଦି ମାସରେ ଏତେ ଅଥପ୍ ହେଲେ ଚଳିବ ନାହିଁ । ଲୋକମାନେ ଜାଣିଗଲେ ଠଙ୍କାର ସୁଅ ଲଗିଯିବ । ସବୁକଥା ଏ କାନରେ ପଶି ସେ କାନରେ ବାହାରି ଯାଉଥାଏ, ତାଙ୍କର କିନ୍ତୁ ଖାଲି ଚିନ୍ତା ଗୋଟିଏ ଗୃହିଣୀ·········

ଶେଷରେ ଗୃହିଣୀ ଦେବତାର ସନ୍ଧାନ ମିଳିଲା । ପାଞ୍ଜିରୁ ତିଥି ନକ୍ଷତ୍ର ଆଦି ଠିକ୍ କରି ଗୋଟିଏ ଶୁଭ ଦିନରେ ଡାକ୍ତର ବାବୁ ଗୋଟିଏ ଦରଖାସ୍ତ ଗାଁ ମହାଦେବଙ୍କ ମୁଣ୍ଡରେ ଛୁଆଁଇ ଅଫିସକୁ ପଠାଇଦେଲେ । ସାକ୍ଷାତ୍ ଦିବସପାଇଁ ଆଉରି ମାସେ ସମୟ ଥାଏ । ଯାହାର ଭିତରେ ସେ ସବୁପ୍ରକାର ତାନ୍ତ୍ରିକ, ମାନ୍ତ୍ରିକ, ଯାନ୍ତ୍ରିକ ଉପାୟ ସବୁ କରିବାକୁ ସ୍ଥିର କଲେ । ଗୋଟିଏ ପ୍ରସିଦ୍ଧ ଜ୍ୟୋତିଷ ପାଖକୁ ଚମ୍ପାଫୁଲ ନାଁ ଲେଖି ପଠାଇଲେ । ସେଠୁ ଉତ୍ତର ଆସିଲା, ଆପଣଙ୍କର ଏଥର ନିଶ୍ଚୟ ସନ୍ତାନ ଲାଭ ହେବ । ଡାକ୍ତର ବାବୁ ଅଳଆ ଖେଳେଇ ଖେଳେଇ ଛୁଇଁ ପାଇଲା ପରି ବହୁତ ଭାବି ଭାବି ଉତ୍ତରରେ ସାର ମର୍ମଟି ପାଇଗଲେ । ସେ ଭାବିଲେ, ଗୃହିଣୀ କଲେତ ବାହା ହେବ, ବାହା ହେଲେତ ସନ୍ତାନ ହେବ । ତେଣୁ ଗୃହିଣୀ ନ ହେଲେ ସନ୍ତାନ ହେବ ବା କୁଆଡୁ ? ତେଣୁ ଜ୍ୟୋତିଷ ମହାଶୟ ଠିକ୍ କହିଅଛନ୍ତି । ଗୃହଲ ମୁଟିକେଆ, ଦପଇଯିଆ ତାଙ୍କ ଗାଁ ଓ ଆଖ ପାଖ ଗାଁର ଜ୍ୟୋତିଷତକ ଶନି ନିଶ୍ଚୟ ଗୃହିଣୀଟା ଆଣି ଦେବ ବୋଲି କହିଥାଆନ୍ତି ।

ସାକ୍ଷାତ୍ ଦିନ ଆସି ପହଞ୍ଚିଗଲା । ଡାକ୍ତର ବାବୁଙ୍କର ଭାରି ଇଚ୍ଛା ଥାଏ ଗୋଟିଏ ସିଦ୍ଧକବଚ ପିନ୍ଧି ଯିବାକୁ, କିନ୍ତୁ ହାତରେ ପଇସା ନ ଥାଏ । ସହରରେ ପହଞ୍ଚି ପ୍ରଥମେ ସିଦ୍ଧ କବଚ ପିନ୍ଧିଥିବା ଜଣେ ବନ୍ଧୁଙ୍କ ପାଖକୁ ଗଲେ । ବହୁତ ନେହୁରା ହୋଇ ବନ୍ଧୁଙ୍କଠାରୁ ସେହି ଦିନକ ପାଇଁ ସିଦ୍ଧକବଚଟି ମାଗିନେଲେ । ସେହିପରି ମଧ୍ୟ କାହାଠୁଁ ପେଣ୍ଟ୍, କାହାଠୁ ଟୋପି, କାହାଠୁଁ ଫାଉଣ୍ଟେନ ଇତ୍ୟାଦି ନେଇ ବିବିଧ ସାଇକେଲ କମ୍ପାନୀର ଅଂଶ ବିଶେଷ ଲାଗିଥିବା ଗୋଟିଏ ସାଇକେଲ ପରି ସେ ଯାଇ ଡିରେକ୍ଟର ଅଫିସରେ ଉପସ୍ଥିତ ହେଲେ । ଡାକରା ପାଇବା ମାତ୍ରେ ସେ ଡିରେକ୍ଟରଙ୍କ କୋଠରୀ ଭିତରେ ପଶି କ୍ଷିପ୍ର ଦିଗ କହିଲେ । "ଗୁଡ୍ ମର୍ଣ୍ଣିଙ୍ଗ୍ ସାର ! କିନ୍ତୁ ଶ୍ବେତକାୟ ବିଦେଶୀ ଡିରେକ୍ଟର

ଡନ୍‌କାନ୍ ହସି ହସି କହିଲେ, "ନମସ୍କାର, ଆସନ୍ତୁ ବସନ୍ତୁ ।" ଗୋରା ମଣିଷ ଏପରି ଓଡ଼ିଆ କଥା କହିବେ ବୋଲି ଡାକ୍ତର ବାବୁ ଆଗରୁ ଭାବି ନ ଥିଲେ ।

ଡାକ୍ତର ବାବୁ ବସିବା ପରେ ଡିରେକ୍‌ଟର ପୁଣି ପଚାରିଲେ "ଆପଣଙ୍କ ପିତା କିପରି ଅଛନ୍ତି ?"

"ସେ ବର୍ଷେ ହେଲା ମଲେଣି ।"

ଡିରେକ୍‌ଟର ତା ଉତ୍ତରକୁ ଅପେକ୍ଷା ନ ରଖି ପୁଣି କହିଲେ "ସେ ଖୁବ୍ ଭଦ୍ରଲୋକ, ମୁଁ ତାଙ୍କୁ ଜାଣେ । ଆପଣ ଅତି କାର୍ଯ୍ୟକ୍ଷମ ଯୁବକ ଅଟନ୍ତି । ଆପଣଙ୍କ ପରି ଜଣେ ଯୁବକଙ୍କୁ ମୁଁ ଖୋଜୁଥିଲି । ଆପଣଙ୍କୁ ପାଇ ବଡ଼ ଖୁସି ହେଲି । ଆପଣଙ୍କୁ ନିଯୁକ୍ତ କରିବି ବୋଲି ମନେ ମନେ ସ୍ଥିର କରିଅଛି । ଆପଣ ସଙ୍ଗେ ସଙ୍ଗେ କାର୍ଯ୍ୟରେ ଯୋଗ ଦେବାକୁ ପ୍ରସ୍ତୁତ କି ନା ? ମୁଁ କାଲି ନିଯୁକ୍ତି ପତ୍ର ଦେବାକୁ ପ୍ରସ୍ତୁତ୍ । ଆପଣ ସଙ୍ଗେ ସଙ୍ଗେ କାର୍ଯ୍ୟରେ ଯୋଗ ଦେଲେ ମୁଁ ବଡ଼ ଖୁସି ହେବି ।"

ଡାକଗାଡ଼ି ଯେପରି ଛୋଟ ଛୋଟ ଷ୍ଟେସନଗୁଡ଼ିକପ୍ରତି ଭ୍ରୂକ୍ଷେପ ନ କରି ଖଡ଼୍ ଖଡ଼୍ ହୋଇ ଛୁଟିଯାଏ ସେହିପରି ଡିରେକ୍‌ଟରଙ୍କର ବକ୍ତୃତା ଡାକ୍ତର ବାବୁଙ୍କ କୌଣସି ଉତ୍ତରପ୍ରତି ଅପେକ୍ଷା ନ କରି ନିଜର ସୀମା ପର୍ଯ୍ୟନ୍ତ ଛୁଟିଗଲା । ଡାକ୍ତର ବାବୁ ବିସ୍ମୟ ଓ ଆନନ୍ଦର ମିକ୍‌ଶ୍ଚର ଖାଇ ବିଭୋର ହୋଇ ଯାଇଥାଆନ୍ତି । ସେ ମନେ ମନେ ଭାବୁଥାଆନ୍ତି ସବୁ ଗ୍ରହର କରାମତି । ତା ନ ହେଲେ ଧୂଦୂର ମଫସଲରେ ଥିବା ଓ ଭୁଲରେ ସୁଦ୍ଧା ସହର ନ ଆସିଥିବା ମୋ ବାପାଙ୍କୁ ସେ ଚିହ୍ନନ୍ତେ କିପରି ? ପଢ଼ାରେ ବି ମୋର ସେପରି ଦେଖାଣିଆ କିଛି ନାହିଁ । ପାଞ୍ଚ ବର୍ଷର ପାଠ ଦଶ ବର୍ଷରେ ପାରିଛି । ଖେଳ ଘରେ ବି ଶୂନ । ତେବେ ସୁଦ୍ଧା ଡିରେକ୍‌ଟରଙ୍କ ସୁଦୃଷ୍ଟି ପଡ଼ିଗଲା । ସବୁ ଗ୍ରହଙ୍କ କାରସାଦ । କୋଉ ଶଳାଟା କହିବ ଜ୍ୟୋତିଷ ଶାସ୍ତ୍ରଟା ଭୁଲ !

ଡିରେକ୍‌ଟରଙ୍କଠାରୁ ବିଦାୟ ନେଇ ଆସିବା ପରେ ସେ ବଡ଼ ଗମ୍ଭୀର ହୋଇଗଲେ । ଅନ୍ୟାନ୍ୟ ପ୍ରାର୍ଥୀମାନଙ୍କୁ ଦେଖି ମନେ ମନେ ଦୟା ପ୍ରକାଶ କଲେ । ଏ ସୌଭାଗ୍ୟର ବିଷୟ କାହାକୁ କହିବେ ନାହିଁ ବୋଲି ସ୍ଥିର କଲେ । ଭିତରେ ବହୁତ ଗୋଳି ଲାଗିଲା ପରି ଲାଗୁଥାଏ । ତଥାପି ମୁହଁକୁ ଚିପି ରଖିଥାଆନ୍ତି ।

ଅନ୍ତଃଶୀଘ୍ର ଚାକିରିରେ ଯୋଗ ଦେବାର କଥା । ତେଣୁ ସେ ସହରରୁ ସିଧା ସଳଖ କାର୍ଯ୍ୟ କ୍ଷେତ୍ରକୁ ଯିବାକୁ ସ୍ଥିର କଲେ । କିନ୍ତୁ ପଇସାର ଅଭାବ, ଅନ୍ତତଃ ଟଙ୍କା ୫୦ଟା ନ ହେଲେ ଯିବେବା କିପରି—ଟଙ୍କା ମିଳୁଛି ବା କୁଆଡ଼ୁ ? ଥୋକାଏ ଜାଗା ଖୋଜିଗଲେ, କିନ୍ତୁ ବୃଥା । ମନେ ମନେ ଭାବିଲେ "ଶ୍ରେୟାଂସି ବହୁ ବିଘ୍ନାନି ।" ହଠାତ୍ ମନେପଡ଼ିଲା ତାଙ୍କ ପିଉସୀ ପୁଅ ଭାଇର ମାମୁଁ ସେହି ଡିରେକ୍‌ଟର ଅଫିସରେ ଜଣେ କିରାଣି । ପନ୍ଦର ମାସ ଦରମାଟା ତାଙ୍କ ପାଖରେ ବନ୍ଧା ରଖି ତାଙ୍କଠାରୁ ୬୦ । ୭୦ ଟଙ୍କା କୌଣସି ମତେ ନେଇ ଆସି ପାରିବେ । ସରକାରୀ ଚାକିରିଆଙ୍କୁ କିଏ ଅବା ଟଙ୍କା ନଦେବ ? ସେ ତ ଚାକିରି ହୋଇଗଲା ବୋଲି ନିଶ୍ଚୟ ଜାଣିଥିବେ । ତେଣୁ ଟଙ୍କା ନିଶ୍ଚୟ ମିଳିଯିବ । ସନ୍ଧ୍ୟାବେଳେ କିରାଣିଙ୍କ ଘରେ କଥା ଭାରି ସରଗରମ ହୋଇ ଉଠିଥାଏ । ଡାକ୍ତର ବାବୁ ବି ସେଠାରେ ପହଞ୍ଚି କଥାବାର୍ତ୍ତାରେ ଯୋଗଦେଲେ । ଘମାଘୋଟ ଆଲୋଚନାର କେନ୍ଦ୍ରବସ୍ତୁ ଥାଆନ୍ତି ଡିରେକ୍‌ଟର ଡନ୍‌କାନ୍ । କିରାଣି ଜଣକ କହି ଚାଲିଥାନ୍ତି—"ଡିରେକ୍‌ଟରଙ୍କ ପରି ଭୁନ୍ଦୁ ଏ ଖଣ୍ଡମଣ୍ଡଳରେ ନ ଥିବେ । ଓଡ଼ିଆରେ କଥାବାର୍ତ୍ତା କଲେ ମନ୍ତ୍ରୀମାନେ ଖୁସି ହେବେ ବୋଲି ଭାବି ସେ ଓଡ଼ିଆରେ କଥା ସବୁ ଲେଖାଇ ନେଇ ତାକୁ ଘୋଷିହୁଏ ଓ ସମସ୍ତଙ୍କ ଆଗରେ ତାକୁ କହେ । ଏଇ ଦୁଇ ତିନି ଦିନ ତଳେ ହୋଇଥିବା ସାକ୍ଷାତ୍‌ପାଇଁ ସେ ସେମିତି ଗୋଟାଏ ଲେଖା ମୋତେ ଲେଖି ଦେବାପାଇଁ କହିଥିଲା । ମୁଁ ତାକୁ ଲେଖିଦେଇ କହିଥିଲି ଯେ, ଯେଉଁଟା ଯେତେବେଳେ ଦରକାର ହେବ, ସେଇଟା ସେତେବେଳେ କହିବ; କିନ୍ତୁ ସେ ଓଲୁଟି ଶୁଆଟା ପରି ସମସ୍ତଙ୍କୁ ଏକ କଥା ମନ୍ତ୍ର ବୋଲିଲା ପରି କହିଦେଲା । ଭୁନ୍ଦୁଟାର ମନ୍ତ୍ରୀଙ୍କୁ ପ୍ରାଣପଣେ ଭୟ । ଆଉ ବି ମନ୍ତ୍ରୀଙ୍କ ସୁପାରିଶ ପାଇଥିବା ଗୋଟାଏ ଡାକ୍ତରକୁ ନିଯୁକ୍ତ କରିବାଲାଗି ଆଗରୁ ସବୁ ଠିକ୍‌ଠାକ୍ ସେ କରିସାରିଛି । ତଥ.ପି ଖାଉଡ଼େ ଡାକ୍ତରଙ୍କ ପାଖରେ ମୋ ଲେଖା ମନ୍ତ୍ରଟି ଶୁଆପରି ଗାଇଗଲା । ତାହାର ଅବସ୍ଥା ଦେଖି ହସିହସି ପେଟକ'ଣ ହୋଇଗଲା । ହେଇଁ ପରା ସେ ଲେଖାଟି ।" ଏହା କହି ସେ ତାକୁ ପଢ଼ିବାକୁ ଲାଗିଲେ । ଡାକ୍ତରବାବୁଙ୍କ ମୁଖ ଧୀରେ ଧୀରେ ବିବର୍ଣ୍ଣ ହୋଇଆସିଲା । ଟିକିଏ ପରେ ସେ ସେଠାରୁ ପଳାଇ ଆସୁ ଆସୁ ମନେ ମନେ ଭାବିବାକୁ ଲାଗିଲେ, "ଭୁନ୍ଦୁ କିଏ ? ଡିରେକ୍‌ଟର ନା ମୁଁ ?"



# ଗୁଗୁର ପେଞ୍ଚ

ଖଟିରେ ବସି ଘନା କାନରୁ ଖଣ୍ଡିଆ ବିଡ଼ିଟା କାଢ଼ି ପାଟିରେ ଗୁଞ୍ଜିଲା । ଅଣ୍ଟାରୁ ଦିଆସିଲି କାଢ଼ି ଦେଖେ ତ ଗୋଟାଏ ବୋଲି କାଠି । କାଠିଟା ଦିଆସିଲିରେ ବାଜିବା ମାତ୍ରେ ମୁହଁ ମୋଡ଼ିଦେଲା । ଦୁଇ ଘର ଜଣଙ୍କ ପାଖକୁ ଯାଇ ଖୁବ୍ କଷ୍ଟରେ କାଠି ଗୋଟାଏ ଯୋଗାଡ଼ କଲା । କାଠିଟା ଜଳାଇ ବିଡ଼ି ଲଗାଇବାକୁ ଯାଉଛି; ଠିକ୍ ଏହି ସମୟରେ ଘନିଆ ଧଇଁସଇଁ ହୋଇ ଆସି ପହଞ୍ଚିଲା । ଘନା ଦେଖିଲା ଘନିଆ ମୁହଁରେ ଆଶାର ମଶାଲ ଦପ୍ ଦପ୍ ହୋଇ ଜଳୁଚି । ବିଡ଼ିଲଗା ସେତିକି । କାଠିଟା ଜଳି ଆଙ୍ଗୁଠିକୁ ଦରପୋଡ଼ା କରିଦେବାରୁ 'ଉହୁ' କହି ଫୋପାଡ଼ି ଦେଲା ଓ ଘନିଆକୁ ପଚାରିଲା, "କିବେ କଥା କ'ଣ ?" ମକରାକୁ ପାଖରେ ଦେଖି ଘନିଆ ପାଟିକଲା, "ହଇବେ ଏଠି କାହିଁକି ଛିଡ଼ା ହୋଇଛୁ । ଯା, ତୋ କାମରେ ଯା ।" ତାକୁ ଯିବାରେ କୁନ୍ଥ୍ କୁନ୍ଥ୍ ଦେଖି ଘନା କହିକରି ନାତେ ଦେଇ କହିଲା, "ଗୋଇଠା ନ ବାଜିଲେ ସହଜେ କି ପେଣ୍ଡୁ ଉଠେ ।" ମକରା ଭଲ ପିଲାଟି ପରି ପିଠିକୁ ଆଉଁସି ଆଉଁସି ଖଟିରୁ ବାହାରିଗଲା । ମନେ ମନେ ଭାବିଲା "ଶଳେ ମୋଠୁଁ କଥା ଲୁଚେଇବେ । ଆଚ୍ଛା ଦେଖିବା ମୁଁ କେମିତି ନ ଶୁଣିବି ।" ଖୁବ୍ ଧୀରେ ଧୀରେ ଯାଇଁ ସେ ଝରକା ପାଖରେ ଓ କାନ୍ଥ ଆଢ଼ୁଆଳପର ରହି କାନ ଡେରିଲା ।"

"ଘନିଆ କହିଲା, ଘନାଭାଇ ! ଆଜି ଅଭଲ ନମ୍ବର ଶିକାର"—
"କେଉଁଠି ? କଏ ? କେତେ ମାଲ ? ଧଳା ନା ହଳଦିଆ ?"

"ଗଲା ତ, ଏକାବେଳେକେ ସବୁଯାକ ପଶୁରିଯିବ । ଏମିତି ଟକ୍‌ଟକ୍ ହେଲେ ସବୁତକ ଭଣ୍ଡୁର କରିବୁ । ଥୟ ଧରି ଶୁଣ୍ । ଆଜି ବ୍ୟାଙ୍କ୍ ପାଖରେ ଟହଲ ମାରୁଥିଲି । ଗୋଟାଏ ମୋଟା ସୋଟା ହୃଣୁଆ, ନେଳିଆ କାମିଜ୍‌ପିନ୍ଧା ଲୋକ ବ୍ୟାଙ୍କ୍‌ରୁ ଗୁଡ଼ାଏ ସୁନାଗହଣା ମୁକୁଳାଇ ଆଣିଛି । ସୁନା ପ୍ରାୟ ଦୁଇସେର ଯାଏ ହେବ ।" ଘନା ଆଖି ଖୋଷି ହୋଇଗଲା । ତା ମେଲା ପାଟିରୁ ନାଳ ଥପ୍‌ଥପ୍ ହୋଇ ନିଗିଡ଼ି ପଡ଼ିଲା । ଫସ୍‌ଫସ୍ କରି କହିଲା, "ଏଁ, ଦୁଇ ସେର ! ହଳଦିଆ ମାଲ !"

"ହଁ ବେ ହଁ, ଦୁଇସେର ହଳଦିଆ ମାଲ । ସେ ଲୋକଟା ତାକୁ ଗୋଟିଏ ନେଳିଆ ସୁଟ୍‌କେଶରେ ପୂରାଇ ଆଣିଛି । ତାର ଖବର ଅନ୍ତର ସବୁ ବୁଝି ନେଇଛି । ଆଜି ରାତି ପାସେଞ୍ଜରରେ ସେ ଭଦ୍ରକ ଯିବ । କେମିତି ଗୋଟାଏ ପେଞ୍ଚ ଠିକ୍ କରି ତା'ଠି ଲଗାଇ ମାଲତକ ହାତ କରିବା ।"

"ପେଞ୍ଚ ? ସେ ଭାର ମୋ ଉପରେ । ପୁଲିସ୍‌ସାହେବର କଚ୍ଛ କାଟିଦେଇଥିବାଲା ମୁଁ । ମୋ ନାଁ ଘନାଟି ।"

"ଆରେ, ବକବୁ ପଛେ । ଆଗେ ପେଞ୍ଚ ଠିକ୍ କର ।"

"ଆରେ, ସେମିତିଆ ଗୋଟାଏ ନେଳିଆ ସୁଟ୍‌କେଶ୍ ଆଣିବା । ରାତିରେ ଆମେ ବି ପାସେଞ୍ଜରରେ ଉଠିବା । ସେ ଯେଉଁ ଡବାରେ ବସିବ, ଆମେ ସେଇ ଡବାରେ ବସିବା । ତାର ସୁଟ୍‌କେଶ୍ ପାଖରେ ଆମର ସୁଟ୍‌କେଶ୍ ରଖିବା । ଟଙ୍କା ଦୁଇଶହ ଖଣ୍ଡେ ଆମ ସୁଟ୍‌କେଶ୍‌ରେ ରଖିଥିବା । କିଛି କଲେଇକରା ସୁନାର ଅଳଙ୍କାର ବି ଥୋଇଦେବା । ଆମ ସୁଟ୍‌କେଶକୁ ତାରି ଆଗରେ ଦୁଇ ଗୁଳଥର ଖୋଲି ତାକୁ ଦେଖାଇ ଦେବା । ମଝିରେ ମଝିରେ ସୁଟ୍‌କେଶ୍‌କୁ ତାହାର ଜମା ଦେଇ ପଦାକୁ ବୁଲି ଆସୁଥିବା । ସେ କୌଣସି ମତେ ବିଶ୍ୱାସଟାକୁ ଜମାଇ ଦେବା । ଲୋକଟା ଟିକିଏ ଅଣହୁସିଆର ହେଲେ କିମ୍ବା ତାର ସୁଟ୍‌କେଶ୍‌କୁ ଆମ ଜମା ଦେଇ ପରିସ୍ରା କରିଗଲେ ସୁଟ୍‌କେଶ୍‌ଟାକୁ ବଦଳାଇ ଦେଇ ଦେଖିଲା କାମ କରିନେବା । ଧରା ପଡ଼ିଲେ ବି ବିପଦ ନାହିଁ । ଓହୋ ମୋର ଭୁଲ ହୋଇଗଲା ବୋଲି କହିଦେଲେ ସବୁ ଠିକ୍ ହୋଇଯିବ । ଯା, ଠିକ୍

ସେଇ ରଙ୍ଗ ଓ ସେଇ ଧାଇଜ୍‌ର ଗୋଟାଏ ସୁଟ୍‌କେଶ, କଣି ଆଣିବୁ । ଆଉ ସେ ଲୋକଟା କେଉଁଠି ଅଛୁ ଜାଣିଛୁତ ?”

"ଆରେ ହଁଅମ୍, ସେଥିରେ ମୁଁ ବାକ ରଖିଚ ? ସେ ପରା ହୋଟେଲରେ ଖାଇସାର ସିଧା ସିଧା ଷ୍ଟେସନ ଯିବ । ମୁଁ ଯାଉଛୁ ସୁଟ୍‌କେଶ ଆଣିବ । ତୁ ଯା ଦୁଇଶ ଟଙ୍କା ଆଉ କଛୁ କଲେଇକରା ସୁନାର ଅଳଙ୍କାର ଯୋଗାଡ଼ କରିବୁ ଓ ସନ୍ଧ୍ୟାବେଳକୁ ଷ୍ଟେସନକୁ ଚାଲିଯିବୁ । ସେଇଠି ତୋର ମୋର ଭେଟ ହେବ । ତୋତେ ମୁଁ ସୁଟ୍‌କେଶ ଦେବ ଓ ସେ ଲୋକକୁ ଚିହ୍ନାଇ ଦେବ ।”

"ଆଛା ଭାଇ ନସ ଯଦି ଅଣହୁସିଆର ନ ହୁଏ କ ସୁଟ୍‌କେଶ ଗ୍ଲୁଡ଼ ପଦାକୁ ନ ଯାଏ ?"

"ଆରେ ଘିନା ତାକୁ ଜବରଦସ୍ତ ଅଣହୁସିଆର କରିଦେବ । ଆରେ କଛୁ ନ ହେଲ ବେଳକୁ ତାର ପାଖରେ ବସି ଜଣକ ସାଙ୍ଗରେ ଘମାଘୋଟ କଳି ଆରମ୍ଭ କରିଦେବୁ । ସେ ନିଶ୍ଚୟ କଳି ଭାଙ୍ଗିବାକୁ ଚେଷ୍ଟା କରିବ । ତୁ ରାବଣାସୁର ଭଳି ପାଟି କରିବୁ । ସେଇ ଗଣ୍ଡଗୋଳ ଭିତରେ ମୁଁ ଫଟ୍‌କର ସୁଟ୍‌କେଶଟି ବଦଳେଇ ଦେଇ ଖସିଯିବ । ଗଣ୍ଡଗୋଳ ଆରମ୍ଭ ହୋଇଗଲେ ଚେନ୍‌ଟା ଟାଣିଦେଇ ମୋ କାମ ମୁଁ କରିନେବ । ଯା ତୁ ଚଞ୍ଚଳ ଯା ।”

ମକରା ଜାଣିପାରିଲା ଯେ କଥାବାର୍ତ୍ତା ସରିଗଲା । ପାଦ ଟିପି ଟିପି ସେ ଲୁଚିବା ଜାଗାରୁ ପଳାଇଗଲା । ମନେ ମନେ ଭାବିଲା "ଶଳାଙ୍କର ଧମାକ କେତେ । ଶଳା ଘିନା ମତେ ନିର୍ବୋଧିଆ ଦେଖି ଗୋଇଠା ମାରିଲା । ଶଳେ ମୋତେ ଲୁଚେଇ ପେଞ୍ଚ ଲଗେଇବେ । ରହ ଶଳା ! ଆଜୁକର ଗୁଗୁର ପେଞ୍ଚ ଲଗେଇ ମୁଁ ଯଦି ତମକୁ କାବୁ ନ କରିଛୁ । ତେବେ ମୋ ନାଁ ମକରା ନୁହେଁ ।” କାଳ ବିଳମ୍ବ ନ କରି ସେ ଷ୍ଟେସନ ଆଡ଼େ ଛୁଟିଲା ।

ଠିକ୍ ରାତି ନ'ଟା ବେଳେ ଘିନା ଓ ଘନିଆ ଗୋଟିଏ ନେଳିଆ ସୁଟ୍‌କେଶ ଧରି ଥାର୍ଡ଼କ୍ଲାସ ଓ୍ଵେଟିଂ ରୁମରେ ପହଞ୍ଚିଲେ । ଘନିଆ ବର୍ତ୍ତିତ ମୋଟା ଲୋକଟାକୁ ଠିକ୍ ତାଙ୍କର ନେଳିଆ ସୁଟ୍‌କେଶ ପରି ଗୋଟାଏ ସୁଟ୍‌କେଶ ଧରି ବେଞ୍ଚ ଉପରେ ବସିଥିବାର ଦେଖିଲେ । ଦୁଇ ଜଣଯାକ ସିଧା ସଳଖ ଯାଇଁ ତା ପାଖରେ ବସିଲେ । ମୋଟା ଲୋକଟି କାହିଁକି କେଜାଣି ସେ ଦୁଇଜଣଙ୍କୁ ଦେଖି ଅଳ୍ପ ଅଳ୍ପ ହସିଲେ । ଘିନା ଟିକଏ ହସି ଦେଇ ପଚାରିଲା, "ଆଜ୍ଞା ଆପଣ କୁଆଡ଼େ ଯିବେ ?"

"ଭଦ୍ରଖ, ଆପଣ ବର୍ତ୍ତେ କୁଆଡ଼େ ଯିବେ ?"

"ଆମେ ଯିବୁ ବାଲେଶ୍ୱର ।"

"ହଉ ହଉ ବସନ୍ତୁ, ଭଦ୍ରଖ ଯାକେ ତ ସାଙ୍ଗହୋଇ ଯାଇ ପାରିବା ।" ଘାନା ମନେ ମନେ ଭାବିଲା, "ଆଜି ଭାଗ୍ୟଟା ଭାରି ତେଜ୍ । ମାଗଣାରେ କ'ଣ କଟକଚଣ୍ଡୀଙ୍କ ଧଣ୍ଡା ନେଇ ଆସିଥିଲି । ଆମକୁ ଦେଖିବା ମାତ୍ରେ କ'ଣ ଲୋକଟା ପିଗ୍‌ଲଗଲାଣି । ଗାଡ଼ିରେ ବସିଲାବେଳକୁ ତ ବୋଧ୍ୱ ଯାଇଥିବ । ଶଳା ସବୁ ଗ୍ରହଙ୍କ ଆଜ ଆମ ପକ୍ଷରେ ।"

କ୍ରମେ ଭଦ୍ରତା, ନମ୍ରତା, ଆତ୍ମୀୟତାର କାରବାର ଜମି ଉଠିଲା । ମୋଟା ଲୋକଟି ମୁହଁରେ ହସ ଉକୁଟି ଉଠୁଥାଏ । ଦୁଇ ଘଣ୍ଟା ମଧ୍ୟରେ ଘାନା ଓ ଘନିଆ ସେ ଲୋକଟି ଆଗରେ ପ୍ରାୟ ଆଠଥର ସୁଟ୍‌କେଶଟି ଖୋଲିଲେ, ଟଙ୍କା ଗଣି ଓ ଅଳଙ୍କାର ଡନଖିକରି ସୁଟ୍‌କେଶରେ ପୂରାଇ ପକାଇଲେ । ପ୍ରାୟ ତିନି ଘଣ୍ଟାଥର ମୋଟାବାବୁ ଜମା ସୁଟ୍‌କେଶ ଦେଇ ପଦାକୁ ଗଲେ । ଗାଡ଼ି ଆସିଲା; ତିନିହେଁ ଯାଇ ଗୋଟାଏ ଡବାରେ ଲଗାଲଗିହୋଇ ବସିଲେ । ଦୁଇ ସୁଟ୍‌କେଶ ଏକାଠି ଥୁଆ ହୋଇଥାଏ । ସୁଟ୍‌କେଶ ଦୁଇଟି ପ୍ରାୟ ଏକ ରକମର ହୋଇ-ଥିଲେହେଁ ଘାନା ଆଖିରେ ତାହା ବାରି ହୋଇ ଯାଉଥିଲା । ଗାଡ଼ି ଗୋଟାଏ ପରେ ଗୋଟାଏ ଷ୍ଟେସନ ଅତିକ୍ରମ କଲା । ଘାନା ଘନିଆ ଅଥୟ ହୋଇ-ପଡ଼ିଲେ । ଘାନା ଭାବିଲା, "ଶଳାଟାକୁ ଠିକଏହେଲେ ମୁତ ମାଡ଼ୁ ନାହିଁ । ଶଳାର ଧାସ ବାଜିଲେ ବହୁମୂତ୍ର ରୋଗୀ ବି ଭଲ ହୋଇଯିବ । ଆଉ ବେଶୀ ବେଳ ଅପେକ୍ଷା କରିବା ଉଚିତ୍ ନୁହେଁ । କାଳେ ଆଉ କଏ ହାବୁଡ଼ି ଯିବ ।" ଖୁବ୍ ସତର୍କତାର ସହିତ ସେ ଘନିଆକୁ ଆଖିଠାରି ମାଇଲା । ଘନିଆ ଉଠି ଠିଆହେଲା । ଚଳନ୍ତା ଗାଡ଼ିରେ ଟଳଟଳ ହୋଇ ଆଗରେ ବସିଥିବା ଗୋଟାଏ ଲୋକ ଉପରେ ଅଜାଡ଼ି ହୋଇ-ପଡ଼ିଲା । ସଙ୍ଗେ ସଙ୍ଗେ କଳି ଆରମ୍ଭ ହୋଇଗଲା । ସେ ଲୋକଟା ଏତେ ବଳୁଆ ବୋଲି ଘନିଆ ଯଦି ଜାଣିଥାଆନ୍ତା, ତେବେ ଆଦୌ କଳି ଲଗାଇ ନ ଥାନ୍ତା । କୁମ୍ଭାର ବାଧା ମାରି ଓ ଛେଚି ଚକଟା ମାଟି ଚକଟିଲା ପରି ସେ ଲୋକଟି ଘନିଆକୁ ଦରମରା କରିଦେଲା । ଘନିଆ ଏକା ଯୋଡ଼ାଏ ରାବଣାସୁର ପରି ପାଟି କରୁଥାଏ । ଏହି ସମୟ ଭିତରେ ଘାନା ଚପଲ ଚେନ୍ ଟାଣିଦେଲା । ଘନିଆ ଦେହରେ ସେତେବେଳକୁ ଆବୁମାନ

ବାହାର ପଡ଼ୁଥାଏ । ସେ ମୋଟା ଲୋକଟି ମଝିରେ ପଶି ଦୁଇଜଣଙ୍କୁ ଛଡ଼ାଇଲେ । ବାମ୍, ଘନା ଏତକ ଓର ଉଣ୍ଡୁଥିଲା । ଆଖି ପିଚୁଳାକେ ସୁଟ୍‌କେଶଟି ବଦଳାଇ ଦେଇ ଡବା ଭିତରୁ ନେଇ ଚାଲିଆସିଲା । ଗାଡ଼ିଟା ବି ସାଙ୍ଗେ ସାଙ୍ଗେ ବନ୍ଦ ହୋଇଗଲା । ଗାର୍ଡ଼ସାହେବ ଡବା ଭିତରେ ପଶି ସବୁ ଶାନ୍ତ କରିଦେଲେ । ଘନିଆ ଟ୍ରେନ୍‌ଟି ଟ୍ରେନ୍‌ଟି ସେ ଡବା ଭିତରୁ ବାହାର ଆସିଲା । ମୋଟା ଲୋକଟି ଟିକଏ ଘନିଆ ଆଡ଼କୁ ଓ ଟିକଏ ସୁଟ୍‌କେଶ ଆଡ଼କୁ ଚାହିଁ କର୍‌କର୍ ହୋଇ ହସି ଉଠୁଥାଏ । ଘନିଆ ଓ ଘନାକୁ ଛାଡ଼ ଟ୍ରେନ୍‌ଟା ଚାଲିଗଲା ।

ଘନା ହାତରୁ ଘନିଆ ସୁଟ୍‌କେଶଟା ଆଣି ହାତରେ ଧରିଲା । ସଙ୍ଗେ ସଙ୍ଗେ ତା ଦେହ ବ୍ୟଥା କୁଆଡ଼େ ଉଭେଇଗଲା । ଅତି ଉଲ୍ଲାସରେ କହି ଉଠିଲା, "ଓହୋ କେଡ଼େ ଓଜନ । ଖାଲି ଦୁଇସେର ଯାଏ ହାଲଦିଆ ମାଲ ।" ଆନନ୍ଦରେ ତାର ବାକ୍‌ରୁଦ୍ଧ ହୋଇଗଲା । ଛୁଆକୁ ବାପ ଛାତିରେ ଜାକି ଧରି ଗେଲ କଲପରି ସୁଟ୍‌କେଶକୁ ଛାତିରେ ଜାକି ଧରି ସେ କେତେ ଗେଲ କରି ପକାଇଲା । ଗୋଟାଏ ଗଛ ମୂଳକୁ ଯାଇଁ ଘନା ସୁଟ୍‌କେଶକୁ ଛାଡ଼ି ଦେଲା । ଘନିଆ ହଁଆସିଲି ମାରି ଆଲୁଅ ଦେଖାଇଥାଏ ଓ ମନେ ମନେ ଭାବୁଥାଏ, ମୋର ଦୁଇଭାଗ, ଘନାର ଭାଗେ । ଏତେ ପରିଶ୍ରମ ଏତେ ମାଡ଼, ଘନା ବି ରାଜି ହୋଇଯିବ ଯେ । ସୁଟ୍‌କେଶ ଖୋଲିଗଲା । ତରତର ହୋଇ ଘନା ପୁଟୁଳାଟାକୁ ଖୋଲିଦେଲା । ଭିତର ଜିନିଷକୁ ଚାହିଁ ଥକ୍‌କାମାରି ବସିଗଲା । ଘନିଆ ତରତର କରି ଦୁଇଟା କାଠି ମାରିଲା । ଆଖିକୁ ବିଶ୍ୱାସ କରିପାରୁ ନ ଥାଏ । ଜିନିଷଟାକୁ ସୁଟ୍‌କେଶ ଭିତରୁ କାଢ଼ିଆଣି ଦୁମ୍‌କରି ତଳେ ଫୋପାଡ଼ ଦେଲା । ଗୋଟାଏ ଗୋଟି-କିଆ ଇଟା ! ଘନା ବି ଗୋଟାଏ କାଗଜ ସୁଟ୍‌କେଶ ଭିତରୁ କାଢ଼ିଆଣି ଖୋଲିଲା । ଘନିଆ ପୁଣି ଗୋଟାଏ ହଁଆସିଲି ମାରି ଦେଖିଲା, କାଗଜରେ ଲେଖା ହୋଇଛି......"ଗୁଗୁର ପେଞ୍ଚ ।"

ଭଦ୍ରଖ ଷ୍ଟେସନଠାରେ ମକରା ସେ ମୋଟା ବାବୁକୁ କହିଲା, "ବାବୁ ମୋତେ ସେ ଦୁଇଶ ଟଙ୍କା ଦେଇ ଦିଅନ୍ତୁ, ଆଉ ସେ ଗହଣା-ଗୁଡ଼ିକ ଆପଣଙ୍କର ଗୃହିଣୀଙ୍କୁ ଦେଇଦେବେ ।" ବାବୁ ହସି ହସି କହିଲେ "ହଉ ହଉ ଦେବା, ସାବାସ୍ ତୋ "ଗୁଗୁର ପେଞ୍ଚ ।"

# କୋଦଣ୍ଡା ନଶାପ

ଛତା ଧରି ଲୋକଟି ଧପାଉଥାଏ । ସମୟ ଜାଣିବା ପାଇଁ ବେଳେ ବେଳେ ଛତାଟାକୁ ଆଡ଼େଇ ସୂର୍ଯ୍ୟଙ୍କ ଆଡ଼େ ଚାହିଁ ଦେଉଥାଏ । ଉପର ଛାଉରେ ଗମ୍‌ଗମ୍ ହୋଇ ଝାଳ ବୋହି ଯାଉଥାଏ । ତଳେ ତାତିଲା ବାଲି ଚେଁ ଚେଁ ଲାଗିଯାଉଥାଏ । ତା ଉପରେ ପୁଣି ତିନି ଚାରିଟା କଣ୍ଟା ଅବଶ୍ୱାସୀଙ୍କ ପରି ପାଦରେ ପଶି ଯାଇଥାଏ । ଏହିପରି ଭାବରେ ଅସ୍ତବ୍ୟସ୍ତ ହୋଇ ଲୋକଟି ପୋଖରୀ ପାଖରେ ପହଞ୍ଚିଲା । ସେଠାରେ ବହୁତ ଲୋକ ଗାଧୋଉଥାନ୍ତି । ଆଗନ୍ତୁକଟି ଜଣକୁ ଡାକି କହିଲା, "ହଇ ହୋ ମାଡ଼ଗୁଲ୍ ଜେନାଙ୍କ ଘର ଏଠିକି କେତେ ଦୂର ?" ସେ ଲୋକଟି ଟିକିଏ ଭାବିଲା ପରି ହୋଇ କହିଲା "ପାଏ ବାଟ ହେବ ।" ଟିକିଏ ଦୂରରେ ଗାଧୋଉଥିବା ଆଉ ଗୋଟିଏ ଲୋକ ସାଙ୍ଗେ ସାଙ୍ଗେ କହି ଉଠିଲା, "ହେଃ, ଟିକିଏ ଅନ୍ଦାଜ ନାହିଁ, ଅଧପାଆରୁ ମୁଠିଏ ବି ବେଶି ହେବ ନାହିଁ ।" ପ୍ରଥମ ବ୍ୟକ୍ତି ପ୍ରତିବାଦ କଲା—"କ'ଣ ହେଲା ! ସେନ୍ରେଷ ଘର ତ ଏଠିକି ଅଧପାଏ ହେବ । ସେଠୁ ଜେନାଘର କ'ଣ ଅଧପାଏ ହେବ ନାହିଁ ? ଆଉ ଅଧପାଏ ବୋଲି କହିଦେଉଚ କେମିତି ?"—

"ଇସ୍ ଫିତା ପକେଇ ମାପିଲା ଭଳିଆ କ'ଣ କହି ଦେଉଚ !"

"ଆରେ ରଖ୍ ରଖ୍, ଖାଲି ଫିତା କଥା କହୁଚ ମନେ ପଡ଼ି ଯାଉଚ !"

"ମନେ ପଡ଼ୁନ ? ମୁଁ ପଗ ଗୋବର ଜମିକୁ ଫିଡାରେ ମାପି ୩୦ ଫୁଟକୁ ୪୦ ଫୁଟ କର ଦେଇଥିଲ ।

"ଆରେ କ'ଣ ଘର ବଡ଼ି ବଡ଼ି କଥା କହୁଛୁ ? ସତେ ଯେମିତି ଗୋବର ଜମିରୁ ସେ ଦଶ ଫୁଟଟା ନେଇଯିବୁ ।"

ଉଦ୍ଯୋଗ ପର୍ବର ରଥୀମାନେ ଆସି କୌରବ ଓ ପାଣ୍ଡବ-ମାନଙ୍କ ପକ୍ଷରେ ଯୋଗ ଦେଲାପରେ ଗାଧୋଉଥିବା ଅନ୍ୟାନ୍ୟ ଲୋକମାନେ ଗୋଟିଏ ଗୋଟିଏ ହୋଇ ଉଭୟ ପକ୍ଷରେ ଯୋଗଦେଲେ । ତୁମୁଳ ବାକ୍ଯୁଦ୍ଧରେ ବ୍ୟକ୍ତିବିଶେଷର ସତ୍ତା ଲୋପ ପାଇଲା । ଉଭୟ ପକ୍ଷରୁ ସର୍ ସାର୍ ହୋଇ ପ୍ରଚଣ୍ଡ ବାକ୍ୟ ଶରମାନ ବାୟୁମଣ୍ଡଳକୁ ବିକ୍ଷୋଭିତ କରୁଥାନ୍ତି । ଆଗନ୍ତୁକଟି ଏହା ଦେଖି ତାଟକା ହୋଇଗଲା । ସେ ବିଚରା "ହାଁ ହାଁ ଭାଇମାନେ, ବାବୁମାନେ, ଏମିତି କାହିଁକି ହଉଚ ? ଏବେ ଆପଣମାନେ କେଉଁଠାରୁ ଯାଇ କେଉଁଠି ପହଞ୍ଚିଲେଣି" ରଡ଼ି ଛାଡ଼ୁଥାଏ । ତା କଥାଗୁଡ଼ାକ କୁମ୍ଭମେଳାରେ ଛୁଆ ହଜିଯିବାପରି କୁଆଡ଼େ ହଜିଗଲା । ତାକୁ ଖାଲି ଶୁଭୁଥାଏ—

"ଆରେ ଶଳେ, କେମିତି ଗୋବର ଜମିରୁ ଦଶଫୁଟ ନ ନବ ଦେଖିବା ଭଲା, କୋଉ କଂଗ୍ରେସିଆ ତୁମ ପିଠିରେ ପଡ଼ିବ । ଶଳେ ଭୋଟ ବେଳ କଥା ପାଇଚ ପରା ?"

"ଆବେ ଯାଆବେ, ତମ ନାଲି ଝଣ୍ଡାକୁ ବଇଦା ରଥ ପାଖରେ ଦେଖେଇବ । ତୁମ ହାତୁଡ଼ିକି ଆମେ ଡରନୁ । ଆମକୁ କ'ଣ ବୋଲି ପାଇଛ କରେ ! ଆମେ ନବ ଚୌଧୁରୀ ପାଖରେ ବସି ଗୁହା ଖାଇଲାବାଲା ନୁହଁ !"

"ଶଳାଙ୍କ କେଡ଼େ ଆଡ଼ା ! ଆବେ ଶଳେ, ନବ ଚଉଧୁରୀର ମେହେନ୍ତର ପାଖରେ ବସି ଖାଉଥିବ ବେ ! ଶଳେ ପି କଥାରେ ନବ ଚଉଧୁରୀ, ନବ ଚଉଧୁରୀ, ନବ ଚଉଧୁରୀ ! ସତେକି ଯେମିତି ସ୍ବାଙ୍କର ପେଇଁ ନବ ଚଉଧୁରୀ ଆମକୁ ନେଇ ଫାଣ୍ଡିରେ ପୂରେଇଦବ । ଶଳାଙ୍କ ମୁଣିରେ ବହୁତ ପଇସା ହୋଇଗଲାଣି ।"

"ଆରେ ଅଇଁଠା, ଦଉଡ଼ ଯିବୁ କି । ଆମ ଅଫିସ୍ ଘରେ ଚକରା ଭାଇ, ଶନଆଁ ଭାଇ, ହଗୁରା ଭାଇ ହେଣ୍ଟକା ବସିଛନ୍ତି ଡାକଦବୁ, ଖଣ୍ଡେ

ଲେଖାଏଁ ଠେଙ୍ଗାଧରି ବାହାରି ଆସିବେ । ଶଳାଙ୍କ ଦଳ ଟିକିଏ ବେଶି ହୋଇଯାଇଚ୍ଛି ନା ଉଚ୍ଚୁରୁଛନ୍ତି ।”

“ଆରେ ବନା, ତୁ ଯିବୁଟି ମାଗା, ଗନ୍ଧିଆ, ସଇତା ହେଇକାଙ୍କୁ ଡାକିଦବୁ ଲଙ୍ଗଳ ଖୋଲିଦେଇ ଚଞ୍ଚଳ ଇଆଡ଼େ ଧାଇଁଆସିବେ । ସେତି ଦିନ ବଲ କଷାକଷି ହେଇଥିଲା, ଆଜ ବି ହେଇଯିବ ।”

ଉଭୟପକ୍ଷର ଦୂତମାନେ ଧାଇଁ ଯାଇଁ ନୂତନ ସଶସ୍ତ ସୈନ୍ୟ-ମାନଙ୍କୁ ଡାକିଆଣିଲେ । କଥାରୁ ମୁଥ, ମୁଥରୁ ଠେଙ୍ଗା ଚାଲିଲା । ଆଗନ୍ତୁକଟି କାଠଭୂତ ପାଲଟିଯାଇ ମନେ ମନେ ଭାବୁଥାଏ···ଏ ଗାଁର ସମସ୍ତେ କ’ଣ ମଦୁଆ ? ସେତେବେଳକୁ ଦୁଇଟାଙ୍କର ମୁଣ୍ଡ ଫାଟିଗଲାଣି । ଦଶ ବାର ଜଣ ବି ଘାଇଲା ହୋଇଗଲେଣି । ଲୋକଟି ଆଉ ସ୍ଥିର ହୋଇ ରହି ପାରିଲା ନାହିଁ । ଜମା ହୋଇଥିବା ମାମଲତକାରିଆଙ୍କ ଭିତରକୁ ପଶିଯାଇ କଲ୍‌କଲା ରଡ଼ିରେ କହି ଉଠିଲା—“ଆରେ ତୁମ ଗାଁ’କୁ କ’ଣ ପାଣ୍ଡବମାନେ ଆସି ନ ଥିଲେ କିରେ ? ଆରେ ତୁମେଗୁଡ଼ାକ କଣ ସବୁ ମଦୁଆ ? ଢିଙ୍କିଶାଳରୁ ଯାଇଁ ଢେଙ୍କାନାଳରେ ଉଠିଲଣି ? ପୁଲିସ୍ ଆସିଲେ କାହାକୁ ବାକି ରଖିବନି ! ସମସ୍ତଙ୍କୁ ବାନ୍ଧିକରି ନବ । ନାଲି ଆଲୁଅ ଦେଖିଲେ ଯେମିତି ରେଲଗାଡ଼ି ଅଟକିଯାଏ, ନାଲି ରକ୍ତ ଦେଖିବାରୁ ବାଡ଼ିଆ ପିଟା ଥପ୍ କରି କମିଗଲା । ପୁଲିସ୍ ନାଁ ଶୁଣି ଗୁଡ଼ାଏ ଲୋକ ଆସ୍ତେ ଆସ୍ତେ ସେଠାରୁ ଖସିବାକୁ ଲାଗିଲେ । ବାକି ଲୋକଙ୍କ ମଧ୍ୟରୁ ଜଣେ ଆଗନ୍ତୁକଙ୍କୁ କହିଲା, “ଆରେ ରଖ ତୋ ପୋଲିସ୍ । ପୋଲିସ୍ ଆମର ଆଲୁଅ କରିବ । କିଛି ନହେଲେ ଆମେ ସିଧା ନବ ଚଉଧୁରୀ ପାଖକୁ ଚାଲିଯିବୁ ।”

“ଆରେ କେମିତିକା ଅଖବା ଲୋକଗୁଡ଼ାକ ହୋ ! ନବ ଚଉଧୁରୀ କ’ଣ ତୁମକୁ କହିଛନ୍ତି ଏମିତି ଫଉଜଦାରି କରିବାକୁ ? ତୁଚ୍ଛା ଟାରେ ତାଙ୍କ ନାଁ କାହିଁକି ଆଣି ଏଠି ଭର୍ତ୍ତି କରୁଚ ?”

“ଆରେ ନହି, ମୁଁ ପରା ଆଗରୁ ଠିକ୍ ଭାବିଥିଲି ଏ ଗୋଟିଏ କଜଳପାତିଆ ଭଲଲୋକ, ତାଙ୍କ ପଟ ଧରି କେମିତି କହୁଚି ଦେଖ ।”

“ଆରେ ପଟ ହେଲା କ’ଣ ? ତୁମେମାନେ କି କାଣ୍ଡ କରିଲଣି ତେବେ ବି ଚେତା ପଶୁନାହିଁ । ତୁମ୍ଭେମାନେ ଏଡ଼ିକ ଅପରିଚ୍ଛନିଆଁ ଲୋକଗୁଡ଼ାକି ନା !”

ଲୋକଟି ହଠାତ୍ ଏତକ କହିଦେଇ ଯାଏ କୁଆଡ଼େ ! ସେ ଲୋକଗୁଡ଼ାକଙ୍କର ଯେଉଁ ହାତ କଣ୍ଡୁ ଚକ ବାକ ଥିଲା, ସେତକ ତାର ଉପରେ ନବାରିତ ହୋଇଗଲା । ଲୋକଟି ଅପମାନ ଓ କ୍ରୋଧରେ ପୁଲିସଥାନା ଆଡ଼େ ଧାଇଁବାର ଦେଖି ଜଣେ ଦୁ'ଜଣ ମାମଲାତ୍କାର ପ୍ରମାଦ ଗଣିଲେ । ସ୍ୱତରେ ଗାଁ ଠାକୁରଘରେ ନଶାପ କରି କଥାଟା ତୁଟାଇଦେବେ ବୋଲି କହି ତାକୁ ଅଟକାଇଲେ ।

ସନ୍ଧ୍ୟା ହେବାରୁ ଗାଁ ଠାକୁରଘରେ ଝୁମାଲିଆ ସଭା ବସିଲା । ଏ ସଭପାଇଁ ଆଗନ୍ତୁକଙ୍କୁ କଉସିମା ବାବତ ଅଣାଏ, ପାନଗୁଆ ବାବତ ଗୁରିଅଣା ଫୁଲ ଚନ୍ଦନ ବାବତ ଅଣାଏ ଓ ଡାକୁଆ ବାବତ ଅଣାଏ ଏହିପରି ସାତଣା ପଇସା ଦାଖଲ କରିବାକୁ ପଡ଼ିଲା । ପଛିଲେ ତାଙ୍କୁ ତାଙ୍କ ଗୁହାରି ଜଣାଇବାକୁ ପଡ଼ିଲା । ଅଧିକାରୀ ତାଙ୍କର କଥାସବୁ ଶୁଣିସାରି ଘନିଆକୁ ଡାକି ପଚାରିଲେ, "ହଇରେ ଘନିଆ ତାଙ୍କ ଦେହରେ ହାତ ଦେଲା କିଏ ଓ କାହିଁକି ଦେଲା ?" ଘନିଆ ସାଙ୍ଗେ ସାଙ୍ଗେ ହାତ ଯୋଡ଼ି କହିଲା, "ଆଜ୍ଞା ସେ ତ ବାହାର ଲୋକ, ବାହାରେ ବାହାରେ ଯାଇଥାଆନ୍ତେ କମ୍ବା ଖାଣ୍ଟି ନ୍ୟାୟ୍ୟ କଥା କହିଥାଆନ୍ତେ । ସେ ବରାବର ତାଙ୍କ ତରଫଧରି କଥା କହିଲେ ଓ ଆମକୁ ଓଲଟା ଗାଳିଦେଲେ ।" ଆଗନ୍ତୁକ ପ୍ରତିବାଦ କରି ଉଠିଲେ, "ଆରେ ତାଙ୍କ ତରଫ କ'ଣ ତୁମ ତରଫ କ'ଣ ? ତୁମେ ସବୁ ମଣିଷଭଳିଆ ହେଉଥିଲ ନା ?"

"ହେଇ ହେଇ ଶୁଣୁଚ ଅଧିକାରୀଏ, ଶୁଣୁଚ ?"

ଅଧିକାରୀ ଚୁପ୍ ହେବାକୁ ଇଙ୍ଗିତ କଲେ । ଆଗନ୍ତୁକ ପୁଣି କହିଲେ, "ମୁଁ ତ ପଚାରିଲି ଜେନାଘର କେଉଁଠି ? ଏ କଥାରୁ ତୁମର ବାଡ଼ିଆ ପିଟା ହେବାର କ'ଣ କାରଣ ଥିଲା ?"

"ଆଉ କ'ଣ ଆମେ ତାକୁ ଡ଼ରି ରହିଥାଆନ୍ତୁ ?"

ଅଧିକାରୀ କହିଲେ, "ଆରେ ଘନିଆ, କଥାଟା କ'ଣ ପୁରା ପିଟାଇକରି କହ । ଅସଲ ଗୁମରଟା କେଉଁଠି ଅଛି ନ ଜାଣିଲେ ନଶାପ ହବ କ'ଣ ?"

"ହଁ ଆଜ୍ଞା, ସେଇକଥା । ଗୋବରା ଜମିଟା ସେମାନେ ମାରିପିଟି ଖାଇବାକୁ ବସିଥିଲେ । ମୁଁ ଗୋଟାଏ ଜାଗାରେ ବାଡ଼ ପକେଇ ତାଙ୍କ

ଜମିକୁ ଅଟକେଇ ଦେଲ । ସେମାନେ ରବେଇ ଖବେଇ ହେଇ କହୁଛନ୍ତି ଯେ, ଯୁଆଡ଼କୁ ଆଉ ଦଶଫୁଟ ଜାଗା ତାଙ୍କର ଅଛି । ମୁଁ ଜଗର ଧଶଲ, ମୁଣ୍ଡ ଛୁଡ଼ିଯିବ ପଛେ ବାଡ଼କୁ କବ୍ ଘୁଞ୍ଚେଇ ଦେବ ନାହିଁ । ଆମ ଦଳର କସ୍ରମଣ୍ଡ ଦେଖି ସେମାନେ ତ ରକ୍ତଗୁଳଳ ଗୁରେବେଇ ହେଇ ରହିଲେ ।"

ହଠାତ୍ ଆଉ ଜଣେ ଉଠିପଡ଼ି କହିଲ, "ଆଜ୍ଞା ଦେଖନ୍ତୁ ତ ଇଏ କୋଉ ନ୍ୟାୟ କଥା ! ତୁମର ଯେତକ ଜାଗା ପାବୁଚ ସେତକ ନଅ । ତୁମେ କାହିଁକି ସକଳା ଜମିରୁ ଦଶଫୁଟ ମାଡବସିବ ?"

"ଆରେ ହକ୍ ଜ୍ୟେଷ୍ଠାଂଶ, ସେଥିଲାଗି ନେଲି । ତୁମେ କ'ଣ ଦାନ ଦେଉଥିଲ କି ?"

"ଆରେ କୋଉ ଆଇନ ପଇଣ୍ଟିରେ ଅଛି ଜ୍ୟେଷ୍ଠ ବୋଲି ବେଶି ଜାଗା ନବ ? ଆମ ଇଚ୍ଛା ହେଲେ ଆମେ ଦବୁ ।"

"ରଖବେ ତୋ ଇଚ୍ଛା; ଇଏ ଶଳା ଗୋଟାଏ ମଣିଷ ହେଲଣି, ଯାର ଗୋଟାଏ ପୁଣି ଇଚ୍ଛା ।"

ହଠାତ୍ ଆଉ ଜଣେ ଉଠିପଡ଼ି କହିଲ, "ଆରେ ଏ ଶଳା ମୁଣ୍ଡରେ ପେଚ୍ଚ ବସିଲଣି । ଆରେ ଶଳା ! ଏଇଟା ସଭା ନା କ'ଣ ? ଶଳା ତୋ ମୁହଁରେ ବାଡବଣା ନାହିଁ ?"

ଏ ପାଖରୁ ବ ଆଉ ଜଣେ ଉଠିପଡ଼ି କହିଲ, "ଆରେ ତୁ ଶଳାଟି କ'ଣ ? ତୁବ ତ ସେଇ 'ଶଳା' 'ଶଳା' କହୁଚୁ ।"

ଅଧିକାଂଶ ପାଟି କର ଉଠିଲେ, "ଆରେ ଶଳାଏ ଏମିତ କାହିଁକେ ହଉଚ ବେ । ଚୁପ୍‌କର ! ଆଚ୍ଛା ଗୋବର୍ଦ୍ଧ, ତୋର ଇଚ୍ଛା କ'ଣ ପହିଲେ କହିଲୁ ।"

ଗୋବର୍ଦ୍ଧ କହିଲ, "ଆଜ୍ଞା ମୁଁ ତ ଜାଣେ ମୋର ଠିକ୍ ଜାଗାରେ ବାଡ଼ ବସିଚ । ସିଏ କୋଉ ଇଂରଜ ଫିତା ଆଣି ମାପି କହୁଚନ୍ତି ତାଙ୍କର ଦଶଫୁଟ ଜାଗା ଅଛି । ମୋ ସାନ ଭାଇଟାକୁ ଶିଖେଇ ସେମାନେ କାଗଜ କର ନେଇଛନ୍ତି । ସେ ଦଶଫୁଟ ଜାଗା ଥିଲେ ବ ମୁଁ ତାକୁ ଦେବ ନାହିଁ । ମୋର ହକ୍ ଜ୍ୟେଷ୍ଠାଂଶ ପାଇବାର ଅଛି ।"

ଆଗନ୍ତୁକଟି ମଝିରୁ ଚଲେଇ ଉଠିଲ, "ଆଜ୍ଞା ମୋ କଥା ଯେ କୁଆଡ଼େ ଉଡ଼ଯାଉଛି ।"

ଅଧିକାରୀ ପାଟିକରି ଉଠିଲେ, 'ହଁ ହଁ ରୁହ ରୁହ ଆଗ କଥା ଆଗ ହଉ । ହଇରେ ଗୋବରା, ତୁ ତୋ ସାନ ଭାଇର ହାନି ଲାଭ କଥା ବୁଝିଥିଲୁ ।"

"ହଁ ଆଜ୍ଞା ସବୁ ବୁଝିଚି ।"

ଆଉ ଜଣେ ଉଠିପଡ଼ି କହିଲା, "ଲେମ୍ବୁ ଲୁଣ ବୁଝିଛୁ । ବାଧିକ ପାଇଁ କରଜ, ବାହାଘର ପାଇଁ କରଜ ଶୁଝିବା ଲାଗି ତ ସେ ତା ଭାଗ ବିକିଲା, ଆଉ ତୁ ଶଳାଟି ଲେମ୍ବୁ ଲୁଣ ବୁଝୁଥିଲୁ ?

ଗନ୍ଧିଆ କୁହାଟିଲା, "ଆବେ ମୁହଁ ସମ୍ଭାଳ କଥା କହ । ତାକୁ ନପାରିଲା ପରି ଜାଣିଲୁ କରେ ।"

"ଆରେ ଶଳା ତତେ ଖାତିର କରିଚି ନା ଶଳା ତାକୁ ଖାତିର କରିଚି । କୋଉ ଶଳାଟା ମୋର କ'ଣ କରି ପକେଇବ ଦେଖିବ ।" ସେ ଲୋକଟା ଗନ୍ଧିଆ ଆଡ଼କୁ ଆସ୍ତେ ଆସ୍ତେ ହାତ ହଲେଇ ହଲେଇ ଆଗଉଥିଲା । ଗନ୍ଧିଆ ରାଗରେ ପାଚଯାଇ ତାକୁ ପେଲିଦବାରୁ ସେ ବିଚରା ଲଣ୍ଠନ ଉପରେ ଯାଇ ପଡ଼ିଲା । ଯାହା ଭିତରେ ଝଣ୍ଟ ପଶିଗଲେ ସମସ୍ତେ ଯେମିତି ହୋ ହୋ ହୋଇ ଉଠନ୍ତି, ଲଣ୍ଠନଟି ଲିଭିଯିବାରୁ ସମସ୍ତେ ସେମିତି ହୋ ହୋ ହୋଇ ଉଠି ପଡ଼ିଲେ ।

ଅଧିକାରୀଙ୍କ ଘୋର ଗର୍ଜନରେ ପୁଣି ସମସ୍ତେ ବସି ପଡ଼ିଲେ । ଲଣ୍ଠନ ଲଗାହେଲା । ଆଗନ୍ତୁକ ବ୍ୟସ୍ତ ହୋଇ କହିଲା, "ଆଜ୍ଞା ମୋ ନଶାପରୁ ତ ଏ ନଶାପ କୁଆଡ଼େ ଗୁଡ଼ ଗୁଡ଼ ଯାଉଚି ।"

ଅଧିକାରୀ ମୁଣ୍ଡ ଝୁଙ୍କାଇ ଆରମ୍ଭ କଲେ, "ଆରେ ଏ ହେଲା ମୂଳ-ଅଗିଆନଶାପ । ଏଥିରେ କେବଳ ଆଗକୁ ଯିବାକୁ ସାର ହେବ । ତେଣୁ ମୂଳ ମୋଟେ ଧରା ପଡ଼ିବ ନାହିଁ । ଆମର ଦରକାର ଅଗ-ମୂଳିଆ ନଶାପ ।ତାହା ହେଲେ ଆମ୍ଭେମାନେ ଅଗରୁ ଯାଇ ଠିକ୍ ମୂଳରେ ପହଞ୍ଚି ଯାଇପାରିବା । ଗଣ୍ଡଗୋଳର ମୂଳ କାରଣଟା ଜଣାପଡ଼ିଗଲେ ଦୋଷୀ ଠିକ୍ ଧରାପଡ଼ିଯିବ ଓ ତାହାକୁ ଦଣ୍ଡ ଦିଆଯିବ । ଆଚ୍ଛା ଏବେ ମୁଁ ଯାହା ପଚାରୁଛି, ତାହାର ଠିକେ ଠିକେ ଜବାବ୍ ଦିଅ । ତୁମେ ଦ'ଜଣ ଏହିକ୍ଷଣି କାହିଁକି କଳି କଲ ?"

"ଜମି ମାପଚୂପ ଲାଗି ?"

"ଜମି ମାପଚୂପ କ'ଣ ହେଲାକ ?"

"ସେ ଫିତାରେ ମାପି ଦଶପୁଟ ଠକନେଲା ।"

"ଏ ଫିତାରେ ଠକନେବା କଥା କେଉଁଠୁ ଉଠିଲା ?"

"ପୋଖରୀରେ ।"

"ପୋଖରୀରୁ ଫିତା କେମିତି ବାହାରିଲା" ?

"ସେ କହିଲା ଜେନା ଘରକୁ ବାଟ ଫିତାରେ ମାପିଛି ।"

"ଜେନା ଘରକୁ ବାଟ କଥା କାହିଁକି ଉଠିଲା"

"ସେ ଦୁଜଣ କମ୍ ବେଶି କରି କୁହାକୁହି ହେଲେ ।"

"ସେ ଦୁଜଣ କାହିଁକି କୁହାକୁହି ହେଲେ ।"

"ଏହି ନୂଆ ଲୋକ ଜଣକ କେତେ ବାଟ ବୋଲି ପଚାରିଲା ।"

"ଏହି ନୂଆ ଲୋକ ପଚାରିବା ଆଗରୁ ସେମାନେ କ'ଣ କଳି କରୁ ନ ଥିଲେ? "

"ଆଜ୍ଞା ନା ସବୁ ଠିକ୍ ଥିଲା ।"

ଅଧିକାଂଶ ଗୁମ୍ ହୋଇ କଛି ସମୟ ବସିଗଲେ ଓ ତାପରେ ଆଗନ୍ତୁକ ପ୍ରତି ଦାନ୍ତ କଡ଼ମଡ଼ କରି କହିଲେ, "ଲାଜ ଲାଗୁ ନାହିଁ ? ନାଟର ଗୋବର୍ଦ୍ଧନ ହୋଇ ଓଲଟା ଫେସାଦ ହେଉଛ ? ତୁମରି ଯୋଗୁଁ ଏତେ ମୁଣ୍ଡ ଫଟାଫଟି । ଶୀଘ୍ର ଦାଖଲ କର ଟ୧୦୦୧ଙ୍କା ଜୋରିମାନା ।"

ଆଗନ୍ତୁକ ଅଣ୍ଟାରେ ଜମା ଦୁଇଟଙ୍କା ଆଠଅଣା ଥିଲା । ଜୋରିମାନା ଟ ୧୦୦୧ ଙ୍କାରୁ ଖସିଯାଇ ଅଢ଼େଇ ଟଙ୍କାରେ ଛିଡ଼ିଲା । ସର୍ବସ୍ୱାନ୍ତ ହୋଇ ଫେରିଲାବେଳେ ସେ ଭାବୁଥାଏ, ଧନ୍ୟରେ "କୋଦଣ୍ଡା ନଶାପ ।" ହଁ, ଏ ବି ଗୋଟାଏ ପ୍ରକାର ନଶାପ ।



# କୋଟଚଟ ଶୁଣ୍ଠା

ପଧାନ ବୁଢ଼ା ଓ ତା ପୁଅ ଦୁହେଁ ମିଶି ଡାଲକା କରିବାରେ ଲାଗି ପଡ଼ିଥାଆନ୍ତି । ବଡ଼ ନାତୁଣୀର ବାହାଘର । ସେଥିଲାଗି ପୁଅର ନାନା ବାରଣ ସତ୍ତ୍ୱେ ପଧାନ ବୁଢ଼ା ଟିକିଏ ଖୋଲି ହାତ ହୋଇ ପଡ଼ିଥାଏ । ପୁଅ ମଝିରେ ମଝିରେ କଟାଳ କରି କହୁଥାଏ, "ବାପା ବାପା, ତୁମେ ଏମିତି ଫୁଲିଫାଙ୍କିଆ ହେଲେ ଚଳିବ ନାହିଁ । ଏ ଅଲକ୍ଷଣା ଗାଁଟାରେ ଯେତେ କରିବ ଅଣ୍ଟିବ ନାହିଁ । ଲୋକ କଅଣ ଅଳପ ? ଏକା ବେଳକେ ହଜାରରୁ ଟପି ଯିବେ, କେତେ କରିବ, କେତେ ଖୁଆଇବ ?"

ପଧାନ ବୁଢ଼ା କୁନ୍ଥେଇ କୁନ୍ଥେଇ କହିଲା, "ଆଉ ଯାହା ଡାଲକା ହୋଇଛି ହୋଇଥାଉ ପଛକେ, ମାଛଟା ଦଶ ସେର କରିଦେ । ହଜାରରୁ ବେଶି ଲୋକ ହେବେ । ଟିକିଏ ଟିକିଏ ପାଟିରେ ଆଇଁଷ ବାଜିଯାଉ । ଆମ ପୋଖରୀ ମାଛ ଦେଖି ଗାଁ'ସାରା ସମସ୍ତେ ପାଟିରୁ ନାଳ ଗଡ଼ାଉଛନ୍ତି ।

ଆଖି ଖୋଷିଦେଇ ପୁଅ ପାଟିକଲା, "ଆଁ, କ'ଣ କହିଲ, ଦଶସେର ! ଦଶ ଚଉ ଚାଳିଶ ଟଙ୍କା । ଖାଲି ମାଛରେ ଚାଳିଶ ଟଙ୍କା; ଆହୁରି ପରିବା ସବୁ ଅଛି । ନାହିଁ ନାହିଁ; ସେ ସବୁ ହେବ ନାହିଁ । ପାଞ୍ଚସେର ମାଛରେ ଦୁଇହଣ୍ଡା ମହୁରା କରିଦେବା ।"

"କାଙ୍ଗାଳିଆ ଲୋକଗୁଡ଼ାକ ପଧାନଘରେ ଭୋଜି ବୋଲି ଖାଲି ପଛରେ ମାଗିବେ, ଆଚ୍ଛା ହଉ ଆଠସେର କରି ଦେ ।"

"ଜହଣ ଲଙ୍କାରୁ ଚମ୍ପାକସ୍ ମହୁରରେ ଦେଇଦେଲେ ଆଉ କେହ୍ବ ପଛରେ ମାଗିବେ ନାହିଁ ।" ବୁଢ଼ା ଖୁସି ହୋଇଯାଇ ମନରେ ଭାବିଲା, "ଠିକ୍ ମୋର ରକ୍ତରୁ ଜନ୍ମ ।" ମାଛ କନ୍ଟ ୮ସେରରୁ ୭ସେରରେ ରହିଲା ।

ଅଳପେଇଷ ବାତଜରଟା କେଉଁଠି ଥିଲା, ଠିକ୍ ବାଭଧର ଦନ ପଧାନ ବୁଢ଼ାକୁ ପକଡ଼ିଲା । ନଜ ଝୁଙ୍ଗିଟି ଭିତରେ ବୁଢ଼ା କମ୍ପି କମ୍ପି ଏକାବେଳକେ ଅଧା ବେହୋସ । ଗୋଡ଼ଟା ପାଚ ଜଳ ଜଳ ଦିଶୁଥାଏ । ପୁଅକୁ ଗୁହଆଡ଼ ଅନ୍ଧାର ଦିଶିଲା । ଅନ୍ଧାରରେ ମହ୍ଣିବା ଲୋକ ସିଏ, କୋଉଥିକ ପଛେଇଲା ନାହିଁ । ଦେଲା ନେଲା, ବନ୍ଧୁ ବାନ୍ଧବ, ବାରକ; ନାହାକ, ବେଭାର ଇତ୍ୟାଦ ସବୁ କାମ ଭୁଲିଲଇ ଗେଷେଇଆ ଓ ପରିବା କଟାଳଙ୍କ ଉପରେ ତୀକ୍ଷ୍ଣ ନଜର ରଖିଥାଏ । କାଟୁଣୀଙ୍କ ଉପରେ ନଜର ସବୁଠୁଁ ବେଶି । ବେଡା ବେଡା ସାରୁ ହୋଇଛୁ । କାଲେ କଏ ଅଣ୍ଟିରେ ପୁଳାଏ ପୂରେଇ ନେଇଯିବ । କୋଠିଆକୁ କେତେ ଆକଟ କରି କହିଥିଲା "ଦେଖି ପୋଖରୀରୁ ଠିକ୍ ସାତସେର ଭିତରେ ମାଛ ଧରିବୁ ।" ଟିକଏ ସାଡ଼େ ନଜର ଦେଲା ନାହିଁ ବୋଲ ମୋଟା ବୁଦ୍ଧି ଆଟା ଯୋଡ଼ାଏ ବଡ଼ ମାଛ ଧରି ପକେଇଲା । ଓଜନ କଲାବେଳକୁ ଏକାବେଳେ ନଅସେର ଅଧେ । ପଧାନ ପୁଅ ଝାମ୍ ଖାଇଗଲା । ବହୁତ ବୁଝାବୁଝି ପରେ କୋଠିଆର ସନ୍ତାନବେ ପୁରୁଷର ତର୍ପଣ କରି ଟିକଏ ଥପ୍ଟ ଧରିଲା ।

ମାଛ କଟା ଗଲାବେଳେ କ ଆଉ ପଧାନ ପୁଅ ଉଠେ । ବନଶୀ ପକାଇଲାବାଲା ଯେପରି ତେରଣ୍ଡାକୁ କଟମଟ କରି ଗୁହିଁ ରହିଥାଏ, ପଧାନ ପୁଅ ଠିକ୍ ସେମିତି ମାଛକାଟୁଣୀଙ୍କି ଗୁହିଁଥାଏ । ଗୁହଆଡ଼େ କାମ । ସବୁ ଜନଷର ଟୁବ ତାର ପାଖରେ । ସିଏ ଯେତେ ଡାକଲେ ନ ଶୁଣେ । ସମସ୍ତଙ୍କୁ ଏକ ଉତ୍ତର, "ରୁହ ମାଛ କଟା ଭଜା ସରୁ ।" ମାଛର କାହାକୁ ଲୋଭ ନାହିଁ ? ସେ ବ କାହାକୁ ବିଶ୍ୱାସ କରନ୍ତା ! ଗୁକର ବାକର ତକ ଗାଟରେ ରକ୍ତଗୁଉଳ ଟ୍ରେବାଉଥାଆନ୍ତ । ସମସ୍ତଙ୍କ ମନରେ ଏକ କଥା, "ଶଳା କୋତଟ ଶୁଣ୍ଡାକୁ ଆଚ୍ଛାକର ଶାଣ୍ଡିବା ଦରକାର ।" ମାଛ କଟା ବେଳଟା ଯେମାନଙ୍କୁ ଠିକ୍ ପଞ୍ଚମ ବୃହସ୍ପତି ପରି ହେଲା । କଟା ପରିବା ପୋଖରୀକୁ ଧୂଆଦେବାକୁ ଗଲାବେଳେ, କଳା ବଜାରିଆଙ୍କ ଧାନ ଭିତରେ ଲୁଗା ଗଲାପରି ଗୋଟା ଗୋଟା ଖମ୍ବଆଳୁ, କଦଳୀ, କଖାରୁ ପଧାନ

ଘରୁ ଲୁଚ ପଳାଇଲେ, କିଏ ମାଠିଆରୁ ଦୁଧ ପିଇଗଲା, କିଏ ତା ଦହି ହାଣ୍ଡିରେ ହାତ ପୂରେଇଲା ।

ପଧାନ ପୁଅ ନିଜ ଆଖି ଆଗରେ ମାଛ କଟେଇ ଭଜେଇ ନେଲା । ଭଜାରୁ ବାଛି ବାଛି ଗୋଟାଏ କଂସାରେ ଅଧକଂସାଏ ରଖି, ପନ୍ଦ୍ର ପଚିଶଟାଏ ଘୋଡ଼ାଇଦେଲା । ମହୁର ହାଣ୍ଡା ତ ବସିଛି । ସେଷେଇଆଙ୍କୁ ତା ଆଗରେ ମାଛଭଜା ହାଣ୍ଡାରେ ପକାଇବାକୁ କହିଲା । ସଙ୍ଗେ ସଙ୍ଗେ ତାହା କାର୍ଯ୍ୟରେ ପରିଣତ ହେଲା । ଠିକ୍ ଏହି ସମୟରେ ବରଯାତ୍ରୀ ଆସିଗଲେ ବୋଲି ଖବର ରଷ୍ଟି ହୋଇଗଲା । ପଧାନ ପୁଅ ତରତର ହୋଇ ମାଛ ଭଜା କଂସାଟା ଧରି ବାହାରିଗଲା । କେଉଁଠି ରଖିବ ବୋଲି ଭାବି ଭାବି ଶେଷରେ ବୁଢ଼ା ବେହାଲ ହୋଇ ପଡ଼ିଥିବା ଘରେ ଗୋଟାଏ ସିନ୍ଧୁକ ତଳେ ଲୁଚେଇ ଦେଇ ବର ପାଛୋଟିବା ପାଇଁ ଦାଣ୍ଡକୁ ଚାଲିଗଲା । ସେଷେଇଆ ବି ତା ପିଛାପରେ ମହୁର ହାଣ୍ଡା ଭିତରୁ ଗୋଟାଏ ଛୋଟ କଂସା, କନାଗୁଡ଼ା ହାତରେ କାଢ଼ିନେଇ ଗୋଟାଏ ହାଣ୍ଡିତଳେ ଉଗୁଡ଼େଇ ପକେଇଲା ।

ବରଯାତ୍ରୀ ଯେତେ ଯେତେ ଘର ପାଖ ହେଉଥାନ୍ତି, ତେତେ ତେତେ ବାଜା ପେଁକାଳି ଗୁମିଆଡ଼େ କମ୍ପେଇ ଦେଉଥାଏ । ଘରଟା ଯାକର ଲୋକେ ଯାଇଁ ଦାଣ୍ଡରେ । ଢୋଲ ଅବାଜରେ ପଧାନ ବୁଢ଼ାର ନିଦ ଭାଙ୍ଗିଗଲା । ବଡ଼କାଠ ତମ୍ବୁରୁ ଅବାଜରେ ତା ପେଟରୁ କ'ଣ ଯେପରି ଗୋଟାଏ ଉଠିଲା । ଢୋଲ ପରି ତା ପେଟ ମଧ୍ୟ ଦାଉଁ ଦାଉଁ ହେଲା । ଚେଲେଙ୍ଗୀ ପେଁକାଳି ପରି ପେଟ କଅଁ କଅଁ ଡାକ ଦେଲା । ବୁଢ଼ାକୁ ଜଣାଗଲା, ସତେ ଯେପରି ବାଜାଗୁଡ଼ାକ ପେଟରେ ପଶି ମଜ୍ଜି ପକାଉଛନ୍ତି । ତଳପେଟ ଏକାବେଳକେ ଭିଡ଼େଇ ଦେଲାଣି । ବୁଢ଼ା ଅତିରଗ୍ରରେ ଡାକ ଦେଲା—"ଆରେ କିଏ ଅଛରେ, ମଇଦାନ ଯିବିରେ, ଆରେ ମଲିଗଲିରେ ।" ସମସ୍ତେ ତ ଦାଣ୍ଡରେ, ଶୁଣୁଛି କିଏ ? ଡାକ ଡାକ ବୁଢ଼ାର ତଣ୍ଟି ପଡ଼ିଗଲାଣି । ଯୋଗକୁ ଜଣେ ହଳିଆ କାନରେ ଡାକ ବାଜିଲା । ସେ ବୁଢ଼ା ପାଖରେ ପହଞ୍ଚିଯାଇ ମୁହୂର୍ତ୍ତକ ମଧ୍ୟରେ କଥାଟା ବୁଝିନେଲା । ଆଉ ସମୟ ନାହିଁ, ଦଉଡ଼ି ଯାଇ କଂସାଟାଏ ଆଣି ବୁଢ଼ାକୁ ଟେକାଟେକି କରି ତା ପିଚ୍ଛତଳେ ଥୋଇଦେଲା । ମିନିଟକ ଭିତରେ ବୁଢ଼ା ତଳପେଟଟା ହାଲୁକା ହୋଇଗଲା ।

ସେତେବେଳକୁ ବରସବୁ ବରଯାତ୍ରୀମାନେ ଖଞ୍ଜା ଭିତରେ ପଶି ଗଲେଣି । ହଳଆ ଅଚି କଂସା ନେବ କପଚ, ମନେ ମନେ ଭାବିଲା, ଭିଡ଼ କମିଯାଉ, ବେଳ ଉଣ୍ଡି ପଦାକୁ ନେଇଯିବ ।" ଏତକ ଠିକ୍ କରି ଗୋଟାଏ ପଦ୍ମପତ୍ର ଆଣି କଂସା ଉପରେ ଘୋଡ଼ାଇଦେଲା ଓ କଂସାକୁ ସିନ୍ଦୂକ ତଳକୁ ଗୋଡ଼ରେ ପେଲିଦେଲା । ପଧାନ ପୁଅର ଗାମୁଛାଟା କବାଟ ଉପରେ ପଡ଼ିଥିଲା । ସେଇଟାରେ ବୁଢ଼ାର ଶୌଚକ୍ରିୟା ସମାପ୍ତ ହେଲା । ବେଳ ଉଣ୍ଡି ଗାମୁଛା ଧୋଇବ ବୋଲି ଭାବି, ମେଞ୍ଚା କରି ଥୋଇଦେଲା । ବୁଢ଼ା ସାଷ୍ଟାମ ହୋଇ ପୁଣି ଘୁଙ୍ଗୁଡ଼ି ମାରିଲା । ହଳଆକୁ ଟିକିଏ ହେଲେ ତର ନାହିଁ । ଅନ୍ୟଆଡ଼େ କାମରେ ସେ ହଜିଗଲା, ତା ମନଟା କିନ୍ତୁ ସିନ୍ଦୂକ ତଳେ । ଟିକିଏ ବେଳ ପାଇଲେ ସେ ଘରୁ କଂସାଟା କାଢ଼ି ଦିଅନ୍ତା । ବୁଢ଼ାକୁ ଦେଖିବାକୁ ସେ ଘରର ବନ୍ଧୁବାନ୍ଧବମାନେ ଯାଉଛନ୍ତି, କେତେବେଳେ କୋଉକଥା ।

ମନଥିଲେ ବାଟ ଗୁଏଁ ଗୁଏଁ ମିଳିଯାଏ । ଯୋଗକୁ ଟିକିଏ ଫାଙ୍କା ଦେଖି ତରତରରେ ହଳଆ କଂସାଟା ସିନ୍ଦୂକ ତଳୁ କାଢ଼ିନେଇ ପଦାରେ ନଡ଼ାଗଦାତଳେ ଗୁଞ୍ଜିଦେଲା । ରାତି ହେଲେ ଯାଇ ଧୂଆଧୋଇ କାମ । ଖୁବ୍ ସତର୍କତା ସହିତ ଏ କାମ କଲେହେଁ କୋଠିଆର ଦୃଷ୍ଟି ଏଡ଼ାଇ ଦେଇପାରି ନ ଥିଲା । ହଳଆ ଯିବା ବାଦ୍ କୋଠିଆ ନଡ଼ାଗଦା ପାଖକୁ ଗଲା । ଗୁଡ଼ିକୁ ସାଉଁକୁ ଗୁନ୍ଦି କଂସାଟା କାଢ଼ିଲା । ପଦ୍ମ ପତରଟା ଟେକି ଦେଇ ଅବାକ୍ । ଖୁସି ହୋଇଯାଇ ଭାବିଲା; "ଏଇ ମାଛ ପାଇଁ କୋଡ଼ଏ ଶୁଣ୍ଡା ମୋ ସତାବନ ପୁରୁଷକୁ ଗାଳି ଦେଇଛି । ଭଗବାନ କ'ଣ ଦୁନିଆରେ ନାହାନ୍ତି, ଦେଲାବେଳେ ଏମିତି ଦିଅନ୍ତି, ଆଉ ଗୋଟିଏ ଜାଗାକୁ କଂସାଟା ନେଇଯାଇ ମାଛତକର ସଦ୍‌ବ୍ୟବହାର କରି କଂସାଟି ଧୋଇଧାଇ ଆଣି ଘରେ ଥୋଇଦେଲା ।

ଖିଆପିଆ ଇତ୍ୟାଦି ସରୁ ସରୁ ରାତି ବାର । ସବା ଶେଷରେ ପଧାନ ପୁଅ ବରୁଟିଆ ହୋଇ ଖାଇ ବସିଲା । ସିନ୍ଦୂକ ତଳୁ କଂସାଟା ଆଣିବାକୁ କାହାକୁ କହିବ ! ଆଜିକାଲି କାହାକୁ ବିଶ୍ୱାସ କରିବ ନାହିଁ । ଶେଷରେ ଜଣେ ବିଧବା ପିଉସୀକୁ ପାଖକୁ ଡ଼ାକି ଚୁପ୍ ଚୁପ୍ କରି ସବୁ କହିଲା । ମାଛ ନାଁ ଶୁଣି ବିଧବାଟି 'ଅ ଅ' ହେଲା । ମାଛ ଗନ୍ଧ ବାଜିଲେ ବିଧବା ପେଟରୁ ଯେ ସବୁ ବାହାରି ଆସିବ । ବହୁତ ଜଗର କରି କହିବାରୁ

ବଧବାଟି ନାକରେ କାନ ଗୁଞ୍ଜି ମିନ୍ଧ୍ରୁକ ତଲ୍ଲ କଂସାଟା ହାତରେ ଦୂରେଇକରି ଧରି ପଧାନ ପୁଅ ପାଖରେ ଥୋଇଦେଲା । "ହଠାତ୍ ଘୃଣାଆଡ଼ ଭଣ ଭଣ ହୋଇ ଗନ୍ଧେଇ ଉଠିଲା । ପଧାନ ପୁଅ ଆଡ଼କୁ ସାଢ଼କୁ ଘୃହିଁ ନାକ ଟେକିଲା, "ପାଟ ଚଳାଓ ଚଳାଓ କଂସାରୁ ପଦ୍ମ ପଡ଼ଟା କାଢିଦେଲା । "ବୋପାଲେ କି ଗନ୍ଧ, ଆଉ ରହିହେବ ନାହିଁ," କହି ପଧାନ ପୁଅ କଂସାକୁ ଘୃହିଁଲା ।

"ଏଁ; ଭଜାକୁ କଏ ଖାଇ, ମହୁର ଆଣି ଥୋଇଦେଇଛି, "ଆଲୁଅରେ ଭଲକରି କଂସାକୁ ଘୃହିଁଲା । ଆଉ କି ସମ୍ଭଳା ପଡ଼େ ? ଅ, ଅ, ଅ ହୋଇ ଖିଆ ଘୃଣ୍ଡ଼ ଉଠିଗଲା । ମୁହଁ ଭଲକରି ଧୋଇ ପକାଇ ଗାମୁଛା ଖୋଜିଲା, ବହୁତ ଖୋଜିବା ପରେ ବୁଢ଼ାଢଳରେ ଗାମୁଛାଟା ମେଞ୍ଚା ହୋଇ ପଡ଼ିଥିବାର ଦେଖିଲା । ବଗରେ ଗାମୁଛାଟା ଉଠେଇ ନେଇ ମୁହଁ ପୋଛି ପକେଇଲା । ହେ ଭଗବାନ ! ଆଉ ରକ୍ଷା ନାହିଁ, ମୁହଁରେ କ'ଣ ଗୁଡ଼ାଏ ଲେପି ହୋଇଗଲା । କି ଗନ୍ଧ ! ଯାହା କିଛି ପେଟରେ ଥିଲା, ତାହା ଆଉ ରହି ପାରିଲା ନାହିଁ, ସବୁ ପଦାକୁ ବାହାରି ଆସିଲା ।

କଥାଟା ଘୃହୁଁ ଘୃହୁଁ ଘଷ୍ଟା ହୋଇଗଲା । ଘୃକର ବାକରତକ ମନେ ମନେ ଭାବୁଥାଆନ୍ତି, "ଶଳା କୋଚଟ ଶୁଣ୍ଢାକୁ ଠିକ୍ ହୋଇଛି । ହଳିଆ କୋଠିଆ ଦୁହେଁ ମୁଣ୍ଡ କୁଣ୍ଡେଇ କୁଣ୍ଡେଇ ଭାବୁ ଥାଆନ୍ତି, "ସ୍କୁ' କପରି ହେଲା ?"



# କଲ୍‌କଟ ଚେଙ୍କ

ସର୍ଦ୍ଦାର ଗୋଟିଏ ନୂଆ ବେପାର ନେଇ ସହରକୁ ଯିବାକୁ ଆୟୋଜନରେ ଲାଗିପଡ଼ିଲା । ବୋଲହାକକରା ଶମ୍ଭୁ ଓ ଜମ୍ଭୁଙ୍କୁ ସିମିଣ୍ଟ, ଖଡ଼ିମିଶା ବାଟୂଳ ପରି ଗୋଳି ଦ'ଶହ ହଜାର ତିଆରି କରିବାକୁ ଆଦେଶ ଦେଲା । କ'ଣ ବେପାର, କେମିତି ହେବ, ଗୋଳିର କ'ଣ ଦରକାର, ଏସବୁ ଜମ୍ଭୁ, ଶମ୍ଭୁଙ୍କର ମୁଣ୍ଡରେ ପଶୁ ନ ଥାଏ । ସେମାନଙ୍କ ମୁହଁରେ ପ୍ରଶ୍ନବାଚକ ଚିହ୍ନ ଦେଖି, ସର୍ଦ୍ଦାର ଖିଙ୍କାରି ହୋଇ କହିଲା, "ଆବେ, ତୁମକୁ ଯାହା କହୁଛି କରିଯାଅ, ବାଲୁ ବାଲୁ କରି ଚାହଁ ନାହିଁ । ବେପାର ଆଗରୁ ସବୁ ବୁଝାଇଦେବି ।" ଦୁହେଁ ଆଶ୍ବସ୍ତ ହୋଇ କାମରେ ଲାଗିଲେ । ବାଡ଼ମୂଳେ ଥିବା ଗାତମାନ ଖୋଜି ଖୋଜି ଘଣ୍ଟେ ଲମ୍ବର ୫।୬ଟା କଙ୍କଡ଼ା ବସ୍ତୁ ଡବାରେ ରଖାଗଲା । ଗୋଳିତକ ବି ତିଆରି ହୋଇଗଲା ।

ସବୁ ଠିକ୍‌ଠାକ୍ ହୋଇଯିବାରୁ ସର୍ଦ୍ଦାର ଦୁଇଟି କଙ୍କଡ଼ା ବସ୍ତୁକୁ ଡବାରୁ କାଢ଼ି ଦୁହିଁଙ୍କ ଆଗରେ ରଖିଲା । ପ୍ରତ୍ୟେକଟିର ଲାଙ୍ଗୁଡ଼କୁ ଚିମୁଟାରେ ଧରି ଗୋଟିଏ ସରୁ କଇଁଚିରେ ମୂଳରୁ କଚ୍ କଚ୍ କରି କାଟିଦେଲା । ତାପରେ ଗୋଟିଏ ସାଗୁଆରଙ୍ଗ ଡବାରେ ଦୁହିଁଙ୍କୁ ବନ୍ଦକରି ରଖିଲା । ଜମ୍ଭୁ, ଶମ୍ଭୁ ଦୁହେଁ ପୁଣି ତା ମୁହଁକୁ ବାଲୁ ବାଲୁ କରି ଚାହିଁବାରୁ, ସର୍ଦ୍ଦାର ଟିକିଏ ତାଚ୍ଛଲ୍ୟ ଭାବରେ କହିଲା, "ଓଲୁ, ଗଧଡ଼ା,

ତୁମ ମୁଣ୍ଡରେ କିଛି ପଶିବ ନାହିଁ ।" ସର୍ଦ୍ଦାର ଆଉ ମୁହଁ ଫେରାଇ ଆଣି ଦୁହେଁ ଦୁହିଁଙ୍କ ମୁହଁକୁ ଚାହିଁଲେ । ସର୍ଦ୍ଦାର ବୁଝାଇ ଦେଲା—, "ଲୁହୁଡ଼ କଣ୍ଠା ଏ ବିଛା ଦାଣ୍ଠା କାହାକୁ ମାରି ଆଉ କଲବଲ କରି ପାରିବେ ନାହିଁ । ଲୁହୁଡ଼ ମୁଣ୍ଡା ହୋଇ ଯିବାରୁ ଏହା ଚମ ଭିତରେ ପଶି ପାରିବ ନାହିଁ କି ବିଷ ଦେହରେ ପଶି ପାରିବ ନାହିଁ । ମୁଁ ଗୋଟିଏ ଜାଗାରେ କଙ୍କଡ଼ା ବିଛା ଔଷଦର ପ୍ରଚାର ଚଳାଉଥିବି । କିଛି ନ ଜାଣିଲା ପରି ତୁମ ଭିତରୁ ଜଣେ ଟିକିଏ ଡେରିରେ ଦେଖଣାହାରିଙ୍କ ପାଖରେ ଯାଇଁ ବସିବ । ପରୀକ୍ଷା କରି ଦେଖାଇବା ପାଇଁ ଏହି କଙ୍କଡ଼ା ବିଛାରୁ ଗୋଟିଏ କାଢ଼ି କାମୁଡ଼େଇବାକୁ ଲୋକଙ୍କୁ ଡାକିବି । କଙ୍କଡ଼ା ବିଛାକୁ କାହାର ଡର ନାହିଁ । କେହି ବାହାରିବେ ନାହିଁ । ତାପରେ ମୁଁ ତୋତେ ଡାକିବି, ତୁ ପହିଲେ ଡ଼ରିଗଲା ପରି ହୋଇ ନାହିଁ କରିବୁ, ବହୁତ ବୁଝେଇ ସୁଝେଇ ଟିକିଏ ଜୋର କରି ତୋ ହାତକୁ ନେଇ କଙ୍କଡ଼ାବିଛା ଲାଙ୍ଗୁଡ଼ରେ ଘଷିଦେବି । ତୁ ଚମକିଲା ପରି ହୋଇ ବୋପାଲୋ ମାଆଲୋ ପାଟି କରିବୁ ଓ ମୋତେ ବି ଗାଳିଦେବୁ । ମୁଁ ଏ ଗୋଳିକୁ ଟିକିଏ ପାଣିରେ ଘୋରି ତୋତେ ପିଆଇ ଦେବି ଓ ହାତରେ ଲଗାଇ ଦେବି । ତୁ ଆସ୍ତେ ଆସ୍ତେ ଆରାମ ପାଇଲା ପରି ହୋଇ ଔଷଧକୁ ଖୁବ୍ ପ୍ରଶଂସା କରିବୁ ଓ ଚାରିଣା ପଇସା ଦେଇ ଗୋଟିଏ କିଣି ନେଇ ପଳାଇବୁ । ତୁ ଗୋଟାଏ ଜାଗାକୁ ଗଲେ, ସେ ଅନ୍ୟ ଜାଗାକୁ ଯିବ । ବେଶ ବି ବଦଳାଇବାକୁ ପଡ଼ିବ । ଯାହା ରୋଜଗାର ହେବ. ତହିଁରୁ ମୋର ଆଠଅଣା ଓ ବାକି ଆଠଅଣା ତୁମେ ଦୁହେଁ ନିଜ ନିଜ ଭିତରେ ବାଣ୍ଟିନେବ । ମୁଣ୍ଡହଲା କୁଣ୍ଢେଇ ପରି ଦୁହେଁ ମୁଣ୍ଡ ଟୁଙ୍ଗାରିଲେ । ସର୍ଦ୍ଦାରର ଅଧ୍ୟାପନା ଏତିକିରେ ଶେଷ ହେଲା ।

ପ୍ରଥମଦିନ ଜମୁରି ପାଳି ପଡ଼ିଲା, ବିଛା ଲାଙ୍ଗୁଡ଼ରେ ହାତଘଷି ଦେବାମାତ୍ରେ ବୋପାଲୋ ମାଆଲୋ ହୋଇ ମାଟି ଉପରେ ଗଡ଼ିଗଲା । ମୁଖ ବିକୃତ କରି ପାଟିକି କଲା, "ଆବେ ମରିଗଲିବେ, ଆବେ ଶଳା ଚାହିଁଚୁ କଣ, କି ଔଷଦ ରଖିଚୁ ଲଗା ବେ, ଚଞ୍ଚଳ ଲଗା; ଇବେ ମରିଗଲିବେ ।" ଦର୍ଶକମାନଙ୍କ ଭିତରୁ କେତେକ ସହାନୁଭୂତିସମ୍ପନ୍ନ ହେଲେ ଓ କେତେକ ବି ଭୟ ବିହ୍ୱଳିତ ହୋଇପଡ଼ିଲେ । ସର୍ଦ୍ଦାର ମନେ ମନେ ଖୁବ୍ ଖୁସି ହୋଇଯାଇ ଭାବିଲା— ଆଃ, ପହିଲା ନମ୍ବର ଚାଲାଖ ଟୋକା; ପାଖରେ ଥିଲେ ସବୁଠି ଜିତ ।" ତାପରେ ଭରିଭରି ହୋଇ

ମୁଣିରୁ ମୁଠାଏ ଗୋଲ କାଢ଼ି ଗୋଟାଏ ଡାଲାରେ ରଖିଲା ଓ ଗୋଟିଏ ଗୋଲି ସମସ୍ତଙ୍କୁ ଦେଖାଇ କହିଲା, "ପରମାତ୍ମାଙ୍କ ଦୟାରୁ ଜଣେ ସାଧୁ ମତେ ଏହି ଗୋଳିକୁ ଦେଇଛନ୍ତି । ବିଛା କାମୁଡ଼ା ଯନ୍ତ୍ରଣାରୁ ଲୋକେ ରକ୍ଷା ପାଇବେ । ବହୁତ ବହୁତ ଶେଠ, ସାହୁକାର ଏହାକୁ ନେଇ ବେପାର କରିବାକୁ ହଜାର ହଜାର ଟଙ୍କା ଯାଚିଛନ୍ତି; କିନ୍ତୁ ସାଧୁଙ୍କ ହୁକୁମ ଏହା ବିକ୍ରୀ ହେବନାହିଁ । କେବଳ ଖର୍ଚ୍ଚା ସ୍ୱରୂପ ମାତ୍ର ଚାରଣା ପଇସା ଆମେ ରଖୁଛୁ । ତା' ନହେଲେ ଏତକ ଗୋଲି ସରିଗଲେ ଆଉ ଯାଇ ଆଣି ପାରିବା ନାହିଁ ।"

କୁନ୍ଥନରତ ଜମ୍ବୁ ପାଟିକଲା, "ଆବେ, କେତେ ବକର ବକର ହେଉଛୁ ବେ, ଚଞ୍ଚଳ ଔଷଦ ଦେ, ମୋ ଜୀବନ ଗଲା ।" କେତେଜଣ ଦର୍ଶକ ବି ଅଧୀର ହୋଇ ପଡ଼ି କହିଲେ, "ଆରେ ପଛେ ଗପିବ ତାଙ୍କୁ ଆଗେ ଔଷଦ ଦିଅ ।" ସର୍ଦ୍ଦାର ଭାବିଲା, "ସାବାସ୍ ଟୋକା ! ମୋତେ ବି ବଳିଯିବୁ ।" ତାପରେ ସେ ଯୋଜନା ଅନୁଯାୟୀ ଔଷଦ ଦେଲା । ତଡ଼ିତ୍ ପ୍ରବାହ ବନ୍ଦ ହୋଇଗଲେ ସାଇରେନ ବା ସତର୍କ ଘଣ୍ଟିର ଶବ୍ଦ ଯେପରି ଆସ୍ତେ ଆସ୍ତେ ବନ୍ଦ ହୋଇଯାଏ, ଜମ୍ବୁର ତଥାକଥିତ ବେଦନା ଆସ୍ତେ ଆସ୍ତେ କମି ବନ୍ଦ ହୋଇଗଲା । ଚଟାପଟ୍ ସେ ଅଣ୍ଟାରୁ ଚାରଣା କାଢ଼ି ଗୋଟିଏ ଗୋଲି କିଣି ପକାଇଲା । ବାସ୍ ମେଣ୍ଢା ଦଳରୁ ଗୋଟିଏ ଡ଼ିଆଁ ଇ ପାରିଲେ ହେଲା । ବାକି ସମସ୍ତେ ଘୁଁ ଘୁଁ ଡେଇଁବେ । ପ୍ରାୟ ଦଶ ମିନିଟରେ ଦୁଇଶ ଗୋଲି ଖତମ୍ । ମୁଣି ଝାଡ଼ଝୁଡ଼୍ ।

ଘରେ ଗଣାଗଣି କରି ଦେଖାଗଲା ଯେ ଏଣୁ ତେଣୁ ଖର୍ଚ୍ଚ ଯାଇ ବଳିଛି ୪୮ଟଙ୍କା । ସର୍ଦ୍ଦାର ନିଜେ ୨୪ଟଙ୍କା ରଖି ବାକି ୨୪କୁ ଦୁଇଜଣଙ୍କ ଆଡ଼କୁ ପେଲି ଦେଲା । ଜମ୍ବୁ, ବରଡ଼ ମୁଷାକୁ ମାଡ଼ି ବସିଲା ପରି ସବୁ ଟଙ୍କାତକ ମାଡ଼ି ବସିଲା ଓ ଚାରୋଟି ଟଙ୍କା ଗଣି ଶମ୍ଭୁ ହାତକୁ ଦେଲା । ଅଧା ଭାଗପାଇଁ ଦାବି କଲାରୁ ଜମ୍ବୁ, ଉଠିଙ୍କି ଯାଇ କହିଲା—"ଆବେ ତୁ କଅଣ କରିଛୁ ଯେ ଅଧା ନେବୁ ? କୁଟା ଖଣ୍ଡିକତ ଦିଖଣ୍ଡ କରି ନାହୁଁ । ତଳେ ବାଡ଼େଇ ପିଟି ହୋଇ ମୋ ଗଣ୍ଠି ସବୁ ଦରଜ, ତୁଛାରେ ଅଧା ନେବୁ ? ମୋତେ ଦାରୁଠେଙ୍ଗିଆ ପାଇଲୁ କବେ ?

ନିଜର ଦୁର୍ବଳ ଶରୀର ସହିତ ଜମ୍ବୁର ଅପେକ୍ଷାକୃତ ହୃଷ୍ଟ ଓ ବଳବାନ ଶରୀରକୁ ମନେ ମନେ ତୁଳନା କରି ଶମ୍ଭୁ ନୀରବ ଭାବରେ

ଗୁଡ଼ାଏ ଟଙ୍କା ନେଇ ଅଣ୍ଟାରେ ଗୁଞ୍ଜିଲା । ମନେ ମନେ ଭାବିଲା—"ହଉ, ନଉ, ମୋ ପାଳିଦିନ ମୁଁ ବି ଗୁଡ଼ାଏ ଟଙ୍କା ଧରେଇ ଦେବି ।" ଆଉ ଗଣ୍ଡଗୋଳ ନ କରି ସେ ନିଜ ପାଳି ଅପେକ୍ଷାରେ ରହିଲା ଓ ନିଜ ଅଭିନୟ କିପରି ଭଲ ଭାବରେ କରି ପାରିବ, ସେଥିଲାଗି ଜମ୍ବୁଠାରୁ ଠିକ ନିଖି ଉପଦେଶ ସବୁ ଗ୍ରହଣ କଲା ।

ଶମ୍ଭୁ ପାଳିଦିନ ମିଳିଲା ୪୦ ଟଙ୍କା । ଜମ୍ବୁ ଆଗରୁଭି ଭାଗ ଟଙ୍କାଟା ଧରି ପକାଇ ଶମ୍ଭୁ ଆଡ଼କୁ ୧୦ଟଙ୍କା ପେଲି ଦେଲା ଓ ନିଜେ ଦଶ ରଖିଲା । ଶମ୍ଭୁ ସମ୍ଭାଳି ପାରିଲା ନାହିଁ, ରାଗିଯାଇ କହିଲା, "ଶଳା ତୋ ବେଳକୁ ଗୋଟାଏ ଆଇନ ତ ମୋ ବେଳକୁ ଗୋଟାଏ ଆଇନ ? କଅଣ ମୋତେ ଦୁର୍ବଳିଆ ଦେଖିଲୁ କବେ ? ଚୁପ୍ କରି ଟଙ୍କା ଦେଇ ଦେ । ମୁଖ ବିକୃତ କରି ଜମ୍ବୁ ଖତେଇ ହେଲା ପରି କହିଲା ମୁଁ ଯେଉଁ ଚତେ ଶିଖେଇଥିଲି, ସେଗୁଡ଼ାକ କଣ ଉଡ଼ିଗଲା ? ହଁ ମୁଁ କିଛି ନକରି ଥାଆନ୍ତି କି ।"

ଅନନ୍ୟୋପାୟ ହୋଇ ଶମ୍ଭୁ ସର୍ଦ୍ଦାର ପାଖରେ ଫେରାଦ ହେଲା । ସର୍ଦ୍ଦାର ମନରେ ଖଟକା ଲାଗିଲେ ସୁଦ୍ଧା ଜମ୍ବୁକୁ ବିରକ୍ତ କରିବାକୁ କୁଣ୍ଠିତ ହେଲା । କାରଣ ତା ଭଳିଆ ଚୂଲାଖ ଟୋକା ସହଜରେ ମିଳିବେ ନାହିଁ । ତେଣୁ ସେ ପ୍ରକାଶ୍ୟରେ କହିଲା—"ମୁଁ ଏତେ ଅଡୁଆରେ ପଶିବି ନାହିଁ । ତୁମେ ତୁମର ଆପୋଷରେ ବାଣ୍ଟିନିଅ ।" ନ୍ୟାୟ ନ ପାଇବାରୁ ଶମ୍ଭୁର ଦୁଇ ଜଣଙ୍କ ଉପରେ କ୍ରୋଧ ହେଲା । ଖାଲି କ୍ରୋଧ କଲେ ଲାଭ ବା କଅଣ ? ଅସହାୟ ପଶୁପରି ମନର ରାଗ ମନରେ ମାରି ସେ ଅପେକ୍ଷା କଲା କାଳେ ଜମ୍ବୁର ମନ ବଦଳିଯିବ; କିନ୍ତୁ କୁକୁର ଲାଙ୍ଗୁଡ଼ କି ସହଜରେ ସିଧା ହୁଏ ? ଆହୁରି ଥରେ ଦୁଇଥର ଜମ୍ବୁ ଏମିତି ଜବରଦସ୍ତି ଦେଖାଇଲା ଓ ସର୍ଦ୍ଦାର ବି ଚୁପ୍ ରହିଲା । ଶମ୍ଭୁ ଆଉ ସମ୍ଭାଳି ହୋଇ ରହି ପାରିଲା ନାହିଁ ।

ପରଦିନ ସକାଳେ ଜମ୍ବୁର ପାଳି ଥାଏ । ଶମ୍ଭୁ ରାଗରେ ଅସ୍ଥିର ହୋଇ ଯାଉଥାଏ । ସେଦିନ ରାତିରେ ନିତ ପରିସେ ପଦାରେ ନ ଶୋଇ ଘର ଭିତରେ ଶୋଇଲା । ତାକୁ କି ଆଉ ନିଦ ହୁଏ ! ଘର ଭିତରେ ଡବା ଖଡ଼୍ ଖାଡ଼୍ ହେବାର ଶୁଣି ସର୍ଦ୍ଦାର ପଦାରୁ ଡାକିଲା—ଆବେ ଶମ୍ଭୁ ଦେଖିଲୁ କଅଣ ଖୁଡ଼୍ ଖାଡ଼୍ ହେଉଛି ? ଶମ୍ଭୁ ସଙ୍ଗେ ସଙ୍ଗେ ଉଭିଭ

ଦେଲା—"ଚୁଚୁନ୍ଦ୍ର। ଶଳେ କଅଣ ଶୁଆଇ ଦେଉଛନ୍ତି।" ସର୍ଦ୍ଦାର ଆଶ୍ୱସ୍ତ ହୋଇ ଶୋଇଲା। ଜମ୍ମୁ ଶମ୍ଭୁଙ୍କ ଶୋଇଲେ।

ପରଦିନ ଗୋଟିଏ ଛକରେ ସର୍ଦ୍ଦାର ବକ୍ତୃତା ଆରମ୍ଭ କରି ଦେଇଥାଏ। ବକ୍ତୃତାର ତେଜ ବଢ଼ିବା ସଙ୍ଗେ ସଙ୍ଗେ ଦେଖଣାହାରୀଙ୍କ ସଂଖ୍ୟା ବଢ଼ୁଥାଏ। ମଫସଲ ଗଣ୍ଡିଆ ବେଶଧରି ଜମ୍ମୁ କିଛି ସମୟ ପରେ ଯାଇ ପହଞ୍ଚିଲା। ବିଛା କାମୁଡ଼େଇବା ସମୟ ହେଲା। ଅଭିନୟରେ ଜମ୍ମୁର ଟିକିଏ ହେଲେ ବି ତ୍ରୁଟି ଦେଖାଗଲା ନାହିଁ। ସର୍ଦ୍ଦାର ଅତି ସାବଧାନତାର ସହିତ ଡମ୍ବୁଟାରେ ଗୋଟିଏ ବିଛା ଡବାରୁ କାଢ଼ି ତଳେ ଥୋଇଲା। ଜମ୍ମୁ ଆଖିକୁ କାହିଁକି କେଜାଣି ବିଛାଟା ଟିକିଏ ବେଶି ଚକ୍‌ଚକ ଦେଖାଗଲା। ସେଥିରେ ସେ କିନ୍ତୁ ଧ୍ୟାନ ଦେଲା ନାହିଁ। ସର୍ଦ୍ଦାର ତା ହାତକୁ ନେଇ ବିଛା ଉପରେ ରଖୁ ନ ରଖୁଣୁ ବିଛା ଲାଞ୍ଜଟା ପାପୁଲିର ଉପର ପାଖକୁ ଲେଉଟି ପଡ଼ିଲା। ଏକ ରକମ ଛନ୍ଦ ହୋଇଗଲା। ଫାଙ୍କା ଆକାଶରେ ଗୋଟିଏ ଘଡ଼ଘଡ଼ି ଯେପରି ଅଚାନକ ଅଜାଡ଼ି ହୋଇ ପଡ଼ିଲା; ଜମ୍ମୁକୁ ଜଣାଗଲା ଯେପରି କିଏ ତରଳ ନିଆଁ ଥୋଡ଼ାଏ ତା ହାତ ଭିତରେ ଇଞ୍ଜେକ୍‌ସନ ଦେଇଦେଲା। ହାତଟା ସତେ କି ଯେପରି ଛିଣ୍ଡି ଯିବ। କେଉଁଦିନ ତ ଏପରି ହୁଏ ନାହିଁ। ଆଜି କାହିଁକି ଏପରି ହେଲା ? ଅସହ୍ୟ ଯନ୍ତ୍ରଣାରେ ସେ ଦରମରା ହୋଇଗଲା। ସର୍ଦ୍ଦାରକୁ ଗାଳି ଦେଇ ସେ ଔଷଦ ମାଗିବାକୁ ଭୁଲିଯାଇ 'ବୋପାଲୋ' 'ମାଆଲୋ' ହେଉଥାଏ। ବିଛାର ବୋଧହୁଏ ନୂଆ ଲହୁଡ଼ି ବାହାରିଲା।

ସର୍ଦ୍ଦାର ଦେଖିଲା ଯେ ସବୁଦିନର ଅଭିନୟ ଅପେକ୍ଷା ଆଜିର ଅଭିନୟ ବଢ଼ିଆ। ତାକୁ ମନେ ମନେ ପ୍ରଶଂସା କରି ଔଷଦ ଗୋଳି କାଢ଼ିଲା। ଗୋଳିକୁ ପାଣିରେ ଘୋରି ପିଆଇଲା ବେଳେ ଦେଖିଲା ଜମ୍ମୁ ମୁହଁରେ ଔଷଦ ପ୍ରତି ଆଗ୍ରହ ନାହିଁ। ମନରେ ଟିକିଏ ବିରକ୍ତ ହୋଇ ଭାବିଲା, "ଆଃ ! ଏତେ ବଢ଼ିଆ ଛଟା ଗାଲେଇ ସୁଦ୍ଧା ଟିକିକରେମାଟି କରିଦେଲା।" ଔଷଦ ପାଣି ମୁହଁରେ ଯୋଗକରି ଦେଲାବେଳେ ଟିକିଏ ମୁରୁକିହସା ଦେବାରୁ ଜମ୍ମୁ ଗଣଗଣେଇ କରି କହିଲା, "ସର୍ଦ୍ଦାର ସତରେ ମାରିଦେଲ, ମତେ ବଞ୍ଚାଅ।" କିଛି ବୁଝି ନ ପାରି ସର୍ଦ୍ଦାର କହିଲା, "ଛିଃ ! ଏଇତ ? ଦେଖ ଏଇ ମୁହୂର୍ତ୍ତରେ ଆରାମ ହୋଇଯିବ। ଦେଖ କାମୁଡ଼ା ଥାନରେ ଟିକିଏ ଲଗାଇ ଦିଏଁ।" କାମୁଡ଼ା ଥାନରେ

ଲଗାଇଲା ବେଳକୁ ସର୍ଦ୍ଦାର ଦେଖିଲା ଜମ୍ବୁର ହାତ ଓ ପାପୁଲି ସବୁ ନାଲି ପଡ଼ି ଗଲାଣି । ମକଚୁ ମକଚାରେ ଏପରି ହୋଇଛି ଭାବି ସେ କାମୁଡ଼ା ଜାଗାରେ ଔଷଧ ଲଗାଇ କହିଲା, "ହେଇ ଦେଖ୍ ସାଙ୍ଗେ ସାଙ୍ଗେ କମି ଆସିବ ।" ବିକଳରେ ଜମ୍ବୁ କହି ପକାଇଲା, "ବାପା ବଢ଼ୁଛି ସର୍ଦ୍ଦାର, ମୋତେ ବଞ୍ଚାଅ, ଜୀବନ ଗଲା ।" ବିରକ୍ତ ହୋଇ ସର୍ଦ୍ଦାର କଅଣ କହିବାକୁ ଯାଉଥିଲା, ହଠାତ୍ ଦେଖଣାହାରୀଙ୍କ ଭିତରୁ କେତେକ ପାଟିକରି ଉଠିଲେ, "ଆରେ ଗୋଟାଏ ବିଛା ପଳେଇଲା ।" ଲୋକଙ୍କୁ ଇତସ୍ତତ ହେବାର ଦେଖି ସର୍ଦ୍ଦାର ବିଛାଟାକୁ ଡବା ଭିତରେ ଭର୍ତ୍ତିକରି ଦେବାକୁ ବେଖାତିର ଭାବରେ ଧରି ପକେଇଲା । କିନ୍ତୁ ଏ କଅଣ ? ଏ କି ଚମତ୍କ ! ବିଛାଟା ତା ହାତରେ ଲଟକି ପଡ଼ିବା ମାତ୍ରେ ତା ହାତରେ ନିଆଁ ଅଜାଡ଼ି ହୋଇଗଲା ପରି ଲାଗିଲା । ଏତେବେଳେ ଯାଇ ସେ ବୁଝି ପାରିଲା ଜମ୍ବୁ କାହିଁକି ଆଜି ଏପରି ଅଦ୍ଭୁତ ବ୍ୟବହାର କରୁଛି । ଶମ୍ଭୁ ଯେ ବିଛା ବଦଳେଇ ଦେଇଛି, ସେତିକି ବୁଝିବାକୁ ଆଉ ଡେରି ହେଲା ନାହିଁ ।

ବେଦନାକୁ ଲୁଚେଇବାକୁ ପ୍ରାଣପଣେ ଚେଷ୍ଟା କଲେ ବି ସର୍ଦ୍ଦାର ପାରିଲା ନାହିଁ । ତା ହାତରୁ ଗୋଲି ଖସି ପଡ଼ିଲା । ସେ ବି ସେଇଠାରେ ବସି ପଡ଼ିଲା । ଜଣେ ଦର୍ଶକ ସେ ଗୋଲିକୁ ଟିକିଏ ପାଣିରେ ଘୋରି ପକାଇ ତା ପାଟିରେ ଦେଲା ଓ ହାତରେ ଲଗାଇ ଦେଲା । ଯିଏ ସେ ଔଷଧର କରାମତି ଜାଣିଛି ତାକୁ କି ତାହା କାହୁଁ କରିବ ? ଏତିକି ବେଳକୁ ଜମ୍ବୁ କହି ପକେଇଲା "ଆଉ ହବ ନାହିଁ ସର୍ଦ୍ଦାର, ଚାଲ ଡାକ୍ତରଖାନାକୁ ଯିବା ।" ଦେଖଣାହାରୀଙ୍କ ମଧ୍ୟରେ ଅଛନ୍ତି ବୋଲି ଦୁହେଁ ଭୁଲିଗଲେ । ଦେଖଣାହାରୀଏ ଠକେଇ କାମ କଥା ବୁଝିବା ପୂର୍ବରୁ ଦୁହେଁ ଡବା ମୁଣ୍ଡି ଝାଡ଼ି ଦେଇ ରିକ୍‌ସାରେ ବସି ଡାକ୍ତରଖାନା ଆଡ଼େ ଧାଇଁଲେ । ଏତିକିବେଳକୁ ଶମ୍ଭୁ କେଉଁଠି ଥିଲା ଗଡ଼ି ଜପୁ କଲାପରି କହି ଉଠିଲା, "ଶଳେ ମଜାମାରି ଖାଉଥିଲ । ଏବେ ଚେଙ୍କ ଚେଙ୍କ ପାଉଥା, କାଲି କାଲି ମନେ ଥିବ—ଏ କଲକତ୍ତ ଚେଙ୍କ ।

# ଗବ୍‌ଦଲ୍‌ ଖାସୁ

ଲୋକମାନେ ନାକ୍ସରେ ତେଲ ଦେଇ ଯେତେବେଳେ ଭାବୁଥିଲେ ଯେ, "ଇଞ୍ଜିନିଅରମାନେ କଅଣ ବୋକା ଯେ, ଓଡ଼ିଶାର ଲକ୍ଷ୍ମୀ ଭଣ୍ଡାରକୁ ଉଜୁଡ଼େଇ ଦେବେ । ସେମାନେ କଳେବଳେ କୌଶଳେ ନିଶ୍ଚୟ ଦଳେଇଘାଇକୁ ରକ୍ଷା କରିବେ । ଘାଇ ଭାଙ୍ଗିବା କଥା ମନକୁ ଆଣିବା ଠିକ୍ ନୁହେଁ ।" ଠିକ୍ ସେତିକି ବେଳେ ଦଳେଇ ଘାଇ ଭୁସ୍‌କିନ ବନ୍ଧଟାକୁ ପେଲି ନେଇ ଗାଁ ଭିତରେ ପଶିଗଲା । ହେଲପଲ ଭିତରେ କେନ୍ଦୁଆଟାଏ ପଶିଗଲେ ଯେପରି ହୁଏ, ଅବସ୍ଥାଟା ଠିକ୍ ସେହିପରି ହେଲା । "କଅଣ କରିବା" ଏହି ଛଅଟି ଅକ୍ଷର ଭାବିବାକୁ ସୁଦ୍ଧା ସମୟ ରହିଲା ନାହିଁ । ପ୍ରାଣ ବିକଳରେ କେତେ ଉଚ୍ଚ ଉଚ୍ଚ ଜାଗାକୁ ପଳେଇଲେ, କେତେ ଭାସିଗଲେ । ଘରଦ୍ୱାର ପଡ଼ୁରୁଛି କିଏ ? ଗୃହୁଁ ଲୁହୁଁ ଏଡ଼େ ବଡ଼ ଅଞ୍ଚଳଟା ସମୁଦ୍ର ହୋଇଗଲା । ପାଣି ସମସ୍ତଙ୍କୁ ଅନ୍ଧିଆର କରି ଚୁପ୍ ହୋଇଗଲା । କିଏ ଚିରଦିନ ପାଇଁ, କିଏ ବା ଭିକୁଆ ହୋଇ ଚୁପ୍ ହୋଇଗଲା ।

ଯେଉଁଠି କିନ୍ତୁ ପାଣି ନାହିଁ ସେଇଠି ଲାଗିଲା ଗୋଳ, ପାଲା, କନ୍ଦଳ ଓ ସେମିତିଆ ଯେତେ ଜିନିଷ ଅଛି । ପ୍ରଥମେ ଲାଗିଲା ଶୋଧା ଶୋଧି । କିଏ ଗାଳିଦେଲା ବନ୍ଧ ଜଗା କୁଲିଙ୍କୁ, କୁଲି କଣ୍ଟ୍ରାକ୍‌ଟରକୁ, କଣ୍ଟ୍ରାକ୍‌ଟର ଇଞ୍ଜିନିୟରକୁ, ଇଞ୍ଜିନିୟର ମନ୍ତ୍ରୀକୁ, ମନ୍ତ୍ରୀଏ ଲୋକମାନଙ୍କୁ; ତାପରେ ସମସ୍ତେ ସମସ୍ତଙ୍କୁ ଗାଳିଦେଇ ଆଗ ଭୁଣ୍ଡିଗଲୁଟା ମାରିନେଲେ । ଘାଇ ମୁହଁରେ ପାଣିସୁଅ ଯେମିତି ଛୁଟିଥାଏ, ଘାଇ

ପାଖକୁ ଠିକ୍ ସେମିତିଆ ମଈଷ ସୁଅ ଛୁଟିଲା । ମାଛ ବଉଳାଲେ ଯେପରି ମାଛରଙ୍କା ଓ ଗଙ୍ଗେଇ ଚଢ଼େଇମାନେ ସାଲୁ ସାଲୁ ବାଲୁ ବାଲୁ ହୁଅନ୍ତି, ସେହିପରି ଦେଖଣାହାରୀଏ ଘାଇ ପାଖରେ ସାଲୁ ସାଲୁ ହେଲେ ।

ସବନାଶିଆଏ ପାଣିରେ ତେଣେ ଆଉଟୁ ପାଉଟୁ, ଏଣେ କନ୍ତୁ ପୁଷମାସିଆଙ୍କର କଟେବାର । ଶତକଡ଼ା ଦୁଇଶହ ଲାଭ କରିବାକୁ ବେପାରୀଏ ଚାଉଳ ଲୁଚେଇ ଦେଲେ । ଯେଉଁ ବେପାରୀ ଗମରା ଚୂଡ଼ା ଚାଉଳକୁ ବନ୍ଦି ହେବନାହିଁ ବୋଲି ନଗାରୁଙ୍କ ଆଗରେ ପକାଇବାକୁ ସ୍ଥିର କରୁଥିଲା, ସେ ମନରେ ସାହସ ବାନ୍ଧି ଚୂଡ଼ା ଚାଉଳ ଖରାରେ ଦେଲା । ବିଖ୍ୟାତ ଚାଲବାଜମାନେ ଆଖି ମଳି ମଳି ନିଦରୁ ଉଠିଲେ । ତାଙ୍କ ପକେଟକୁ ନଅଙ୍କ ଦୁର୍ଭିକ୍ଷ ଘୋଟି ଯାଇଥିଲା । ଅନ୍ତତଃ ବର୍ଷେ ଦୁଇବର୍ଷ ପାଇଁ ପକେଟ ତାଜା ରଖିବାପାଇଁ ସେମାନେ କୁଦ୍ଧ ଉଠିଲେ । ଚାନ୍ଦା ଆଦାୟକାରଣୀ କୌଣସି ନା କୌଣସି ସମିତିରେ ପଶିବା ପାଇଁ ତାଙ୍କର ମୁହୂର୍ତ୍ତେ ସୁଦ୍ଧା ଡେରି ହେଲା ନାହିଁ । ଚାନ୍ଦା ଆଦାୟକାରୀଙ୍କ ସଂଖ୍ୟା ଚାହୁଁ ଚାହୁଁ ଏତେ ବଢ଼ିଗଲା ଯେ, ସମସ୍ତେ ସମସ୍ତଙ୍କୁ ଚାନ୍ଦା ମାଗିବାର ଦେଖାଗଲା । ନେତା ଓ ତାଙ୍କ ଗୁଇ ଚଳିଆଙ୍କର ପାଟି କରି କରି ତଣ୍ଟି ପଡ଼ିଗଲା । କେତେକ ଗଜୁରି ଆସୁଥିବା ଅଲୋଡ଼ା ନେତା ଦିନକୁ ଦଶଥର ମାଗଣା ସରକାରୀ ମଟରରେ ଘାଇରୁ ସହର ଓ ସହରରୁ ଘାଇ ଯା ଆସ କରି ବିପନ୍ନ ଲୋକମାନଙ୍କର ଅଶେଷ କଲ୍ୟାଣ ସାଧନ କଲେ । ମୋଟ ଉପରେ 'ସାଜ ସାଜ' ରଡ଼ି ସାରା ଓଡ଼ିଶାରେ ଚାହୁଁ ଚାହୁଁ 'ଠ' ବୁଲିଗଲା ।

ଏ ରଡ଼ି ବେଶି ବିଚଳିତ କଲା ଛୁଟନ୍ତିଆ ନେମସ୍ତର ଗଦାଧର ଓରଫ ଗେଧୁ ମିଶ୍ରଙ୍କୁ । ନିଆଁରେ ସତର୍କ ଘଣ୍ଟି ଶୁଣିଲେ ଲାଲଦଳ ଯେପରି ସଜ ହୋଇ ବାହାରି ଆସନ୍ତି, ଗେଧୁମିଶ୍ର ଠିକ୍ ସେମିତି ସଜ ହୋଇ ସାଙ୍ଗମାନଙ୍କୁ କହିଲା-"ଭାଇମାନେ ବର୍ତ୍ତମାନ ଆଉ ପଢ଼ାପଢ଼ିର ସମୟ ନୁହେଁ । କଲେଜ ବି ବନ୍ଦ ହୋଇଗଲାଣି । ବଢ଼ି ବର୍ତ୍ତମାନ ଆମକୁ ଡାକୁଛି । ଚାଲ କଲେଜ ସ୍ୱେଚ୍ଛାସେବକ ଦଳରେ ଯୋଗଦେଇ ସାହାଯ୍ୟ କାମରେ ଲାଗିପଡ଼ିବା । ଜଣେ ବଡ଼ବଡ଼ିଆ ପିଲା ଟିକିଏ ଗୁଁ ଗୁଁ ହୋଇ କହିଲା, "ତୋ ପରି ଓଧ ସାଙ୍ଗରେ ଆମେ ବଣଭୁଆ ବାଇହେଲେ କଅଣ ହେବ ? ତୁ ସିନା ଛତମଦଣିଆ ରାକ୍ଷସ,

ହାତ ବଢ଼େଇଲେ କଢ଼କୁ ଛୋର ହାତ ପାଇବ, ନୋଳଆଙ୍କ ମେଳରେ ବଢ଼ିଛୁ, ପାଣିକୁ ଡର ନାହିଁ । ଆମ ଜୀବନ କେତେକେତେ କେତେ ?" ଗେଧୂମିଶ୍ର ଉତ୍ଫୁଲ୍ଲରେ ଟିକଏ ସଳଖି ହୋଇଯାଇ କହିଲ, "କିଛି ପରବାଏ ନାହିଁ, ଚ୍ଚଲ ମୁଁ ଅଛି, ସବୁ ଭୁଲାଇ ଦେବ ।" ସାହସ ବାନ୍ଧି ସମସ୍ତେ ବାହାର ପଡ଼ଲେ ।

ମଠର ବସ୍ତା ସମସ୍ତଙ୍କୁ ଧର ଘାଇ ପାଖରେ ପହଞ୍ଚିଲ । ବସ୍ତା ପୂରପୂର ବନ୍ଦ ନ ହେଉଣୁ, ଗେଧୂମିଶ୍ର ପଦାକୁ ବାହାର ପଡ଼ିଲ । ତାର ଗୋଡ଼ ଭୂଇଁ ଉପରେ ରହି ଅଟକିଗଲ; କିନ୍ତୁ ପୃଥୂଳ ଶରୀରଟା ବୋଲ ମାନିଲ ନାହିଁ । ଫଳରେ ଗୁଆ ବସ୍ତା ପଡ଼ିଗଲା ପର ସଡ଼କ ଉପରେ ସେ ଗଡ଼ିଗଲ । ହିଁ ହିଁ ହୋଇ ହସି ଜଣେ କହିଲ, "କୋଥମା, ଏଣ୍ଡୂଟିଏ ହେଲୁଣି, ଚଳନ୍ତା ଗାଡ଼ିରୁ ଓହ୍ଲାଇ ଆସୁନ । ଏ କଥାଟା ଗେଧୂକୁ ପଡ଼ିବାଠାରୁ ବେଶି କାଟିଲ । ପେଣ୍ଟ ଓ ହାଓ୍ୱାଇନ୍‌ରୁ ନାଲି ଧୂଳ ଝାଡ଼ ସେ ଠିଆହେଲ । ସମସ୍ତେ ରଲଫ ହାକମଙ୍କ ପାଖକୁ ଗଲେ ।

ଘାଇର ଭୟଙ୍କର ମୂର୍ତ୍ତି ଦେଖି ଗେଧୂ ଏକାବେଳକେ ଦବିଗଲ । ସେ ଶଲ୍‌କୁଲ୍ ଭାବି ନ ଥିଲ ଯେ, ଏମିତିଆ ତୋଡ଼ ହୋଇଥିବ, ଯେଉଁଠିକି ମାଛି ପଡ଼ିଲେ ନଅଖଣ୍ଡ ହେବ । ତା ଭିତରେ ଜଣେ କିଏ ଛାକୁ ବରାବର ପଛକୁ ଟାଣିବାକୁ ଲଗିଲ । କେବଳ ଲାଜ ଥୋରିଆ ବଳଦକୁ ନାକରେ ଦଉଡ଼ି ଦେଇ ଟାଣି ନେଲାପରେ, ତାକୁ ଆଗକୁ ଆଗକୁ ଟାଣି ନେଉଥାଏ ।

ବହୁ କଷ୍ଟରେ ଡଙ୍ଗାଟିଏ ମିଳିଲ, କିନ୍ତୁ ନାଉରୀର ଅଭାବ । ସେ ଡଙ୍ଗାର ନାଉରୀ ବିଚାରୀ କାମ କର କର ଥକି ଯାଇଥାଏ । ରଲଫ୍ ହାକମଙ୍କ ମନ ଗଲନାହିଁ ତାକୁ କହିବାକୁ । ପିଲମାନେ ଅଶ୍ୱାସନା ଦେଲେ ଯେ, ସେ ଡ଼ଙ୍ଗାରେ ବସି ବତେଇଲେ ସେମାନେ ସବୁ କରିବେ । ନାଉରୀଟି ସେମାନଙ୍କ କଥା ଶୁଣି ବିଶେଷତଃ ଗେଧୂର ଚେହେରା ଦେଖି ଡଙ୍ଗା ଫିଟାଇବାକୁ ରାଜି ହେଲ ।

ପ୍ରାୟ ୪।୫ ମାଇଲ ଦୂରରେ ଥିବା ଗୋଟିଏ ଗାଁଆକୁ ୬ବସ୍ତା ଚୂଡ଼ା, ୩ ଚକ ଗୁଡ଼, କିଛି ଲୁଣ ନେବାକୁ ରଲଫ୍ ହାକମ ଆଦେଶ ଦେଲେ । ନିଜ ହାତେ ହାତେ ସବୁ କାମ କରିବାକୁ ହେବ । ଗମ୍ଭାଘରୁ ବସ୍ତା ବୋହିବାଭାର ଗେଧୂ ଓ ଆଉ ଜଣେ ଡାଗଡ଼ା ପିଲ ଉପରେ ପଡ଼ିଲ ।

ଦୁହେଁ ହାତ ଧରାଧରି ହୋଇ ଗୋଟିଏ ଚୂଡ଼ା ବସ୍ତାକୁ ଛନ୍ଦା ହାତ ଉପରେ ଶୁଆଇ ଦେଲେ ଓ ଆର ଦୁଇ ହାତରେ ବସ୍ତାର ଦୁଇ ଚୂଟି ଧରି ଅଣ୍ଟା ସଳଖେଇଲେ । ଗେଧୁ ଅଣ୍ଟା ଲାଠି ହୋଇଗଲା । ପୋଚରା ଜିନିଷ ଶୁଙ୍ଘିଲା ପରି ମୁଖ ବିକୃତ କରି ଦୁଇ ତିନି ଝାଙ୍କ ଦେଲେ ସୁଦ୍ଧା ଗେଧୁ ଅଣ୍ଟା ସଳଖେଇ ପାରିଲା ନାହିଁ । ହାତ ଛାଡ଼ିଦେଇ ବସ୍ତାଟା ତଳକୁ ଖସାଇ ପକାଇ ଥାଆନ୍ତା କିନ୍ତୁ ତା ହାତକୁ ଆର ଜଣକ ଝଙ୍କେଇ ହେଲାପରି ଜାବୁଡ଼ି ଧରିଥିଲା । ଗେଧୁର ହାତ ଶିଥିଳ ହୋଇ ଆସିଲା ବେଳକୁ ଆର ଜଣକ ଗୋଟାଏ ଝିଙ୍କାରେ ଅଣ୍ଟା ସଳଖେଇ ଦେଲା । ଗେଧୁ କଡ଼ଟା ତଳ ହୋଇଗଲା । ଫଳରେ ଗେଧୁ ତଳେ, ତା ଉପରେ ବସ୍ତା ଓ ତା ଉପରେ ଆର ଜଣକ ଆଉଜିଗଲା । ହାତ ଛାଡ଼ିଦେଇ ଆର ଜଣକ ଗେଧୁ ଉପରୁ ବସ୍ତାଟା କଡ଼କୁ ଗଡ଼ାଇ ଦେଲା । ହାତରେ ସାମାନ୍ୟ ଦରଜ ଥିବାରୁ ଏ ଦୁର୍ଘଟଣା ହେଲା ବୋଲି ଗେଧୁ ମନ୍ତବ୍ୟ ଦେଲା । ଯାହାହେଉ ଅନ୍ୟମାନେ ମାଲ୍ ଲଦେଇ କାମଟା କରିଦେଲେ ।

ଡଙ୍ଗାଟା ଭୂଇଁଠାରୁ ଟିକିଏ ଦୂରରେ ଥିଲା, ଆଣ୍ଠୁଏ ପାଣିରେ ନ ପଶିଲେ ଡଙ୍ଗା ଭିତରକୁ ଯାଇ ହେବନି । ଜଣେ ଅଯଥାରେ ପାଣିରେ ନ ପଶିବା ଲାଗି ଡଙ୍ଗା ପଛପଟେ ଥିବା ଏକ କୁଦ ଉପରକୁ ଯାଇ ଡଙ୍ଗା ଉପରକୁ ଖପ୍ କରି ଡେଇଁ ପଡ଼ିଲା । ଗେଧୁ ବି ବୃଥାରେ ପ୍ୟାଣ୍ଟ ଓଦା ନ କରିବାକୁ ସେହି କୁଦ ଉପରକୁ ଗଲା । ବ୍ୟବଧାନକୁ ଚାହିଁବା ମାତ୍ରେ ତା ଭିତରେ ଜଣେ ତାକୁ ବୁଝାଇ ଦେଲା, "ସେ ସୋଲମୁଣ୍ଡା ବୋଲି ଡେଇଁ ପଡ଼ିଲା । ତୁ ଯେ ଲୁହା ମୁଣ୍ଡା । ଅଯଥାରେ ବିପଦ ବରଣ କରିବା ଠିକ୍ ନୁହେଁ ।" ସେ ଫେରିଯିବ ବୋଲି ଭାବୁଛି, ଠିକ୍ ସେହି ସମୟରେ ଡଙ୍ଗା ଭିତରୁ ଜଣେ କହିଲା "କରେ ଡରିଗଲୁ କିରେ" ଆଉ ଜଣେ କହିଲା, "ନାଃ ଗେଧୁ ଡରିଯିବ ।" ବିବେକ ତାକୁ ପଛରୁ ଟାଣି ଧରିଲେ ସୁଦ୍ଧା ଲଜ୍ଜା ଠେଲିକୁ—ପାଣିକୁ ଠେଲିବା ପରି ତାକୁ ଆଗକୁ ଠେଲିଦେଲା । ସେ ଡେଇଁଲା । ଗୋଟିଏ ମାତ୍ର ଗୋଡ଼ ଡଙ୍ଗା କଡ଼କୁ ଛୁଇଁଲା । ବାକୀତକ ବିବେକ ଅକ୍ତିଆର କରିନେଲା । ଫଳରେ ଘାଇପାଖେ ଅଡ଼ଡ଼ା ଖସିଲାପରି ଧପାସ୍ କରି ସେ ପାଣିରେ ପଡ଼ିଲା । ଖାଲି ପାଣି ଥିଲେ ରକ୍ଷା ହୋଇଥାଆନ୍ତା । ପ୍ରାୟ ଅଣ୍ଟାଏ ପାଣି ତଳକୁ ଜଙ୍ଘେ ପଙ୍କ । ବାର୍ହା କାଦୁଅରେ ଲଟ୍‌ପଟ୍ ହେଲାପରି, ସେ କାଦୁଅ

ବାଲୁ ବାଲୁ ହୋଇ ଉପରକୁ ଉଠିଲା ଓ ଧୂଆଁଧାଇ ହୋଇ ଡଙ୍ଗା ଉପରେ ବସିଲା ।

ନାଉରୀ ମଙ୍ଗ ଧରିଲା, ପିଲାମାନେ ପାଳକରି କାତ ମାରିବେ ବୋଲି ଠିକ୍ ହେଲା । ଆଗୁସାର ହୋଇ ଗୋଟିଏ ପିଲା ପହିଲେ କାତ ମାରିଲା । ପୁରୁଖା ନାଉରୀ ପରି ତାକୁ କାତ ମାରିବାର ଦେଖି ସମସ୍ତେ କହିଲେ । "ଏଃ ! ତୁ ତ ଗୋଟାଏ ପକ୍କା କେଉଟ ।" ନାଉରୀ ବି ଖୁସି ହୋଇଗଲା, ତୋଡ଼ଠାରୁ ପ୍ରାୟ ୫୦।୬୦ ହାତ ଦୂରରେ ଥାଇ ଡଙ୍ଗା ଆଗେଇଲା ।

ପହିଲି ଜଣଙ୍କର ହାତ ବଦଳିବାରୁ ସମସ୍ତଙ୍କ ଅନୁରୋଧରେ ଗେଧି ଉଠିଲା । କାତ କପର ମରାହୁଏ ତାହା ସେ ଖୁବ୍ ଭଲ ଭାବରେ ଲକ୍ଷ୍ୟକରି ନେଇଥିଲା । କାତଟା ଧରି ଭୂଇଁ ଭିତରକୁ ଗେବ ଦେଲା ଓ ଶରୀରର ସମସ୍ତ ଓଜନ ତା ଉପରକୁ ଅଜାଡ଼ି ଦେଲା । କାତ ମୂଳଟା ତା ଶରୀରର ବରାବର ସମ୍ଭାଳି ନ ପାରି ମାଟିର ଖୁବ୍ ଭିତରକୁ ପଶିଗଲା । କାତ ଆଡ଼କୁ ଝୁଙ୍କି ଗେଧି ଡଙ୍ଗାର କଡ଼େ କଡ଼େ ଆଗଆଡ଼ୁ ପଛ ଆଡ଼କୁ ଆସିଲା । ଡଙ୍ଗାଟାର ଅଧିକ ବେଗ ଦେଖି ସମସ୍ତେ ବାହାବ୍ବା ଦେଇ ନ ସାରୁଣୁ ଗେଧି ସଙ୍କଟରେ ପଡ଼ିଗଲା । ମଙ୍ଗ ପାଖ ହୋଇଯିବାରୁ ସେ କାତକୁ ଭୂଇଁରୁ ଛଡ଼ାଇ ପୁଣି ଆଗକୁ ଯିବାକୁ ଚେଷ୍ଟା କଲାରୁ, କାତ ବୋଲ ମାନିଲା ନାହିଁ, ଓଲଟା ଗେଧି ତା ଆଡ଼କୁ ଟାଣି ହୋଇ ହୋଇ ନଇଁଗଲା । ନାଉରୀ ତାକୁ ସାହାଯ୍ୟ କରିବା ପାଇଁ ଆସୁ ଆସୁ ଅବସ୍ଥା ଅସମ୍ଭାଳ ହୋଇଗଲା । ଗେଧି ପ୍ରାଣ ବିକଳରେ କାତଟା ଗୁଡ଼ ଦେଲା ସତ କିନ୍ତୁ ତା ଶରୀର ପାଣି ଆଡ଼କୁ ବେଶି ଉହୁଙ୍କି ପଡ଼ି ଥିବାରୁ ଢଳପଡ଼ିଲା । ନାଉରୀଟା ଖପ୍‌କରି ତା ଜଙ୍ଘ ପାଖକୁ ମାଡ଼ି ବସି ନଥିଲେ, ଗେଧି ଗୋଟା ସୁଦ୍ଧା ପାଣିରେ ଗଳି ପଡିଥାଆନ୍ତା । ତାକୁ ଘୋଷାଡ଼ି ଡଙ୍ଗା ଉପରେ ବସାଇ ଦେଖିଲା ବେଳକୁ ଡଙ୍ଗା କାତର ୩୦ ହାତ ଦୂରରେ ହୋଇଗଲାଣି । ସେହି ଗୋଟିକ କାତ । କାତ ଅଭାବରେ ଡଙ୍ଗାର ଅବସ୍ଥା କଳ୍ପନା କରିବାକୁ ନାଉରୀ ସମୟ ପାଇଲା ନାହିଁ । ସବୁ-ଗୁଡ଼ାକ ବାବୁ ପିଲା, କାହାକୁ ବା ଡେଇଁବାକୁ କହିବ ? ନିଜେ ଗେଧି ହାତରେ ମଙ୍ଗଟା ଧରେଇ ଦେଇ ପାଣିକୁ ଡେଇଁ ପଡ଼ିଲା ଓ କାତପାଏ ପହଁରି ପହଁରି ଗଲା । ସମସ୍ତଙ୍କ ଲକ୍ଷ୍ୟ ନାଉରୀ ଉପରେ । ଡଙ୍ଗାଟି ବଡରୀ

ତୋଡ଼ ଆଡ଼େ ମୁହାଁଇଲା । ତୋଡ଼ରେ ପଡ଼ିବାକୁ ଆଉ ଅଳ୍ପ ବାକି,
କାତକୁ ହଲାଇ ଝିଙ୍କୁ ଝିଙ୍କୁ ନାଉରୀ ଏହା ଲକ୍ଷ୍ୟ କଲା । ଖୁବ୍ ଜୋରରେ
ପାଟିକରି ସେ କହିଲା, "ବାବୁ, ବାବୁ, ମଙ୍ଗ ବାଁ ଆଡ଼କୁ ମୋଡ଼, ବାଁ
ଆଡ଼କୁ ମୋଡ଼, ନ ହେଲେ ଡଙ୍ଗା ତୋଡ଼ରେ ଗଲା ।" ଗେଧୁ ନାଉରୀ
ଆଡ଼େ ମୁହଁ କରିଥିଲା । ନାଉରୀ ତା ନିଜ ବାଁ ଆଡ଼କୁ କହୁଛି ବୋଲି
ଭାବି ନିଜର ଠିକ୍ ଡାହାଣ ଆଡ଼କୁ ମୋଡ଼ ଦେଲା । "ହାଁ, ହାଁ, କଅଣ
କଲ କଅଣ କଲ" ବୋଲି ଚିତ୍କାର କରି ନାଉରୀ କାତ ସହ ଖୁବ୍
ଜୋରରେ ପହଁରି ପହଁରି ଡଙ୍ଗା ଆଡ଼େ ଆସିଲା । ସେତେବେଳକୁ ଡଙ୍ଗା
ତୋଡରେ ପଡ଼ି ସାରିଲାଣି ।

ପ୍ରାଣମୂର୍ଚ୍ଛା ପହଁରି ପହଁରି ନାଉରୀ ଡଙ୍ଗାକୁ ଧରିଲା, ଆଉ ଜଣଙ୍କ
ହାତରେ ମଙ୍ଗ ମୋଡ଼ାଇ ବହୁ କଷ୍ଟରେ ତାକୁ ତୋଡରୁ କଢ଼ାଇ
ନେଲା । ଡଙ୍ଗା ଟିକିଏ ସ୍ଥିର ହୋଇ ଚାଲିବାରୁ ନାଉରୀ ସମସ୍ତଙ୍କୁ ହୁସିଆର
ହୋଇ ବସିବାକୁ କହି କଡ଼ବାଟେ ଉଠୁଙ୍କି ଡଙ୍ଗା ଉପରକୁ ଉଠିଲା ।
ଡଙ୍ଗାର ସେହି କଡଟା ଅଣେଇ ହୋଇ ଗଲା । ଗେଧୁକ ଆଉ ସମ୍ଭାଳି
ହୁଏ ! ଡଙ୍ଗାକୁ ସିଧା ରଖିବାକୁ ଆର କଡ଼କୁ ଝୁଙ୍କି ପଡ଼ିଲା ।
ନାଉରୀ ଡଙ୍ଗା ଉପରକୁ ଉଠିଯିବା ମାତ୍ରେ ଗେଧୁ ଥିବା
ପାଖଟା ଅଣେଇ ହୋଇପଡ଼ିଲା । ଏଥରକ ଗେଧୁ ଆଉ ଜଣକୁ
ଧରି ଆର ପାଖକୁ ଝୁଙ୍କିଗଲା । ନାଉରୀ 'ହାଁ ହାଁ'କୁ ଶୁଣୁଛି କିଏ ?
ଡଙ୍ଗାଟା ଏତେ ଅଣେଇ ହୋଇପଡ଼ିଲା ଯେ ଝଲକାଏ ପାଣି ପଶିଗଲା ।
ନାଉରୀ ପାଟି ଖନି ବାଜିଗଲା । ସମସ୍ତେ ହାଉଳି ଖାଇ ଗେଧୁ ସଙ୍ଗେ ଯୋଗ
ଦେଲେ । ଦୁଇକଡ଼ ବାଟେ ଡଙ୍ଗା ଝଲକାଏ ଲେଖାଏଁ ପାଣି ପିଇ ପାଣି
ଭିତରେ ଅଦୃଶ୍ୟ ହୋଇଗଲା । ଡଙ୍ଗା ସଙ୍ଗେ ସଙ୍ଗେ ଯମପୁରକୁ ଯିବାର
ନିଶ୍ଚିତ ଜାଣି ଗେଧୁ କାତର କଣ୍ଠରେ "ହେ ଭଗବାନ, ହେ ଭଗବାନ"
ବୋଲି ପାଟିକରି ଉଠିଲା । ସମସ୍ତେ ଡଙ୍ଗାଠାରୁ ଦୂରେଇ ଗଲେ । ଗେଧୁ
କିନ୍ତୁ ଜଡ଼ ପାଲଟି ଯାଇ ସେହି ଡଙ୍ଗା ଉପରେ ରହିଲା । ପ୍ରତିଥର ପାଣି
ହେବା ମାତ୍ରେ ତାର ଆର୍ତ୍ତନାଦ ଅତି ତୀବ୍ର ହୋଇ ଉଠିଲା ।

ଏଁ ଏଁ କଅଣ, ଭଗବାନ ଡାକ ଶୁଣିଲେ କି ? ଗେଧୁ ପିଣ୍ଡରୁ
ବାହାରି ଯାଉଥିବା ପ୍ରାଣ ପୁଣି ସଡ଼ସାଡ୍ ପିଣ୍ଡ ଭିତରେ ପଶିଗଲା । ଯେତେ
କି ଜଣେ ଖୁଣୀ ଅସାମୀ ଫାସି ଖୁଣ୍ଟରୁ ଖସିଗଲା । ଡଙ୍ଗାଟା ଆଉ ତଳକୁ

ନ ଯାଇ ଅଟକିଗଲା । ଗୁରୁ ଆଡ଼କୁ ଖେଦି ଯାଇ ଏଣେତେଣେ ପହଁରୁ-ଥିବା ପିଲମାନେ ଓ ନାଉରୀ ଗୋଡ଼ରେ ଅଣ୍ଟାଏ ଅଣ୍ଟାଏ ପୁଣି ଡଙ୍ଗା ଉପରେ ଆସି ଠିଆ ହେଲେ । ବିପଦଟା ଏତେ ବେଶି ଜଣାପଡ଼ୁ ଥିଲା ଯେ କାହାରି ଦୋଷ ବାଛିବାକୁ ବା କାହାର ଦୋଷ ଦେବାକୁ ପ୍ରବୃତ୍ତି କାହାର ନ ଥିଲା । ଗୁରୁଆଡ଼େ ସମୁଦ୍ର, ଆଶ୍ରା ନେବେ କେଉଁଠି ? ପ୍ରାୟ ଦୁଇଶହ ହାତ ଦୂରରେ ଗୋଟିଏ କୂଦ ଦେଖା ଯାଉଥାଏ । ସେ ସ୍ଥାନ ସହିତ ଭଲ ଭାବରେ ପରିଚିତ ଥିବାରୁ ନାଉରୀ କୂଦକୁ ଦେଖି କେଉଁ ବାଟେ ଗଲେ ଅଳ୍ପ ପାଣି ପଡ଼ିବ ତାହା ସ୍ଥିର କରି-ନେଲା । ଉତ୍ତର ଆଡ଼କୁ କୋଡ଼ିଏ ହାତ ପହଁରି ଗଲେ ସାଡ଼କୁ ଗୁଡ଼ିଏ କି ବେକେ ଯାଏ ପାଣି ହେବ ବୋଲି କହିଲା । ସତକୁ ସତ ଜଣେ ଠିଆ ପହଁରି ପହଁରି ସେ ଜାଗାରେ ଠିଆ ହେଲେ । ବାକି ସମସ୍ତେ ବି ବାହାରିଲେ । ଗେଧୁ ବିଚରା ବିକଳ ହୋଇ କହି ପକାଇଲା "ମୁଁ ମୋଟେ ପହଁରି ପାରୁନି । ମୋ ଗୋଡ଼ଟା ଜଖମ ହୋଇଯାଇଛି ।" ନାଉରୀ ଆବାକାବା ହୋଇଗଲା ।

ନାଉରୀ କାନ୍ଧକୁ ଆଶ୍ରାକରି ଗେଧୁ ଗୋଡ଼ରେ ପାଣି ଧୁମ୍‌ଧୁମ୍ ବାଡ଼େଇ ଅନ୍ୟମାନଙ୍କ ପାଖରେ ପହଞ୍ଚିଲା । ସମସ୍ତେ ନାଉରୀ ପଛେ ପଛେ କୂଦ ଆଡ଼କୁ ଚାଲିଲେ । କୂଦ ନିକଟ ହେବାରୁ ପାଣି କମି କମି ଆସିଲା । ଏଥରକ ଗେଧୁ ଆଗୁଆଣି ହୋଇ ସମସ୍ତଙ୍କ ଆଗରେ କୂଦ ଉପରକୁ ଉଠିଗଲା । ଦଶ ବାର ସେକେଣ୍ଡ ଉପରେ ରହିଛି କି ନାହିଁ "ବୋପାଲୋ ମାଆଲୋ" ଚିତ୍କାର କରି ଭୂତ ବାଉଆ ପରି ପୁଣି ପାଣିରେ ଆସି ଧପାସ୍ କରି ପଡ଼ିଲା । "କଅଣ, କଅଣ" ବୋଲି ପଚାରି କେତେ ଜଣ ତାକୁ ଧରି ପକାଇଲେ । "ହାଁପ ହାପଁ କହି ସେ ବଇଡ଼ା ପରି ଥରୁଥାଏ । ନାଉରୀ କାତଟା ସଜାଡ଼ି କୂଦ ଉପରକୁ ଉଠିଲା ଓ ସାପକୁ ଖୋଜିଲା । ଗେଧୁବି ପଛେ ପଛେ ଯାଇ ଅଙ୍ଗୁଳି ନିର୍ଦ୍ଦେଶ ଦ୍ୱାରା ସାପକୁ ଦେଖାଇ ଦେଲା । ନାଉରୀ ଫଁ କରି ନିଶ୍ୱାସଟାଏ ଛାଡ଼ି କହିଲା, "ଓହୋ, ଏ କାଣ୍ଡନଳିଆ ସାପ ଦେଖିତ ଏମିତି, ଆଉ ଅହିରାଜ ଦେଖିଥିଲେ କଅଣ ନ ହୋଇ ଥାଆନ୍ତ ?" ଏତିକ କହି ସାପଟାକୁ ଲାଞ୍ଜଆଡ଼ୁ ଧରି ପକାଇ ବୁଲାଇ ବୁଲାଇ ଖୁବ୍ ଦୂରକୁ ଫିଙ୍ଗିଦେଲା ।

ଲୁଗାପଟା ଟୁପ୍ରିଡ ଗୃପୁଡ଼ ନିରାପଦରେ ବସିବା ପରେ ସମସ୍ତେ ବିପଦର କାରଣ ବିଷୟରେ ମୁଣ୍ଡ ଖେଳାଇଲେ । ସମସ୍ତଙ୍କର ବିରକ୍ତି କ୍ରମେ ଗେଧୁ ଉପରେ କେନ୍ଦ୍ରୀଭୂତ ହେଲା । ଜଣେ କହିଲା "ଏଇଟାକୁ କୁଆଡ଼େ ବଡ଼ି ଡାକୁଥିଲା ।" ଆଉ ଜଣେ କହିଲା "ଏ ଗବ୍‌ଦଲ ଖାସୁ କଥାରେ ପଡ଼ ଦେଖୁଚ ପ୍ରାଣଟା ଯିବ ।" ଗେଧୁ ମୁହଁ ତଳକୁ ପୋତି ସବୁ ସହିଗଲା । ବୋଝ ଉପରେ ନଳିତା ବସ୍ତା ପରି ଗୋଡ଼ଯାକ ବର୍ଷା ଓ ପବନ ମାଡ଼ ସମସ୍ତେ ସହିଲେ । ରାତିଁରେ ପୁଣି ଭୋକ । ସକାଳକୁ ସମସ୍ତେ ଦରମରା । ଦିନ ଆଠଟା ନଅଟା ବେଳକୁ ଗୋଟିଏ ଘୁଁ ଘୁଁ ଅବାଜ ହେଲା । ଉପରକୁ ଗୃହିଁ ସମସ୍ତେ ବହୁଦୂରରେ ଗୋଟିଏ ଉଡ଼ାଜାହାଜ ଆସୁଥିବାର ଦେଖିଲେ । ଜଣେ କାଠ ବାଉଁଶ ଅଗରେ ଗାମୁଛାଟାଏ ବାନ୍ଧିଦେଇ ହଲାଇଲା । କାଳେ କିଛି ଦୟାକରି ପକାଇ ଦେବ । ସତକୁ ସତ ଉଡ଼ାଜାହାଜଟା ଖୁବ୍ ତଳକୁ ଖସିଆସି ଗୋଟାଏ ପୁଟୁଳା ଖସାଇ ଦେଇ ଗୃଲିଗଲା । ବକଳିଆଙ୍କ ପରି ପୁଟୁଳାଟା ଖୋଲି ପକାଇ ସମସ୍ତେ ନିଶ୍ୱାସ ମାରିଲେ । ପରଟା ଆଳୁସିଝା, ମହାପ୍ରସାଦ, ଡାଲି ଦେଖି ସମସ୍ତେ କୁଲୁରି ଉଠିଲେ ।

ଖରା ବରଷା, ଅଣ୍ଡା କାକର ଦୁଇଦିନ ସହିବା ପରେ ଗୋଟିଏ ମିଲିଟାରୀ ଲଞ୍ଚ ସେମାନଙ୍କ ଆଡ଼କୁ ଆସିଲା । ଲଞ୍ଚ ଭିତରେ ପଶୁ ପଶୁ ଜଣେ କହିଲା "ଯାହା ହେଉ ଏ ଗବ୍‌ଦଲଖାସୁ ଲାଗି ବନ୍ୟା ସାହାଯ୍ୟ କାମଟା ନିଜ ନିଜ ଅଙ୍ଗେ ନଭେଇବାକୁ ପଡ଼ିଲା ।"

———

# କାଉମର୍ଦ୍ଦନ

ପୁଲିସ୍‌ସାହେବ ସେଦିନ ଗୋଟିଏ ସଭା ଡାକିଥାଆନ୍ତି । ସବୁ ଇନ୍‌ସପେକ୍‌ଟର ଓ ସବ୍-ଇନ୍‌ସପେକ୍‌ଟରମାନେ ଉପସ୍ଥିତ ଥାଆନ୍ତି । ପ୍ରଥମେ ନିଜେ ପୁଲିସସାହେବ ଆରମ୍ଭ କଲେ—"ସାମାନ୍ୟ ଗୋଟାଏ ଗୁଲିଖଟି, ଆମର ଏତେ ବଡ଼ ସଙ୍ଗଠିତ ଶକ୍ତିକୁ ବେଖାତିର କରି ଆଜିଯାଏ ମୁଣ୍ଡଟେକି ରହିଛି । ପ୍ରାୟ ଦୁଇଶହ ଥର ତା ଉପରେ ଆକ୍ରମଣ କରାଗଲାଣି । ତଥାପି ସେ ତିଷ୍ଠି ରହିଛି । କଣ୍ଟାଗଛରୁ କୁଆଁ ବାହାରିଲା ପରି ସେ ଥରକୁଥର କୁଆଁ ମେଲଉଛି । ବଡ଼ ଦୁଃଖ ଓ ଲଜ୍ଜାର କଥା ଯେ ଆପଣମାନଙ୍କ ମଧ୍ୟରୁ ଜଣେ ହେଲେ କେହି ସେ ଖଟିର ଚେରକୁ ଓପାଡ଼ି ପାରିଲେ ନାହିଁ । ତେବେ ମୁଁ କଅଣ ଗ୍ରହଣ କରିନେବି ଯେ ସାମାନ୍ୟ ଗୋଲିଖଟି ପାଖରେ ଆମର ସମସ୍ତ ବୁଦ୍ଧି, କୌଶଳ କର୍ମତତ୍ପରତା ଏକାବେଳେକେ ପରାସ୍ତ ! ମୁଁ କଅଣ ସିଦ୍ଧାନ୍ତ କରିନେବି ଯେ ଆପଣମାନଙ୍କ ଭିତରେ ଜଣେ ହେଲେ କେହି କୌଶଳୀ ନାହିଁ ! ଏପରି ଅବସ୍ଥାରେ ଆମେ ଲୋକଙ୍କ ପାଖରେ ମୁହଁ ଦେଖାଇ ପାରିବା କି ? ଆମ ପ୍ରତି ସେମାନଙ୍କର ବିଶ୍ୱାସ ଆଉ ରହିବ ତ ? ବାସ୍ତବିକ, ମୋର ମନ ଏକାବେଳକେ ଖରାପ ହୋଇ ଗଲାଣି । ମୋତେ ଜଣା ପଡ଼ୁଛି ଯେପରି ସେ ଗୋଲି ଖଟିଟା ମୋତେ ଚାହିଁ ଅଟ୍ଟହାସ୍ୟ କରୁଛି । ମୋତେ ଖତେଇ ବିଗୁଡ଼ିଲେଇ ହୋଇ ଉପହାସ କରୁଛି । ମୁଁ ଆଉ ସହ୍ୟ କରିପାରୁ ନାହିଁ । ଆପଣମାନଙ୍କ ଉପରେ ଆଉ ନିର୍ଭର କରି ରହିବି କି ନାଁ ଆପଣମାନେ କୁହନ୍ତୁ ।"

ଜଣେ ଇନ୍‌ସପେକ୍‌ଟର ଉଠିପଡ଼ି କହିଲେ, "ଆଜ୍ଞା, ପୁଲିସ୍‌ର ଉପାୟ କଅଣ ? ସେଠିକା ଲୋକମାନେ ଯଦି ସେ ଗୁଲିଖଟିକୁ ସାହାଯ୍ୟ କରିବେ, ତେବେ ଆମେ କଅଣ କରିବା ? ଲୋକ ସମର୍ଥନ ନ ପାଇଲେ କୌଣସି କାମ ହେବ ନାହିଁ ।" ଆଉ ଜଣେ କହିଲେ, "ଆଜ୍ଞା, ସେ ଖଟିର ଏମନ୍ତଆ ଚରସବୁ ଅଛନ୍ତି ଯେ, ଆମେ ତାକୁ ଘେରାଉ କରିବା ପୂର୍ବରୁ ସେମାନଙ୍କୁ କଥାଟା ଜଣାପଡ଼ି ଯାଉଛି । ସେ ସାହି ଗୋଟାଯାକ କାହାକୁ ବିଶ୍ୱାସ ନାହିଁ । ଖଟିର ଶହେ ଗଜ ଭିତରେ ପଶିବା ମାତ୍ରେ ନାନାଉପାୟରେ ସେମାନେ ଖଟିକୁ ସତର୍କ କରାଇ ଦିଅନ୍ତି । ଆମେ ଗଲାବେଳକୁ ସବୁ ସଫା, ଆଉ କରିବୁ କଅଣ ? ଧରିଲେ ବି ଲାଭ ନାହିଁ । ସାକ୍ଷୀ କେହି ହେଲେ ହେବେ ନାହିଁ । ତାଙ୍କ ଆଡ଼ୁ ଚେଷ୍ଟା ନ ହେଲେ ଆମେ କଅଣ କରିବୁ ? ଗୁଲି ଖାଇ ଖାଇ ମରୁଥାଆନ୍ତୁ ।"

ପୁଲିସସାହେବ ଟିକଏ ବିରକ୍ତ ହେଲପରି କହିଲେ, ଏଗୁଡ଼ାକ ଠିକ୍‌କଥା ନୁହେଁ । ଗାଁ ମେଳକୁ ବି ତ ପୁଲିସ ଜବତ୍‌ କରୁଛି ! ଯେ ଯେଉଁ ଗାଁ ବାଲାଏ ଏକମେଳ ହୋଇ ଏସ୍‌. ଡ଼ି. ଓ. ଙ୍କୁ ହତ୍ୟା କରିଥିଲେ, ସେମାନଙ୍କୁ ତ ପୁଣି ଜବତ୍‌ କରାଗଲା । ସାମାନ୍ୟ ଗୋଟାଏ ସାହିର ମୁଷ୍ଟିମେୟ ଲୋକଙ୍କ ସମର୍ଥନରେ ଚାଲୁଥିବା ଗୁଲିଖଟିଟା ଜବତ୍‌ ହୋଇ ପାରିବ ନାହିଁ ? ମୋର ମନେ ହୁଏ ଆପଣମାନେ ଯଛୋଟ ଲୋକମାନଙ୍କ ସହ ସମ୍ପର୍କ ରଖିପାରୁ ନାହାନ୍ତି । ସେ ସାହିରେ ସମସ୍ତେ କିଛି ଗୁଲି ଖାଆନ୍ତି ନାହିଁ । ଉଣା ଭଦ୍ରଲୋକବି ଯେଠି ନାହାନ୍ତି । ଏ ପ୍ରକାର ଉଦ୍ୟମହୀନତା ପୁଲିସ୍‌ବିଭାଗକୁ ଶୋଭାପାଏ ନାହିଁ ।

ଚତୁର୍ଦ୍ଦିଗ ନିସ୍ତବ୍ଧ । କାହାରି ମୁଣ୍ଡରେ କିଛି ପଶୁନି । ଗୁଲିଖଟିଟା ପାଇଁ କଅଣ ସୈନ୍ୟବାହିନୀ ଲଗାଯିବ, ସେତ ଚହୁଁ ବଳି ଲାଜ ହେବ । ପିମ୍ପୁଡ଼ି ମାରିବାକୁ ଆଟମ୍‌ବମ୍‌ । ନ ହସିଲା ଲୋକ ହସିବ । କାହାରି ମୁହଁରେ କଥା ନ ଦେଖି ପୁଲିସ୍‌ସାହେବ ନିରାଶ ହୋଇ କହିଲେ, "ତେବେ କଅଣ ଆପଣମାନେ ସମସ୍ତେ ଗୁଲିଖଟି ପାଖରେ ମୁଣ୍ଡ ନୁଆଁଇଲେ ? ସମସ୍ତେ କଅଣ ନପୁଂସକ ! ଜଣେ ହେଲେ ମର୍ଦ୍ଦ ନାହିଁ ?"

ସଭା ପଛରେ ବସିଥିବା ରଘୁ ସବ୍‌ ଇନ୍‌ସପେକ୍ଟର ଆଉ ସମ୍ଭାଳି ପାରିଲା ନାହିଁ । ଖିଦେ-ରସତକ ତାର କେଉଁଠି ଲୁଚିଥିଲା କେଜାଣି ଉସ୍‌କରି ବାହାରି ପଡ଼ି ତା ଶିରା ପ୍ରଶିରାରେ ଖେଳିଯାଇ ରକ୍ତକୁ ଉଷ୍ମ କରିଦେଲା ।

ମୂଷା ଦେଖି ବଗଡ଼ ଫୁଲିଲପରି ସେ ଫୁଲିଗଲା । ତା ପାଟିରୁ ବାହାରିପଡ଼ିଲା, "ନାଁ, ସମସ୍ତେ ନପୁଂସକ ନୁହନ୍ତି । ମର୍ଦ୍ଦାନା ଲୋକବି ଅଛନ୍ତି ।" ସମସ୍ତେ ତା ଆଡ଼କୁ ଚାହିଁଲେ । ଜଣେ ଚୁପ୍ ଚୁପ୍ କରି ଆଉ ଜଣକ କାନରେ କହିଲା, 'ଏଃ କମ୍ କାଡ଼ୁମର୍ଦ୍ଦନ ?'

ପୁଲିସସାହେବ ପଚାରିଲେ, "ପାରିବେ ଆପଣ ? ଆପଣଙ୍କ ଉପରେ ନିର୍ଭର କରିବି ? ପୋଲିସ ଖ୍ୟାତି ରଖି ପାରିବ ?" ସେ ଉତ୍ତର ଦେଲା, "ହଁ ରଖିବି, ମାତ୍ର ମୋ କର୍ମରେ ମୋତେ ପୂର୍ଣ୍ଣ ସ୍ୱାଧୀନତା ଦିଆଯିବା ଦରକାର । ଗୁଲିଖଟିକୁ ନଷ୍ଟ କରିବାକୁ ହେଲେ ତାକୁ ଚେର ସହ ଓପାଡ଼ିବାକୁ ପଡ଼ିବ । ଚେରକୁ ତାଡ଼ିବାକୁ ହେଲେ ସେମାନଙ୍କ ସହ ମିଶିବାକୁ ପଡ଼ିବ । ମିଶିବାକୁ ହେଲେ ସେମାନଙ୍କ ଭିତରୁ ଜଣେ ବୋଲି ନିଜକୁ ସଜାଇବାକୁ ପଡ଼ିବ । ସେମାନଙ୍କ ସହିତ ବନ୍ଧୁ ହୋଇ, ସେମାନଙ୍କୁ ଧୀରେ ଧୀରେ ଶିକ୍ଷା ଦେଇ, ସେମାନଙ୍କ ମନ ପରିବର୍ତ୍ତନ କରାଇ, ସେହିମାନଙ୍କ ଦ୍ୱାରା ଗୁଲିଖଟିର ଚେର ଓପଡ଼ାଇବାକୁ ହେବ । ସେଥିପାଇଁ ଦରକାର ସମୟ, ଧୈର୍ଯ୍ୟ ଓ ନିରବଚ୍ଛିନ୍ନ ଉଦ୍ୟମ ।"

ପୁଲିସସାହେବ ଖୁସି ହୋଇ ଛଅମାସର ସମୟ ଓ ସ୍ୱାଧୀନତା ରଘୁ ସବ୍-ଇନ୍ସପେକ୍ଟରକୁ ଦେଲେ । ଈର୍ଷାନ୍ୱିତ ହୋଇ କେତେଜଣ ଭାବିଲେ, "ଓଃ !.ଏତିକ ବୁଦ୍ଧି ଯାହା ଆମ ମୁଣ୍ଡରେ ନ ଉଠିଲା, ଉପାୟଟା ବାସ୍ତବିକ ଅବ୍ୟର୍ଥ । ବାଜିମାରି ନେଲୁରେ, ରଘୁ ବାଜିମାରି ନେଲୁ ! ଛଅମାସ ପରେ ଇନ୍ସପେକ୍ଟର ।

ଖଟିରେ ସେଦିନ ବେଶି ଲୋକ ଦେଖି ବଟିଆ ଧାର୍ କାରବାର ଏକାବେଳେକେ ବନ୍ଦ କରିଦେଲା । ଦିନଯାକ ବୁଲି ବୁଲି ପାହୁଲଟାଏ ବି ହାତ ପେଠ କରି ନ ପାରିଥିବା ଗୋଲିଆମାନେ ଘୋର ପ୍ରତିବାଦ କଲେ । କରିବାର କଥା, ଥିଲା ନ ଥିଲାକୁ ଯଦି ବଟିଆ ଚଳାଇ ନ ନିଏ ତେବେ ସେମାନେ କାହିଁକି ତାକୁ ରୋଜଗାର ବେଳେ ପାଞ୍ଚ ଟଙ୍କାର ଜିନଷକୁ ପାଞ୍ଚ ପଇସାରେ ଦେବେ । କଥାଟା ଠିକଏ ଉଣ୍ଡିକୁ ଗଲାରୁ ବଟିଆ ଠିକଏ ନଇଁ ପଡ଼ିଲା । ଟଙ୍କେକଆକୁ ଆଠଣିଆ, ଆଠଅଣିଆକୁ ଚାରଣିଆ ଗୋଳି ଦେଇ ସନ୍ତୁଷ୍ଟ କରିବାକୁ ଯାଉଛି, ଠିକ୍ ଏହି ସମୟରେ ଦୂରରୁ ପାନ ଦୋକାନି ଧରମାର ପାଟି ଶୁଭିଲା, "କାଳିଗାଈ……ଆ ।" ବଟିଆ ଚମକି ପଡ଼ି ସମସ୍ତଙ୍କୁ ସତର୍କ କରିଦେଲା, "ହେ ହୁସିଆର, କାଏ

ଗୋଟେ ନାଲମୁଣ୍ଡିଆ ଆସିଲାଣି । ଶଳେ ବସେଇ ଉଠେଇ ଦେବେନା ।" ପୁଣି ଆବାଜ ଶୁଭିଲା, "ଯାଉଛୁ ଯାଉଛୁ ।" ବଟିଆ ଚଟାପଟ୍ ସାଜ ସରଞ୍ଜାମ ଗୋଟିଏ ଟିଣ ଡବା ଭିତରେ ଭର୍ତ୍ତି କରି ଦେଇ ବାଡ଼ିଆଡ଼େ ମୁତିବା ଜାଗାରେ ପୋତିଦେଲା ଓ ଭଲଲୋକ ପରି ଘର ଭିତରେ ଆସି ବସିଲା । ପୁଣି ଆବାଜ ଆସିଲା, "ବାଟୁ ବାଟୁ ଭୁ ବାଟୁ ବାଟୁ ଭୁ ।" ବଟିଆ ଫୁସ୍ ଫୁସ୍ କରି ସମସ୍ତଙ୍କୁ କହିଲା, "ଶଳା ଯମ ଆସିଗଲା ! ଯିଏ ପାରୁଛ ଖସ ।" ଦୁଇ ତିନିଟା ଗଞ୍ଜା ଗୋଲିଅର ପଛପଟ ବାଡ଼ ଭାଙ୍ଗି ଖିଦ୍‌ଖାଦ୍ ହୋଇ ଡେଇଁ ପଳାଇଲେ । ବଧଡ଼ା ଗୋଲି ମାଡ଼ୁଆଙ୍କ ବେଖାତିର ଭାବରେ ସେହିଠାରେ ବସି ରହିଲେ ।

ମିନିଟକ ବାଦ୍ ରଘୁ ସବ୍-ଇନ୍‌ସ୍‌ପେକ୍‌ଟର ସେ ଘର ଭିତରକୁ ପଶିଆସି ନଡ଼ିଆ ପତ୍ରର ଚଟ୍ଟା ଉପରେ ବସିଗଲେ ଓ ହସି ହସି ପଚାରିଲେ, "କି ବଟ, ସବୁ ଭଲ ?" ଅପ୍ରାକୃତିକ ଭାବରେ ଡେରକରି ବଟିଆ କହିଲା, "ଆଜ୍ଞା, ହଜୁରଙ୍କ ଦୟାରୁ ଦୁଃଖେ ସୁଖେ ଚଳିଯାଉଛୁ ।" ଏତିକ କହିବା ପୂର୍ବରୁ ସେ ଭାବୁଥିଲା "ଶଳା କଂସାରି ଘରର ପାରାକୁ କୁଲ୍ ଡାଉଁ ଡାଉଁ କରୁଛୁ । ଏମିତିଆ କେତେ ଫେର ଦେଖିଛୁ । ଶଳା ବଟିଆକୁ ଏତେ ଓଲୁ ବୋଲି ପାଇଚ ।"

ଗୋଡ଼ହାତ ଲମ୍ବାଇ ଦେଇ ଓ ଗୋଟାଏ ସୁନ୍ଦର ବଟ ଆଡ଼କୁ ପକାଇ ଦେଇ ରଘୁ କହିଲେ, "ବଟ କପେ ଚା ଆଣ, ଆଉ ତା ସାଙ୍ଗକୁ କିଛି ଚାଟ୍ ।" ବଟିଆ ମନେ ମନେ ହସି ଭାବୁଥାଏ, "ଏଃ ! ଶଳା କମ୍ ଚାଲାଖ ! ଚାଟ୍ ମାଗିଦେଲେ ମୁଁ ଯେମିତି ଗୁଲି ଆଣିଦେବି । ପୁଅ ମୋତେ ସାଙ୍ଗେ ସାଙ୍ଗେ ଧରି ଥାନାକୁ ନେଇ ଯିବ, ଶଳା ଓଲୁଙ୍କ ବୋକଚା ବୁଢା ।" ପୁଣି ଥରେ ରଘୁ କହିବାରୁ ବଟିଆ ହାତଯୋଡ଼ି ପଚାରିଲା, "ଆଜ୍ଞା କି ଚାଟ୍ ଆଣିବି ?" ରଘୁ ହସି ହସି କହିଲା, "ଆରେ ତୁମ ଚାଟ୍ ମୋର ଲୋଡ଼ା ନାହିଁ । ପକୁଡ଼ି ପିଆଜ ଆଣ ।" ବଟିଆ ମୁଣ୍ଡ ଗୋଲମାଳ ହୋଇଗଲା । ମୁହୂର୍ତ୍ତିକ ମଧ୍ୟରେ ଚା, ପକୁଡ଼ି, ପିଆଜ ଆଣି ଥୋଇଦେଲା ଓ ନଜରର କମିଶନ ଦୁଇମଉସା ଭଲକରି ଅଣ୍ଟାରେ ମାରିଦେଲା । ଖାଉ ଖାଉ ରଘୁ କହି ଲଗିଲେ, "ମୁଁ ଭଲ କରି ଜାଣେ ତୁମ୍ଭେମାନେ ଗୋଲି ଖାଅ, ପରଘରେ ହାତ ଗଳାଅ, ଆଇନ ତୁମକୁ ଦୋଷୀ କୁହେ, ସମାଜ ତୁମକୁ ଘୃଣା କରେ; କିନ୍ତୁ ମୋର ଦୁସରା ମତ ।

ତୁମମାନଙ୍କଠାରେ ମୁଁ ଭଲ ଗୁଣ ବି ଦେଖିଛି । ତୁମମାନଙ୍କୁ ଯେ ଘୃଣା କରେ ସେ ମୋର ଶତ୍ରୁ । ଗୋଲି ଗୋଟାଏ ନିଶା । କୁହ ତ ଦେଖି କାହାର ନିଶା ଅଭ୍ୟାସ ନାହିଁ ? ପାନ, ଗୁଣ୍ଡାଖୁ, ବିଡ଼ି, ମଦ, ଭାଙ୍ଗ ପରି ଗୋଲି ଗୋଟାଏ ନିଶା । କାହିଁକି ତେବେ ସେମାନେ ତୁମମାନଙ୍କୁ ଘୃଣା କରିବେ ? ଆଉନ୍ତି କିଏ ଚୋରି ନ କରୁଛି ? ଚୋରି ନ କଲେ ପଇସା ପାଖରେ ଜମିବ କିପରି ?"

ବଟିଆ ଉତ୍‌ଫୁଲ୍ଲ ହୋଇ କହିଲା, "ଶଳେ ସମସ୍ତେ ଚୋର, ସମସ୍ତେ ଗୋଲିଖୋର । ଶଳେ ଆମକୁ ଶସ୍ତା ପାଇଛନ୍ତି ।" ରଘୁ ପୁଣି କହି ଲାଗିଲେ, "ମୁଁ କିନ୍ତୁ ଦୋଷିବି ଗ୍ରୁପ୍‌ରେ ଗଢା । ବିଶ୍ୱାସ କର ମୁଁ ତୁମମାନଙ୍କର ବନ୍ଧୁ । ତୁମମାନଙ୍କର ମଙ୍ଗଳ କରି ପାରିଲେ ମୁଁ ନିଜକୁ ଧନ୍ୟ ମନେ କରିବି ।" ବଟିଆ ମନରେ ଭାବିଲା, "ପୁଲିସକୁ ପୁଣି ବିଶ୍ୱାସ ! ବୋପା ସେ ପାଠ ଶିଖେଇନି ।"

ସେଦିନ ସେଲ୍‌ରେ ତ୍ରୁପ୍‌ସିନ୍ ପଡ଼ିଲା । ଆସିଲାବେଳେ ରଘୁ ବାବୁ ବଟିଆ ପିଠିରେ ହାତମାରି କହିଲେ, "ଗୋଲି ଖାଅ ମୋର ଆପତ୍ତି ନାହିଁ; କିନ୍ତୁ ଦେଖ ଗୋଲି ଯେପରି ତୁମକୁ ନ ଖାଏ । ତା ଅକ୍ତିଆରକୁ ଯେମିତି ତୁମେମାନେ ନଯାଅ ।" ମୁଣ୍ଡ କୁଣ୍ଡେଇ ଓ ଆଜ୍ଞା ଆଜ୍ଞା କହୁ କହୁ ବଟିଆ ଭାବୁଥାଏ, "ଶଳାଟା ଚଞ୍ଚଳ ଯାଉନି । ମଠେ ଭାଗବତ ଶୁଣଉଛୁ ।"

ଦିଏ ଥର ଖଟିକୁ ଯାଇ ରଘୁବାବୁ ପୂର୍ବପରି ଆଡ୍‌ଡ଼ା ଜମେଇଲେ ଓ ବଟିଆକୁ କହିଲେ, "ଖାଉନି, ତୁମେମାନେ ଖାଅ । ମୋତେ ଲୁଚେଇ ଲାଭ ନାହିଁ । ଯବାନ ଛୁଇଁ କହୁଚି ମୁଁ ରାମ ବିଷ୍ଣୁ କିଛି କହିବି ନାହିଁ । ବରଂ କେମିତି ଖାଆନ୍ତି ଦେଖିଲେ ଟିକିଏ ଖୁସି ହେବି ।

ଥୁବ ଲାଇନ୍ କ୍ଲିଅର ଦେଖିଲେ ଡାକଗାଡ଼ି ଯେମିତି ଢଡ଼ ଢଡ଼ ହୋଇ ଗୁଳିଯାଏ ବଟିଆ ମୂହଁରୁ ସେମିତି କଥାଗୁଡ଼ାକ ବାହାରି ଲାଗିଲା, "ଆଜ୍ଞା, ହଜୁର, ଆପଣ ମା ବାପ । ଆପଣଙ୍କୁ ଲୁଚଉନି, ଆଉ ଗୁଲି କାରବାର ମୁଁ କରୁନି; ଅଜ୍ଞା ବହୁତ ଚପଟ୍ ପଡ଼ିଲା, ବାଣ ଖାଇଲି, ନାଁ ଆଉ ଶଳା ଏ ବେଧୁଆ କାମ କରିବି ନାହିଁ । ଆଜ୍ଞା ପଇସେ ବି ପଇସା ଯାହା ମିଳିଲା ତା ସବୁ ସିପେହୀଙ୍କ ପେଟରେ ଗଲା । ଜୁଲୁମ୍ ବି ବଳି

ପଡ଼ିଲା । ହଜୁର, ଆପଣଙ୍କ ଦୟା ଛୁଇଁଛି ଯେ କାମ ମୁଁ ବଲକୁଲ୍ ତେଜ୍ୟା କରି ଦେଲି ।” ସାଙ୍ଗେ ସଙ୍ଗେ ସଙ୍ଗେ ମନ ବି କଣ୍ଡ ଗୃଲିଥାଏ, “ଆଉ ଭାଇ ଏକା ଦଶମାସିଆ ଛୁଆ, ବଟିଆକୁ ଏତେ ଓଲୁ ଭାବିଲୁଣି ? ଆଉ ତୁ ତ ଜୁ ତୋ ବୋପା ପୁଲିସ ଯାହେବ, ତା ବୋପା ଲାଟସାହେବ ବି ଆସିଲେ ବଟିଆ ପାଖରେ ଆମ୍ବୁଲ ଗୃଟିବେ ।”

ଧୈର୍ଯ୍ୟର ସହିତ ବହୁଦିନ ପାଣିରେ ଭାସିବା ପରେ ହଠାତ୍ ଦିନେ ରଘୁବାବୁଙ୍କ ଗୋଡ଼ ଭୂଇଁରେ ଲଗିଗଲା । ସେ ଦିନ କୋହଳି ପାଗ ହୋଇଥାଏ । ରଘୁବାବୁଙ୍କ ସଙ୍ଗେ ବଟିଆର ଆତ୍ମୀୟତା ଟିକିଏ ଉଳହବରେ ଚଢ଼ି ଉଠିଥାଏ । ରଘୁବାବୁ କହିଲେ “ବଟ, ଗଞ୍ଜେଇ ବଡ଼ ଗୋଟାଏ ଯୋଗାଡ଼ କେ । ଏ କୋହଳି ପାଗକୁ କାମ ଦେଖାଇବ ।” ସାଙ୍ଗେ ସାଙ୍ଗେ ମୁଣିରୁ ସୁଉକଟାଏ ବି କାଢ଼ି ପକେଇ ଦେଲେ । ବଟିଆ ଆଙ୍ଗୁଠି ମକଚି ମକଚି କହିଲା, “ବାବୁ ସତରେ ଖାଇବେ ନା କପଟ କରୁଚ ?” ରଘୁବାବୁ କହିଲେ, “ହାଇରେ ବଟ ଆଜଯାଏ ବି ମତେ ଚିହ୍ନିଲୁ ନାହିଁ । ତୁ କଅଣ ଜାଣିନୁ ମୁଁ ଏଠି ଏକା, ଇଚ୍ଛାଥିଲେ ବି ମୁଁ ତୁମର କଣ୍ଡୁ କ୍ଷତି କରିପାରିବ କି ?”

ପ୍ରଥମ ଥର ପାଇଁ ବଟିଆ ପରିଷ୍କାର ଦେଖିଲା ଯେ ତା ବନ୍ସୀ ଥୋପ ଆଡ଼କୁ ଗୋଟାଏ ପ୍ରକାଣ୍ଡ ରୋହିମାଛ ଧାଇଁ ଆସୁଛି । ସଙ୍ଗେ ସଙ୍ଗେ ସେ ଗଞ୍ଜେଇ ପୁଡ଼ିଆ, ବଡ଼ ଯୋଗାଡ଼ କରି ଆଣିଲା । ଗଞ୍ଜେଇ ବଡ଼ରୁ ଦୁଇଟାଣ ଦେଇ ରଘୁବାବୁ କହିଲେ, “ଆଃ ଏତକ ଆରାମ ଚିଜନା, ନ ଜାଣି ମୁନିଋଷିମାନେ ଖାଉଥିଲେ ।” ବଟିଆ ପାଟିରୁ ବାହାରି ପଡ଼ିଲା, “ଆଜ୍ଞା ତା ଆଗରେ ଏ କବା ଛାର·····”

ସେ ଜିନିଷଟା ପାଇଁ ବହୁ ଅନୁରୋଧ କରି ସୁଦ୍ଧା ରଘୁବାବୁ ସଫଳକାମ ହୋଇ ପାରିଲେ ନାହିଁ । ଗଞ୍ଜେଇ ମାଉଁଆ ହୋଇ ଯିବା ପରେ ରଘୁବାବୁ ବଟିଆକୁ ଟିକିଏ ବଙ୍କେଇ ପାରିଲେ । ଦିନେ ବଟିଆ କହିଲା, “ମୁଁ ତ ଆଉ ସେ ବେପାର କରୁନ । କହିବେତ ଗୋଟାଏ ଜାଗାରୁ ଆଣିଦେବ ।” ରଘୁବାବୁ ସମ୍ମତି ଜଣାଇବାରୁ ସେ ସଙ୍ଗେ ସଙ୍ଗେ ସବୁ ଯୋଗାଡ଼ କରିଦେଲା । ଗୋଟିଏ ଟାଣରେ ରଘୁବାବୁ ମଜଗୁଲ୍ । କୁଲୁରି ଉଠି ସେ କହିଲେ “ଆଃ ବଟିଆ ଏବେ ମୁଁ ଜାଣୁଛି ତୁମ୍ଭେମାନେ କାହିଁକି ଏହାକୁ ଛାଡ଼ି ପାରୁନାହିଁ !” ବଟିଆ ତାଟକା ହୋଇ ଦେଖୁଥାଏ ।

ସେହି ମାଛଟା ଝଟକ୍‌କରି ତା ଥୋପକୁ ଗିଳିଦେଲା । ଖଟିରୁ ବାହାରିଲା ବେଳେ ରଘୁବାବୁ ବୁଝେଇ କରି କହିଲେ, "ଦେଖ ବାଠ ଅକସ୍ମାତ୍ କେବେ କେମିତି ଖାଅ ପଛକେ, ନିତି ଯେମିତି ନ ଛୁଅଁ ଏ ଗୁଡ଼ାକ ଯେ ମଣିଷକୁ ଖାଇଯାଏ । ଜାଣିପାରୁଥିବ ତ ତୁମ୍ଭେମାନେ କଅଣ ଥିଲ, ବର୍ତ୍ତମାନ କଅଣ ହୋଇଛ । ତୁମ ହିତକୁ କହୁଚି, ଠିକଏ ଭଲକରି ଭାବ ।"

ସବୁ ଗୋଲଅରଙ୍କ ମେଳରେ ଡାକଫୁକାର ଗୋଲି ଖାଇବାକୁ ରଘୁବାବୁଙ୍କୁ ମାତ୍ର ତିନିମାସ ସମୟ ଲାଗିଲା । ତାଙ୍କ ଚାଲି ଚଳଣ, କଲାଓଠ ଓ ଝୁଡ଼ି ଯାଇଥିବା ଦେହ ଦେଖି ସଙ୍ଗୀ ସବ୍‌-ଇନ୍‌ସପେକ୍ଟରମାନେ ବିଚଳିତ ହେଲେ । ସେମାନଙ୍କ ସନ୍ଦେହ ମୋଚନ ପାଇଁ ରଘୁବାବୁ କହିଲେ, "ମୋତେ ସନ୍ଦେହ କରୁଛ କିରେ ! କାଦୁଅ ହାତ ନହେଲେ କାଦୁଅ ସଫା କରିବ କିପରି ? ମୁଁ ଠିକ୍ ଅଛି, ଏବେ ଯାଇଁ ଦେଖ କେତେଦୂର ସେମାନଙ୍କୁ ବାଟେଇ ଆଣିଲଣି ।" ସତକୁ ସତ ଅନ୍ୟାନ୍ୟମାନେ ତିନି ଚାରି ଥର ଚଢ଼ାଉ କଲାବେଳେ ଦେଖନ୍ତି ତ ସେମାନେ ସୁର ଛାଡ଼ି ଥାଆନ୍ତି, "ରଘୁପତି ରାଘବ ରାଜାରାମ । ପତିତ ପାବନ ସୀତାରାମ ।" ଖଞ୍ଜଣି ମାଡ଼ ବି ଚାଲିଥାଏ । ରଘୁବାବୁ ଓ ଖଟି ଭିତରେ ସେମାନେ କିଛି ଅଳକୁଳ ପାଉ ନ ଥାନ୍ତି ।

ଖଟିରେ ଲକ୍ଷ୍ମୀ ବିଜେ କଲେ । ଗୋଟିଏ ବଡ଼ ଝାଟିମାଟି କାନ୍ଥ ବଡ଼ ବର୍ଷାରେ ପଡ଼ିଯିବାରୁ ସେ କଡ଼ଟା ସାଙ୍ଗେ ସାଙ୍ଗେ ଇଟା କାନ୍ଥ ହୋଇଗଲା । ମାଟି ପିଣ୍ଡାଟା ଗୋଟା ସିମେଣ୍ଟରେ ମାଖିହୋଇ ଛନ ଛନ ହସିଲା, ବଣିଆ କିନ୍ତୁ ନିମକ୍‌ହାରାମ ନୁହେଁ । ତାର ବଡ଼ତିର ମୂଳରେ ଯେ ରଘୁବାବୁ ଏକଥା ସେ ସାଙ୍ଗମାନଙ୍କ ପାଖରେ ମାନିଯାଏ । ଜଣ ଜଣଙ୍କୁ ବି କହେ, "ମୁଁ କେଉଁଠେ ଓଲୁ ନଥିଲି, କାହାକୁ କଅଣ ବୋଲି ଭାବିଥିଲି । ରଘୁବାବୁ ନଥିଲେ ପୁଲିସ ଚଢ଼ାଉର ଦିନକ ଆଗରୁ ଜାଣି ପାରନ୍ତୁ ନା ? ତାଙ୍କର ଯୋଗୁଁ ସିନା ସିପାହୀଗୁଡ଼ାଙ୍କ ରଗ ଢିଲା ହୋଇ ଯାଇଛି, ହଁ ତାଙ୍କର ବଡ଼ତି କରୁଥାଆନ୍ତୁ ।"

ଅଧସ୍ତନ କର୍ମଚାରୀମାନଙ୍କଠାରୁ ଖଟିର ଅଙ୍ଗ ଲାବଣ୍ୟର ବୃଦ୍ଧି ବିଷୟ ଶୁଣି ସେହି ଥାନା ଓ ଆଖପାଖ ଥାନାମାନଙ୍କରେ ଚୋରିର ପ୍ରାବଲ୍ୟ ଦେଖି ସର୍ବୋପରି ରଘୁବାବୁଙ୍କ ବିରୁଦ୍ଧରେ ଦୁଇତିନିଟା ବେନାମୀ ଦରଖାସ୍ତ ଯାଇ ପୁଲିସ୍‌ସାହେବଙ୍କର ନିଦ ଭାଙ୍ଗିଲା । ମୁଣ୍ଡରେ ସେ

ବାରମ୍ବାର ବୃଶ୍ଚିକ ଦଂଶନ ଅନୁଭବ କଲେ । ପୂର୍ବାପର ସବୁଟା ସେ ବିଶ୍ୱାସ କରିପାରୁ ନ ଥାନ୍ତି । ଏକାବେଳକେ ଅବିଶ୍ୱାସ ବି କରିପାରୁ ନ ଥାନ୍ତି ।

ସତର୍କତାର ସହ ବହୁ ପରିଶ୍ରମ ପରେ ଦିନେ ପୁଲିସ୍‌ସାହେବଙ୍କର ପୂର୍ବାପର ବିଶ୍ୱାସ ହୋଇଗଲା । ସେଦିନ କଟିମିଟିଆ ଅନ୍ଧାରରେ ରଘୁବାବୁ ଜଣେ ସଙ୍ଗୀ ଗୋଲଖୋର ସଙ୍ଗେ ଖଟିରୁ ରିକ୍ସାରେ ବସି ଫେରୁଥାଆନ୍ତି । ଛଦ୍ମବେଶରେ ପୁଲିସ୍‌ସାହେବ ଓ ଆଉ ଦି'ଜଣ କର୍ମଚାରୀ ରିକ୍ସାର ପିଛୁ ଧରିଲେ । ସଙ୍ଗୀକୁ କହୁ କହୁ ରଘୁବାବୁ ଜହ୍ନ ପକେଇଲେ, "ଆଃ, ସେ ଶଳା ପୁଲିସ୍‌ସାହେବ ଯଦି ମୋତେ ଟିକିଏ ଚାନ୍ସ ଦିଅନ୍ତା ତେବେ ଯାଇଁ ମଜାଟା ବୁଝନ୍ତା, ଆଉ ଖଟିଟା ବି ଏକାବେଳକେ ପକ୍କା ହୋଇ ଯାଆନ୍ତା ।"

ରିକ୍ସାଟାକୁ ଅଟକାଇ ପୁଲିସ୍‌ସାହେବ ନିଜେ ରଘୁବାବୁଙ୍କ ହାତଟା ଧରି ଘୋଷାଡ଼ି ଆଣିଲେ ଓ ଗର୍ଜି ଉଠିଲେ "କି କାଡ଼ୁମର୍ଦ୍ଦନ ?"

— * —

# ଚୋପାଛଡ଼ା ଆଟମ୍

ବିଜ୍ଞାନ ପ୍ରତି ଯେତିକି ଆଗ୍ରହ ଥିଲା, ତାହା ହେଉଛି ଅଟଳ ନାଏକର । ବିଜ୍ଞାନ ପ୍ରତି ତାର ସତର ଅଣା ଏଗାର ପାହୁଲା ଅନୁରକ୍ତି ଦେଖି ଅନ୍ୟମାନେ ତାକୁ ଆଟମ୍ ନାଏକ ବୋଲି ଡାକୁଥିଲେ । ଦିନେ ତାର ନିରୁତା ବିଜ୍ଞାନ ପ୍ରେମର ସୁଅ ଫୁଲି ଉଠି ଏକାବେଳେକେ ବନ୍ଧ ଭାଙ୍ଗିଦେଲା । ସେଦିନ ସନ୍ଧ୍ୟାରେ ଜଣେ ସଭ୍ୟ ଜଣେ ଅଧା ବାବାଜୀଙ୍କୁ ସଙ୍ଗରେ ଧରି ଆସି ବଇଠକ ଘରେ ପହଞ୍ଚିଲେ । ଲୁଗା ଓ କାମିଜଟା ବାବାଜୀ ରଙ୍ଗର, ଆଉସବୁ ଘରୋଇ, ଅର୍ଥାତ୍ ନିଶ ଦାଢ଼ିନାହିଁ ମୁଣ୍ଡରେ ବୁଲେଇ ବେଣି । ଅଧା ବାବାଜୀଙ୍କୁ ଦେଖିବା ମାତ୍ରେ ଆଟମ୍ ନାଏକ ଆଖି ମେଲି କରି ନାକ ଫୁଲେଇଲେ, ସତେକି ଯେମିତି ଜଣେ ସୈନ୍ୟ ଶତ୍ରୁପକ୍ଷର ଗୋଟିଏ ଲୋକକୁ ଠାବକରି ପକାଇଲା । ସଭ୍ୟ ଜଣଙ୍କ ଅଧା ବାବାଜୀଙ୍କୁ ସମସ୍ତଙ୍କ ସହିତ ପରିଚୟ କରାଇ କହିଲେ, "ଏ ମହାଶୟ ଯୋଗ ଫୋଗ ବିଷୟରେ ବହୁତ କିଛି ଜାଣିଛନ୍ତି । ସାଧାରଣ ଲୋକ ତାଙ୍କଠୁଁ ଯାହା ଯାହା ଅଭ୍ୟାସ କରି ଉପକାର ପାଇ ପାରିବେ ସେ ବିଷୟରେ ସେ କିଛି ଆମ୍ଭମାନଙ୍କୁ ବତାଇ ଦେବେ । ଟିକିଏ ଟିକିଏ ସେଥିରୁ ଜାଣିଲେ କ୍ଷତିଟା କଅଣ ? ବିଶେଷରେ ଆମ୍ଭେମାନେ ଯାହା କରିପାରିବା ସେହି ବିଷୟରେ କେବଳ ସେ କହିବେ ।"

ସମସ୍ତେ ଉଣା ଅଧିକେ ରାଜି ହୋଇଗଲେ । କିନ୍ତୁ ଆଟମ୍ ନାଏକ । ନ ଜାଣି ସମସ୍ତେ ତା ନାଁ ଆଟମ୍ ଦେଇଥିଲେ ! ଗାଉଁ ଗାଉଁ

ହୋଇ ସେ କହିଲା, "ମୋ ଦେଇ ସେ ସବୁ ଚଳିବ ନାହିଁ । ମୁଁ ଅବୈଜ୍ଞାନିକ କୌଣସି ବିଷୟ ଶୁଣିବାକୁ ଚାହେଁ ନାହିଁ ।" ଧୈର୍ଯ୍ୟଧରି ଶୁଣିବାପାଇଁ ଅପେକ୍ଷା କରିବାକୁ ଅନୁରୁଦ୍ଧ ହୁଅନ୍ତେ ସେ ବିରକ୍ତ ହୋଇ କହିଲା, "ସେ ଗଞ୍ଜେଇଖିଆ କଥାଗୁଡ଼ାକ ମୋ ଦେହରେ ମୋଟେ ଯିବ ନାହିଁ; ମୁଁ ଯାହାକୁ ଭଲକରି ଜାଣୁଛି ତୁଚ୍ଛା ମିଛ, ତାକୁ ଶୁଣିବି କେମିତି ?" ଅଧିକାଂଶ ସଭ୍ୟଙ୍କର ତାର ଶୁଣିବା ଉପରେ ଯେତେ ଆଗ୍ରହ ନ ଥିଲା, ସେତେ ଥିଲା ତାର ବିରକ୍ତ ହେବାକୁ ମଜା ପାଇବାକୁ । ତେଣୁ ଗଣ ନିୟମ ହାତଧରି ଆଦି ପନ୍ଥାମାନ ଅବଲମ୍ବନ କରି ସମସ୍ତେ ତାକୁ କୌଣସି ମତେ ଅଟକେଇ ରଖିଲେ ।

ବକ୍ତୃତା ଦେଇ ଦେଇ ଅଧା ବାବାଜି କହିଲେ "ଦୁଃଖର କଥା ଆଜି କାଲିର ଲୋକମାନେ ଆମର ପୁରାଣଯୁଗର ମୁନିଋଷିମାନଙ୍କର ଅମୂଲ୍ୟ ଉପଦେଶଗୁଡ଼ିକ କୁସଂସ୍କାର ବୋଲି ଫିଙ୍ଗି ଦେଉଛନ୍ତି । ସେମାନେ ମନ୍ତ୍ର ତନ୍ତ୍ରାଦି ବିଷୟରେ ଯାହା କିଛି ଜ୍ଞାନ ଦେଇ ଯାଇଛନ୍ତି ତାହାକୁ ଭ୍ରମାତ୍ମକ ଅସିଦ୍ଧ ବୋଲି ଅନାୟାସରେ କହିଦେଉ ଅଛନ୍ତି । କେହି-ହେଲେ ପରୀକ୍ଷା କରି ଦେଖୁ ନାହାନ୍ତି ସେ ସବୁ ସତ୍ୟ କି ଅସତ୍ୟ । କୌଣସି ପ୍ରକାର ସାଧନା ନ କରି ସୁଦ୍ଧା ଏ ପ୍ରକାର ମତ ପୋଷଣ କରିବାରେ ତିଳେ ହେଲେ କୁଣ୍ଠାବୋଧ କରୁ ନାହାନ୍ତି ।" ଆଟମ୍ ନାଏକ ପାଟିରୁ ଫର୍ ଫର୍ କରି ବାହାରିପଡ଼ିଲା—"ଆପଣ କହିବେ ଯେ ଆମର ପୂର୍ବପୁରୁଷ ଢିଙ୍କିରେ ଚଢ଼ି ଗ୍ରହ ଉପଗ୍ରହକୁ ଯାଉଥିଲେ । ମଟର କୁଆଡ଼େ ଗଲା, ଏରୋପ୍ଲେନ୍ କୁଆଡ଼େ ଗଲା, ଯାନ ହିସାବରେ ମିଳିଲା ତାଙ୍କୁ ଗୋଟିଏ ଢିଙ୍କି । ଏ କଥା ବିଶ୍ୱାସ ନ କରିବାରୁ ଯଦି ଆମେ ଦୋଷୀ ହେଲୁ ତେବେ ଆମର କିଛି ଆପତ୍ତି ନାହିଁ ।" ଆଉଁସା ଆଉଁସି କରି କେତେଜଣ ତାଙ୍କୁ ଶାନ୍ତ କରାଇ ଦେବାରୁ ଅଧା ବାବାଜି ପୁଣି କହି ଲାଗିଲେ, "ଅବଶ୍ୟ ଏଇଟା ଠିକ୍ ଯେ, ଆମର ଶାସ୍ତ୍ର ସବୁ କାଳକ୍ରମେ ଅଶିକ୍ଷିତ ଲୋକମାନଙ୍କ ହାତରେ ପଡ଼ିବାରୁ ତହିଁରେ କେତେକ ପ୍ରମାଦପୂର୍ଣ୍ଣ ବିଷୟ ପଶିଯାଇଛି । ଏହି ପ୍ରମାଦକୁ ବର୍ଜନ କରି ଖାଣ୍ଟି ଜିନିଷକୁ ଆମର ଗ୍ରହଣ କରିବା ଉଚିତ୍, ଗ୍ରହଣ କରିବା ପୂର୍ବରୁ ଅନ୍ତତଃ

ପରୀକ୍ଷାକରି ଦେଖିବା ଉଚିତ । ଆଂଶିକ ଭୁଲ୍ ପାଇଁ ସମସ୍ତ ଶାସ୍ତ୍ରକୁ ବର୍ଜନ କରିବା ଉଚିତ ନୁହେଁ ।"

ଆଉ ଆଟମ୍‌କୁ ସମ୍ଭାଳେ କଏ ? ପ୍ରତିବାଦଟା ଫାୟାର ବ୍ରିଗେଡ୍ ହୋସ୍ ମୁହଁରୁ ପାଣି ବାହାରିଲା ପରି ଛୁଟି ଆସିଲା । ସେ କହିଲା "ରଖନ୍ତୁ ରଖନ୍ତୁ, ବାଛିବ କାହାକୁ ? କମ୍ବଳଯାକ ତ ବାଳ । ଆଜ୍ଞା କହିଲେ, ଅଗସ୍ତି ପୃଥିବୀର ତିନିଭାଗ ଜଳକୁ ଚଳୁ କରିଦେଲେ । ତିନିଭାଗ ପଦାର୍ଥ, ଭାଗେ ପଦାର୍ଥ ଭିତରେ ଥିବା ଏକ ମଣିଷ ପେଟ ଭିତରେ ରହିଲା କେମିତି ? ଆଉବି ଚଳେ ଲୁଣପାଣି ପିଇଦେଲେ ବାନ୍ତି ହୋଇ ପଡ଼ୁଛୁ, ଏତେ ଲୁଣପାଣି ପେଟରେ ଠାକଲା କେମିତି ? ତା ଉପରେ ପୁଣି ମାଛ, ମଗର, ତିମି ଅଛନ୍ତି । ଏ ଗୋଲଗଟି କଥାରୁ କେଉଁ ଅଂଶଟା ସତ ବୋଲି ଆମେ ବାଛିବା ? ଯେଉଁ ଗୋଲଖୋର ଏତକ କହିପାରେ ତା'ର ଆଉ କେଉଁ କଥାରେ ବିଶ୍ୱାସ ହେବ ? ହଉ ହଉ କଅଣ କହୁଛନ୍ତି କହିଯାଆନ୍ତୁ ।"

ଅଧା ବାବାଜି କହି ଗଲେ, "ଅନେକ ସମୟରେ ଲୋକେ ପ୍ରକୃତ ଅର୍ଥ ବୁଝି ନ ପାରି ଅନର୍ଥ କରି ବସନ୍ତି । ମୁଁ ମାନି ନେଉଛି ସେତକ ସବୁ ଭୁଲ । ଯା ବୋଲି କଅଣ ଆମର ଯୋଗଶାସ୍ତ୍ର ଭୁଲ ? ଅଷ୍ଟାଙ୍ଗ ଯୋଗରେ କଅଣ ସତ୍ୟତା ନାହିଁ ?"

ଆଟମ୍ ଟଳେଇ ଉଠିଲା; "ଲୁଚ୍ଛା ମିଛ, ଲୁଚ୍ଛା ମିଛ, ନାକ ଚିପି ଏପାଖ ସେପାଖ ନିଶ୍ୱାସ ନେଲେ ଲୋକେ ଯଦି ଅଣିମାଦି ଅଷ୍ଟ ଐଶ୍ୱର୍ଯ୍ୟ ପାଇ ଯାଉଥାଆନ୍ତେ ତେବେ ଆପଣ ଏପରି ଏଠାରେ ଗପୁ ଥାଆନ୍ତେ କାହିଁକି ?"

"ଏକାବେଳେକେ ମିଛବୋଲି ଉଡ଼ାଇଦେବା ପୂର୍ବରୁ ଭଲ ଭାବରେ ଅଧ୍ୟୟନ କରନ୍ତୁ । ଉପଦେଶକୁ ବିଶ୍ୱାସ କରି ସାଧନ କରନ୍ତୁ । ତାପରେ ଅନ୍ତତଃ ମିଛ କହିଲେ ଚଳନ୍ତା । ଅଷ୍ଟାଙ୍ଗ ଯୋଗ ତ ବହୁ ସାଧନାସାପେକ୍ଷ । ତାକୁ ଛାଡ଼ି ଦିଅନ୍ତୁ । ମୁଁ ବର୍ତ୍ତମାନ ଗୋଟିଏ ଅତି ସହଜସାଧ୍ୟ ବିଷୟ କହୁଚି; ଏହାକୁ ନିଷ୍ଠାର ସହି ସାଧନା କରନ୍ତୁ, ଦେଖିବେ ଫଳ ପାଉଛନ୍ତି କି ନା ?"

ସମସ୍ତେ ଆଗ୍ରହର ସହିତ "କହନ୍ତୁ, କହନ୍ତୁ" ବୋଲି ପାଟିକରି ଉଠିଲେ । ଆଟମ୍‌ର ପ୍ରତିବାଦ ସେ ପାଟିରେ ଲୁଚିଗଲା । ଅଧା ବାବାଜି କହି ଲାଗିଲେ— 'ସନ୍ଧ୍ୟା ସମୟରେ ଗୋଟିଏ ନିର୍ଜନ ପ୍ରକୋଷ୍ଠକୁ ପରିଷ୍କାର ପରିଚ୍ଛନ୍ନ କରି ତହିଁରେ

ଗୋଟିଏ ବିଓ୍ଟି ଉଦ୍‌ବର୍ତ୍ତି ଜାଳି କବାଟ ଝରକା ଲଗାଇ ଦେଇ ବସିବ । ଅନ୍ଧାରୁଆ ଘର ଭିତରେ ଗୋଟିଏ ଘିଅଦୀପ ଜାଳି ତାକୁ ନିରୀକ୍ଷଣ କରିବ । ଦୀପଠାରୁ ଟିକିଏ ଦୂରରେ ବସିବ । ମନରୁ ସମସ୍ତ ଚିନ୍ତା ଦୂରକରି ଦୀପ ମଧ୍ୟରେ ଦୃଷ୍ଟି ସ୍ଥାପନ କରିବ । ଏହିପରି ଦୈନିକ ଅଧ-ଘଣ୍ଟାଏ ଲେଖାଏଁ ଛଅସାତ ମାସ ସାଧନା କରନ୍ତୁ । ଫଳ ବାଳେ ଜାଣି ପାରିବେ ।” ଆଟମ୍ ଖତେଇ ହେଲାପରି କହିଉଠିଲା, “କଅଣ ଭଗବାନ ପାଲଟି ଯିବେ ?”

କେତେଜଣ କହି ଉଠିଲେ, “ପରୀକ୍ଷା କର, ଦେଖ କଅଣ ହେଉଛି ।”

ବାଦ ପ୍ରତିବାଦ କ୍ରମେ କ୍ରମେ ଉଷ୍ଣ ହୋଇ ଗରମାଗରମ ହୋଇ ଉଠିବାରୁ ଆଟମ୍ ବିରକ୍ତ ହୋଇ କହିଲା, “ମୁଁ ଏ ଗୋଲଖିଆ କଥାରେ ବିଶ୍ୱାସ କରି ପାରିବ ନାହିଁ । ଯାହାର ଇଚ୍ଛା ହେଉଛି ସେ କରୁ ।” ଏତିକି କହି ସେ ସେଠାରୁ ଭୂତପରି ଉଠି ଚାଲିଗଲା ।

ଚାଲିଯିବା ପରେ ଗଣ୍ଡଗୋଳର ମାତ୍ରା ବଢ଼ିଗଲା । କିଏ କହିଲା ଛତରା, କିଏ କହିଲା ଗ୍ରେପାଛଡ଼ାଟାଏ, ଆଉଜଣେ କହିଲା, “ଏକ ବାଗିଆଟାଏ, କୋଉ କଥାକୁ ଟିକିଏ ହେଲେ ବିଶ୍ୱାସ କରିବ ନାହିଁ ।”

ରବି ପ୍ରତିବାଦ କରି କହିଲା, “ତୁମେ କହୁଛ ସେ ଗ୍ରେପାଛଡ଼ାର ବିଶ୍ୱାସ ନାହିଁ ? ନିଜନିଜର ଗୁଡ଼ାକ ଭୁଲ ଓ ବାହାର ଆମଦାନୀ ଜିନିଷଗୁଡ଼ାକ ଠିକ୍ ବୋଲି ତାର ପୂରାପୂରି ବିଶ୍ୱାସ ଅଛି । ତାକୁ କଅଣ ଦେଖିନ, ହାଇଡ୍ରୋଜେନ, ଜେଟ୍‌ପ୍ଲେନ, ସାଉଁର କହିଲେ କେମିତି ସେ କାନ ଡେରି ଆଖି ତରାଟି ସବୁ ପିଇଯାଏ । ଏ ବାବୁ ଯେଉଁ ବିଷୟ କହିଲେ ସେଥିରେ ଅବିଶ୍ୱାସ କରିବାର କଅଣ ଥିଲା । ସେ ଗ୍ରେପାଛଡ଼ାକୁ ଯଦି ଗ୍ରେପାଛଡ଼ା ଭାଷାରେ କୁହାଯାଇଥାନ୍ତା ତେବେ ସେ ଠିକ୍ ଶୁଣିଥାନ୍ତା ଓ ସେହି ଅନୁଯାୟୀ ସାଧନା ବି କରିଥାଆନ୍ତା ।”

କେତେଜଣ ଏ କଥାରେ ଏକମତ ନ ହେବାରୁ ରବି ଜୋରଦେଇ କହିଲା, “ମୁଁ ଏହା ପ୍ରମାଣ କରିଦେବି । ଏ ବାବୁଙ୍କ କଥାରେ ସେ ଅନ୍ଧାର ଘରେ ଦୀପକୁ ଚାହିଁବା ପାଇଁ ରାଜି ହେଲା ନାହିଁ, ଅଥଚ ଦେଖିବ ଏମିତି ଗୋଟାଏ ପାଲି ଲଗେଇ ଦେବି ଯେ ନାକ ବାଳ

ଧରି ଏକ ଗୋଡ଼ିଆ ହୋଇ ୩ତି ପନ୍ଦର ମିନଟ୍ ସମସ୍ତଙ୍କ ଆଗରେ ଠିଆ ହେବ ।” ଏହା ପ୍ରମାଣ କରିବାକୁ ରବି ଷଡ଼ଯନ୍ତ୍ର ଜାଲ ମେଲାଇଲା ।

ଆଗରୁ ନିର୍ଦ୍ଧାରିତ ହୋଇଥିବା ଯୋଜନା ଅନୁଯାୟୀ ରବି ପ୍ରସିଦ୍ଧ ବୈଜ୍ଞାନିକ ବ୍ୟୋମକେଶଙ୍କୁ ସଙ୍ଗରେ ଧରି ବୈଠକ ଘରେ ପହଞ୍ଚିଲା । ଗୋଟିଏ ମେଡ଼ିକାଲ କଲେଜ ଗ୍ରନ୍ଥାଗାରରୁ ବଡ଼ ବଡ଼ କେତେଗୁଡ଼ାଏ ଦେହର ଛବି ଉଠାଇକରି ଆଣିଥିଲା । ଆନାଟମି, ଫିଜିଓଲଜିର ମୋଟା ମୋଟା କେତେଟା ବହି ଯୋଗାଡ଼ କରିଥିଲା । ବୈଜ୍ଞାନିକ ଜଣକ କୋଟ ପେଣ୍ଟପିନ୍ଧି ପୂରା ସାହେବ ପରି ଦିଶୁଥାଆନ୍ତି । ମୁଣ୍ଡରେ କିନ୍ତୁ ଗାନ୍ଧି ଟୋପି ଥାଏ । ଆଟମର ମୁଣ୍ଡ ଭକ୍ତିରେ ନଇଁ ପଡ଼ୁଥାଏ । ବଡ଼ କୃତାର୍ଥ ହୋଇଗଲା ପରି ଦେଖାଯାଉଥାଏ । ପରିଚୟାଦି ପରେ ବ୍ୟୋମକେଶ ବକ୍ତୃତା ଦେଲେ, “ବିଂଶ ଶତାବ୍ଦିର ଶେଷାର୍ଦ୍ଧରେ ଫିଜିକ୍ସର ଚରମ ବିକାଶ ହୋଇ ଯାଇଛି । ଏବେ ବୈଜ୍ଞାନିକମାନଙ୍କର ସାଇକୋଲଜି ଆଡ଼କୁ ଦୃଷ୍ଟି ଆକୃଷ୍ଟ ହେଉଅଛି । ଏ ‘ସାଇକ୍’ ଜିନିଷଟା ବାସ୍ତବିକ ଓ୍ୱାଣ୍ଡର୍‌ଫୁଲ । ହିପ୍‌ନୋଟିଜିମ, ମେସ୍‌ମେରିଜିମ୍ ଦ୍ୱାରା ସାଇଣ୍ଟିସ୍ଟମାନେ ଏହି ସାଇକ୍‌ର ସନ୍ଧାନ କିୟତ୍‌ପରିମାଣରେ ପାଇଛନ୍ତି । ଖୁବ୍ ନିକଟରେ ସାଇକୋଲଜିଷ୍ଟ ହିଣ୍ଡେନ୍‌ବର୍ଗ ଓ ଘାଣ୍ଟେନ୍‌ବର୍ଗ ଏକାଠି ରିସର୍ଚ୍ଚ କରି ଏକ ପଦ୍ଧତି ଆବିଷ୍କାର କରିଛନ୍ତି । ତାହାର ନାମ ହେଉଛି କର୍କଟିଜିମ । ଏହାଦ୍ୱାରା ୱିଲ-ଫୋର୍ସର ଅସୀମ ଶକ୍ତିକୁ ମଣିଷ କାମରେ ଲଗାଇପାରିବ । ହାଇଡ୍ରୋଜେନ ଓ କୋବାଲ୍‌ଟ ବମ୍ ସବୁ ଏହି ଶକ୍ତି ଆଗରେ ଅତି ତୁଚ୍ଛ । ଆପ୍ଲାଏଡ଼ କର୍କଟିସ୍‌ମ୍ ଅବଶ୍ୟ ସମୟ ସାପେକ୍ଷ । ରେଜଲ୍‌ଟ ପାଇବାକୁ ହେଲେ ଅବଶ୍ୟ ଚୌରପାଞ୍ଚ ବର୍ଷ ପ୍ରାକ୍‌ଟିସ୍ ଦରକାର କିନ୍ତୁ ଚରି ମାସର ପ୍ରାକ୍‌ଟିକରେ ଆପଣ ଫଳ ଦେଖିପାରିବେ । ଗ୍ରେଟ ଗ୍ରେଟ ଅଦ୍ଭୁତ କାମ କରିପାରିବେ । ସେନ୍‌ସ୍ ସବୁ ବଡ଼ ତୀକ୍ଷ୍ଣ ହୋଇଯିବ । ଏଇଠାରେ ବସି ଲଣ୍ଡନ୍ ଦେଖି ପାରିବେ । ବାଗ୍‌ଦାଦ ବଗିଚାର ଗୋଲାପ ସୌରଭ ଆଘ୍ରାଣ କରିପାରିବେ । ସାହାରା ମରୁଭୂମିର ଉତ୍ତାପ ଓ ଭର୍କୋନସ୍କରର ଶୈତ୍ୟ ଏଇଠାରେ ଅନୁଭବ କରି ପାରିବେ । ଏସ୍କିମୋର ତରକାରୀ ଚାଖି ପାରିବେ । ବର୍ତ୍ତମାନ କିପରି ଏହାକୁ ପ୍ରାକ୍‌ଟିସ୍ କରିବାକୁ ହେବ ତାହା କହୁଛି ।”

ଜଣେ ଧଜଣ ଏହି ସମୟରେ ଟିକିଏ ଗୁଡ଼ୁରୁ ଗାଡ଼ରୁ ହେବାରୁ ଆଟମ୍ ଏକାବେଳକେ ଅଗ୍ନି ଶର୍ମା । ସେ ଦୁହିଁଙ୍କୁ ମାରେ କ ନ ମାରେ, ଝିଂଝାଡ଼ ପକାଇ କହିଲା, "ନ ଶୁଣିବ ଯଦି ଗୁଲିଯାଅ, ଡିଷ୍ଟର୍ବ୍ କରୁଛ କାହିଁକି ? ଘୁଷୁରୀଙ୍କୁ ପାଚିଲା କଦଳୀ ଭଲ ଲାଗିବ କୁଆଡ଼ୁ !"

ବକ୍ତା, ରବି ଓ ଆଉ କେତେଜଣ ସଭ୍ୟ ମୁହଁ ବୁଲାଇ ଦେଇ ମନ ଭିତରେ ପେଟେ ପେଟେ ହସିଗଲେ । ସମସ୍ତେ ଚୁପ୍ ହୋଇ ଗିବାପରେ ଆଟମ୍ ଅତି ବ୍ୟଗ୍ରଭାବରେ ଆରମ୍ଭ କରିବାକୁ ଅନୁରୋଧ କରିବାରୁ ବକ୍ତୃତା ପୁଣି ଆରମ୍ଭ ହେଲା ।

ଚିତ୍ର ସବୁ ଦେଖାଇ ଦେଖାଇ ଓ ମଝିରେ ମଝିରେ ମୋଟା ମୋଟା ବହି ଭିତରୁ କ'ଣ ସବୁ ଦେଖି ପକାଇ ବକ୍ତା କହିଲେ, "ଏହି ବ୍ରେନ୍ ହେଉଛି ସାଇକର ସ୍ଥାନ । ଏହି ସେଣ୍ଟରରୁ କେଂଦ୍ରୋଟ୍ ନର୍ଭ ବାହାରି ଅସଂଖ୍ୟ ସଂଖ୍ୟାରେ ବିଭକ୍ତ ହୋଇ ପ୍ରତ୍ୟେକ ମୁଣ୍ଡ ବାଳର ମୂଳକୁ ଯାଇଅଛି । ଭୃଗୁଡ଼ ସାହେବ ପରୀକ୍ଷା କରି ଦେଖିଲେ ଯେ କେବଳ ବାଳଛଡ଼ା ମୁଣ୍ଡର ଯଦି ଆଉ ସବୁ ବାଳ କାଟି ଦିଆଯାଏ ତେବେ କେଂଦ୍ରୋଟ ନର୍ଭର ଶକ୍ତି ବହୁ ଗୁଣରେ ବୃଦ୍ଧି ପାଇଯାଏ । ସେ ଆହୁରି ମଧ୍ୟ ଦେଖିଲେ ଯେ ବାଳ କେବଳ ମୁଣ୍ଡ ଉପରେ ଶୋଇ ପଡ଼ିଥିବା ବେଳେ ନର୍ଭ ଭିତରର ଇଲେକ୍ଟ୍ରୋ ମାଗ୍ନେଟିକ୍ ଡ଼େଭ୍ ସବୁ ସେଣ୍ଟର ଆଡ଼କୁ ଗତି କରେ ଓ ବାଳକୁ ଠିଆ କରାଇ ଧରିଲେ ବହିର୍ଗାମୀ ହୁଏ । ଠିକ୍ ଏହି ସମୟରେ ନାକର ଗୋଟିଏ ପୁଡ଼ାରେ ନିଶ୍ୱାସ ନେଇ ଅନ୍ୟ ପୁଡ଼ାରେ ଝମାଗତ ଗୁଡ଼ିଲେ ନାକରେ ଥିବା ସେଣ୍ଟ୍ରୁଟ୍ ନର୍ଭ ଉତ୍ତେଜିତ ହୁଏ ଓ ରେଡ଼ିଓ ଭଲ୍ଭ ପରି ବହିର୍ଗାମୀ ତରଙ୍ଗକୁ ବହୁଗୁଣ ତୀବ୍ରତର କରିଦିଏ । ମହାତ୍ମା ଭୃଗୁଡ଼ ଆହୁରି ବି ଦେଖିଲେ ଯେ ଶରୀରରେ ବାଲାନ୍ସ୍ ରଖୁଥିବା ବାଗ୍ଡ଼ମ୍କୁ ଠିକ୍ ଏହି ସମୟରେ ଷ୍ଟିମୁଲେଟ୍ କରାଗଲେ ଏହି ତୀବ୍ରତର ବହିର୍ଗାମୀ କେଂଦ୍ରୋଟ୍ ତରଙ୍ଗ ସବୁ ରେଡ଼ିଓ ତରଙ୍ଗ ପରି ପଦାକୁ ପ୍ରକ୍ଷିପ୍ତ ହୋଇଯାଏ । ଅଭ୍ୟାସ ବଳରେ ପୃଥିବୀର ଯେ କୌଣସି ଜାଗାରେ ମନକୁ କନ୍ସେନ୍ଟ୍ରେଟ କଲେ ଏହି କେଂଦ୍ରୋଟ ତରଙ୍ଗ ସବୁ ସେହି ସ୍ଥାନରେ କେନ୍ଦ୍ରୀଭୂତ ହୁଏ । ଏ ସ୍ଥାନର ସମସ୍ତ ବିଷୟ ଧୀରେ ଧୀରେ ଇନ୍ଦ୍ରିୟଗ୍ରାହ୍ୟ ହୋଇଉଠେ । ଆପଣମାନେ ଜାଣନ୍ତି ଗୋଟିଏ ଗୋଡ଼ରେ ଠିଆ ହେଲେ ବାଲାନ୍ସ୍ କପରି ତୀକ୍ଷ୍ଣ

ହୋଇଯାଏ । ବ୍ରେନ୍‌ସ୍ଥିତ ବାଟ୍‌ଡ୍ରମ୍‌ ଏହାଦ୍ୱାରା ଉତ୍ତେଜିତ ହୁଏ । ଏହା ପରୀକ୍ଷାକରି ମହାତ୍ମା ଭୃଗୁଡ ଏକସଙ୍ଗେ ତିନୋଟି ପ୍ରକ୍ରିୟା ଆରମ୍ଭ କଲେ । ମୁଣ୍ଡର ଆଗ ଅାଡ଼କୁ ଗୋଟିଏ କେଶଗୁଚ୍ଛ ରଖି ଆଉ ସବୁ କ୍ଷୌର ହୋଇ ପଡିଲେ ଓ ଗୋଟିଏ ହାତରେ କେଶଗୁଚ୍ଛକୁ ଟେକି ଧରିଲେ । ଅନ୍ୟ ହାତରେ ନାକ ଚିପିଧରି ଗୋଟିଏ ପୁଡ଼ାରେ ନିଶ୍ୱାସ ନେଇ ଅନ୍ୟ ପୁଡ଼ାରେ ଛାଡିଲେ ଏବଂ ଗୋଟିଏ ଗୋଡରେ ଠିଆ ହେଲେ ।

କୁର୍ କୁର୍ ହୋଇ ଦୁଇ ତିନିଜଣ ସଭା ଛାଡ଼ିଦେଇ ପଳାଇଲେ । ଆଟମ୍ ସେମାନଙ୍କୁ ଅଭଦ୍ର ବର୍ବର ଆଖ୍ୟା ଦେବାକୁ ଛାଡ଼ିଲା ନାହିଁ । ବକ୍ତା ପୁଣି କହିଲେ, ବନ୍ଧୁଗଣ ଓ ବନ୍ଧୁଗଣି ଏହିପରି ପ୍ରାକ୍‌ଟିସ୍ କରି ମହାତ୍ମା ଭୃଗୁଡ ବର୍ତ୍ତମାନ ଅତୁଳନୀୟ ଶକ୍ତିର ଅଧିକାରୀ ହୋଇଅଛନ୍ତି : ଏବେବି ସେ ପ୍ରାକ୍‌ଟିସ୍ କରୁଛନ୍ତି, ଉର୍ଦ୍ଧ ପାଞ୍ଚବର୍ଷ କାଳ ମହାତ୍ମା ଭୃଗୁଡ଼ଙ୍କର ଲାବୋରେଟରୀ ଆସିଷ୍ଟାଣ୍ଟ ହୋଇ ରହିଲା ପରେ ତାଙ୍କଠାରୁ ଏ ତଥ୍ୟ ଶିଖିଲି । ମାତ୍ର ଚାରିମାସ କଠିନ ପ୍ରାକ୍‌ଟିସ୍ ପରେ ମୁଁ ଗୋଟିଏ ଶକ୍ତିର ଅଧିକାରୀ ହୋଇ ପାରିଛି । ଆପଣଙ୍କ ଭିତରୁ ଜଣେ କାହା ସେ ପଟେ ରହି ଯାହା କରିବେ ମୁଁ ଏହିଠାରେ ଠିଆହୋଇ ତାହା କହିଦେଇ ପାରିବି ।"

ରବ ସ୍ପ୍ରିଙ୍ଗ୍‌ପରି ଉଠିପଡ଼ି କାହା ଆରପଟକୁ ଚାଲିଗଲା । ଆଟମ୍ ବକ୍ତାଙ୍କ ପାଖରେ ଠିଆ ହେଲା । ବ୍ୟୋମକେଶ ଗାନ୍ଧୀ ଟୋପିଟା ମୁଣ୍ଡରୁ କାଢ଼ିଲେ । ଆଟମ୍ ଅବାକ୍ ହୋଇ ଦେଖିଲା, ମୁଣ୍ଡ ଆଗ ଆଡ଼କୁ ଗୋଟିଏ ଚୁଟିଛଡ଼ା ଆଉ ସବୁ ଲଣ୍ଡା । ବ୍ୟୋମକେଶ ବାଁ ହାତରେ ଚୁଟିଟା ଧରି ଡାହାଣ ହାତରେ ନାକ ଚିପିଲେ ଓ ଏକ ଗୋଡ଼କିଆ ଠିଆ ହେଲେ । କିଛିକ୍ଷଣ ପରେ ପାଟିକରି କହିଲେ, "ଆପଣ ବର୍ତ୍ତମାନ ନିଜ କାନ ଧରି ବସ୍‌ଉଠ୍ ହେଉଛନ୍ତି । ବର୍ତ୍ତମାନ ଗୋଟିଏ ସିଗାରେଟ୍ ଲଗାଇବାର ଉପକ୍ରମ କରୁଛନ୍ତି ।" ଆଟମ୍ ଦଉଡ଼ିଯାଇ ଦେଖିଲା ତାହା ଅକ୍ଷରେ ଅକ୍ଷରେ ସତ୍ୟ । ବୈଜ୍ଞାନିକଙ୍କର ପାଦଧୂଳି ନେଇ ମୁଣ୍ଡରେ ମାରିବାକୁ ତାର ଭାରି ଇଚ୍ଛା ହେଉଥାଏ । ଜୋକପରି ତାଙ୍କଠି ଲାଗି ସବୁ ବୁଝୁଥାଏ । ବିଦାୟ ନେଇ ଗଲାବେଳେ ଆଟମ୍‌କୁ ବୁଝାଇ ଦେଲେ, "ଦେଖ ନିର୍ଜନ ସ୍ଥାନରେ ଏକାଗ୍ରତା ଦରକାର ହୁଏ ନାହିଁ । କସରତ୍ ନ କଲେ କାହାର

ଶକ୍ତ ବଢ଼େ ନାହିଁ । ଏକାଗ୍ରତା ବୃଦ୍ଧି ପାଇଁ କସରତ୍ ଦରକାର । ଲୋକ ମେଳରେ ଏକାଗ୍ରତାର କସରତ୍‌ଟା ଚମତ୍କାର ହୁଏ । ତେଣୁ ଏହି ଏକ୍‌ସର୍‌ସାଇଜ ସବୁ ଆପଣଙ୍କର କୌଣସି ନିର୍ଜନ ଜାଗାରେ ପ୍ରାକ୍ଟିସ୍ କରିବା ଦରକାର ନାହିଁ ।"

× × × ×

ତା ପରଦିନଠାରୁ ଆଟମ୍ ଗାନ୍ଧୀଟୋପି ମୁଣ୍ଡରେ ଦେଲା । ବୈଠକ ଘର୍‌କୁ ଯିବାରେ ଡେ଼ର ଦେଲା । ଦିନେ ରବି, ସମସ୍ତ ଊର୍ଣ୍ଣି ସମସ୍ତଙ୍କୁ ଦେଖାଇ ଦେଲା । ସମସ୍ତେ ଦେଖିଲେ ଆଟମ୍ ତା କୋଠରୀର ଦ୍ୱାର ଝରକା ସବୁ ମେଲାକରି ସୁଦ୍ଧା ମାଟିବଂଶ ଅବଧାନ ଦ୍ୱାରା ଦଣ୍ଡିତ ଛାତ୍ରପରି ନାକ ବାଳ ଧରି ଏକଗୋଡ଼ିଆ ହୋଇ ଠିଆ ହୋଇଛି । କର୍ କର୍ ହୋଇ ହସି ପଳାଇ ଆସିବାକୁ ସମସ୍ତଙ୍କୁ ବାଟ ଦିଶିଲା ନାହିଁ ।



# ଚୁଙ୍ଗୁଚୁଙ୍ଗିଆ ବାଙ୍କା

ତାଲିକା ଭିତରେ କଲେଜ ହଷ୍ଟେଲର ରାମ, ଦାମ, ଶାମ, ହରି, ଗୋପାଳ, ରଘୁ ଇତ୍ୟାଦିଙ୍କ ନାମ ଥାଏ ସତ ; କିନ୍ତୁ କେହି ହେଲେ ଜଣେ ସବୁକାମ ମୁଣ୍ଡକୁ ନେଇ ତୁଲେଇ ଦେବା ଲାଗି ଆଗଭର ହେଉ ନ ଥାନ୍ତି । ରଘୁ ବହୁତ ବିଚାରି କହିଲା, "ହେ ବାଙ୍କାକୁ ସାଙ୍ଗରେ ନେଲେ ସବୁ ତୁଟିଯାଆନ୍ତା । କୋଉ କାମଟା ତାକୁ ନ ଆସେ ? ଛତାକାଠି ମରାମତିଠାରୁ ରେଳ ଇଞ୍ଜିନ ପର୍ଯ୍ୟନ୍ତ ସବୁଥିରେ ହାତ ଲଗାଇ ପାରେ । ବଣଭୋଜି କାମଟା କିବା ଛାର ! ଗୋଟାଏ ଲୋକ, ରୋଷେଇ, ପାଣିବୁହା, କାଠହଣା, ମସଲାବଟା ଆଦି ସବୁକାମ ତୁଲେଇ ଦବ; ଆମେ ନିଶ୍ଚିନ୍ତରେ ମଉଜ କରି ପାରିବା ।" ହରି କହିଲା, "ହଁ ହଁ ବଡ଼ ବିଚକ୍ଷଣ ଲୋକଟାଏ ଏକା ! ଜାଣ ଗୋଟାଏ ଯନ୍ତ୍ର; କେତେବେଳେ ତାକୁ ଥୟ ଦେଖିବ ନାହିଁ, ଠିଆ ହୋଇଥିଲେ ଗୋଡ଼ହାତ କଥା କହୁଥିବ । ଠିକ୍ ଠିକ୍, ସେ ଗଲେ ସବୁକାମ ହୋଇଯିବ । ଆଚ୍ଛା ତାକୁ 'ଚୁଙ୍ଗୁଚୁଙ୍ଗିଆ ବାଙ୍କା' ବୋଲି କେତେଜଣ ଡାକନ୍ତି କାହିଁକି ?— ରଘୁ କହିଲା, "ଭଲ ପଚାରୁଛ, କାହିଁକି ଡାକନ୍ତି ତା'ର କଅଣ ଗୋଟାଏ କାରଣ ଅଛି ? କିଏ କଅଣ କୋଉଠି କହିଦେଇଥିବ, ସେଇଆକୁ ଯୋଡ଼ି ଲୋକେ ତାକୁ 'ଚୁଙ୍ଗୁଚୁଙ୍ଗିଆ ବାଙ୍କା' ବୋଲି ଡାକୁଥିବେ । ସେଥିରୁ ଆମକୁ କଅଣ ମିଳିବ ?" ଯାହାହେଉ ସର୍ବସମ୍ମତି କ୍ରମେ ବାଙ୍କା ଯିବାର ସ୍ଥିର କରାଗଲା ଓ ତା ଉପରେ ବଣଭୋଜିର ସମସ୍ତ ଭାର ନ୍ୟସ୍ତ କରାଗଲା ।

ସମସ୍ତେ ଠିକ୍ କରଥିଲେ ବଣଭୋଜଟା ନଗର ଡାକବଙ୍ଗଳାରେ ହେବ ବୋଲି । ବାଙ୍କା କିନ୍ତୁ ଜଗର କଲା, "ନା, ବଣଭୋଜ ବଣରେ ହେବ; ତେଣୁ ଚନ୍ଦକାବଣରେ ଥିବା ବକ୍ସିକୋଠିରେ କରାଯାଉ । ସେଠି ବଣ ଅଛି, ପୋଖରୀ ଅଛି, କୂଅ ଆଦିସବୁ ଅଛି ।" ସମସ୍ତେ କଥାଟା ମନକୁ ନେଲେ । ତେବେ କୋଠିଟା ସର୍ବସାଧାରଣଙ୍କର ନୁହେଁ । ବକ୍ସିସାହେବ ଅନୁମତି ଦେବେ କି ନାହିଁ, ସେ ବିଷୟରେ ସନ୍ଦେହ ପ୍ରକାଶ ପାଇଲା । ବାଙ୍କା ଗୋଟିଏ ବେପରୁଆ ଖଣ୍ଡିହସା ଦେଇ କହିଲା, "ବକ୍ସି ମୋ ହାତର କଥା । କେଜାଣି ଲକ୍ଷେ ଥର ତା କୋଠିକି ଯାଇଥିବି, ଆସିଥିବି ।" ସମସ୍ତଙ୍କ ମନ ଦୁଇଗୁଣ ଖୁସି ହୋଇଗଲା । ଜାଗାଟା ନିଃସନ୍ଦେହରେ ଭଲ । ତେବେ ବାଙ୍କା ଥିବାରୁ ସିନା ଏ ଜାଗା ପାଇବାରେ ସୁବିଧା ହେଲା, ନ ହେଲେ ବକ୍ସି କିଏ ଆମେ କିଏ ?

ଦିନ ୧୦ ଟା ବେଳୁ ଯାତ୍ରାରମ୍ଭ କରିବାର ସ୍ଥିର କରାଗଲା । ବାଙ୍କା ଉପରେ ସମସ୍ତ ଜିନିଷ ଯୋଗାଡ଼ କରିବାର ଭାର ଦେଇ ସମସ୍ତେ ନିଶ୍ଚିନ୍ତ ହୋଇଗଲେ । ବାଙ୍କା ଠିକଏ ସ୍ଥିର ହୋଇ ବସି ମନେ ମନେ ଯୋଜନାଟା ଠିକ୍ କରିନେଲା । ଭାବିଲା, ଏତେଗୁଡ଼ିଏ ଲୋକଙ୍କ ଦାୟିତ୍ୱ ମୋ ଉପରେ । ଏପରି ସୁଖ ଆରାମ ସେମାନଙ୍କୁ ଦେବି ଯେ ସବୁଦିନେ ମୋତେ ମନେ କରୁଥିବେ । ଠିକ ଠିକ ଜିନିଷ ସବୁ ସହଜରେ ପାଶୋର ହୋଇଯାଏ, ସେଥିଲାଗି ବାଙ୍କା ଆଗ ଶ୍ରେଷ୍ଠ ଜିନିଷ ସଂଗ୍ରହରେ ଲାଗିଗଲା । ମୋଟ ଉପରେ ଗୋଟିଏ ବଣୁଆ ଜାଗାରେ ବଣଭୋଜି କଲାବେଳେ ଯାହା କିଛି ଦରକାର ପଡ଼ିବ ସବୁ ସେ ଯାଦୁକର ମୁଣି ଭିତରୁ ବାହିଲା ପରି ସମସ୍ତଙ୍କୁ ଯୋଗାଇ ସାବାସ୍ ପଦଟା ସମସ୍ତଙ୍କ ମୁହଁରୁ ଝିଙ୍କି ଆଣିବ, ତେବେ ଯାଇଁ ତାର ଶାନ୍ତି ।

ଠିକ୍ ସାଢ଼େ ନଅଟାରେ ସମସ୍ତେ ଗୋଟିଏ ଗୋଟିଏ ସାଇକଲ୍ ଧରି ବାହାରିଲେ । ପ୍ରତ୍ୟେକ ସାଇକଲ କେରିଅରରେ ଗୋଟିଏ ଗୋଟିଏ ବଡ଼ ବସ୍ତା ବନ୍ଧା ହୋଇଥାଏ । ଅବଶ୍ୟ ଏଥିପାଇଁ ବାଙ୍କା ଛଡ଼ା ଆଉ କାହାକୁ ମୁଣ୍ଡ ଖେଳେଇବାକୁ ପଡ଼ିନ । ବାଙ୍କାର ବେଶଭୂଷା ଦେଖି ଦୁଇ ଗୃହଜଣ ଆପତ୍ତି କଲେ—"ହେଃ, ଗୋଟାଏ ଗୋଲଖିଆ ବୋଲି ଯିଏ ନାହିଁ ସିଏ କହିବ । ଜଣେ ଭଦ୍ରଲୋକ ପକ୍ଷରେ ଏମିତିଆ ପୋଷାକ ପିନ୍ଧିବା ଠିକ୍ ନୁହେଁ ।" ବାଙ୍କାକୁ ପୁଣି ବାରିବାକୁ କିଏ ଅଛି

ନା ! ଗମ୍ଭୀର ଭାବରେ ସେ କହିଲା, "ମୋ ଉପରେ ସବୁ ଦାୟିତ୍ୱ । ନଆଁ, ପାଣି, କଳା, ମାଟି, ହଳଦୀରେ ମୁଁ ଧାଣ୍ଡି ହେବ । ମ୍ୟାଣ୍ଡ କୋଠର ଇଜ୍ଜତ ରହିବନା ! ତୁମେ ସମସ୍ତେ ସୁଟ୍ ସାଟ ପିନ୍ଧି ଗଲ, ସେଥିରେ କଅଣ ଅଛି ? କଥାରେ ଯଥାର୍ଥତା ଥିବାର ଜାଣି କେହି ସେଥିରେ ଆଉ ଆପତ୍ତି କଲେ ନାହିଁ । ମଫସଲ ହାଟରୁ ସାଇକେଲରେ ମାଲ ବୋଝେଇ କରି କଟକଆ ଖୁଚୁରା ବେପାରୀ ଫେରିଲା ପରି ବାଙ୍କା ସବା ଆଗେ ମନ୍ଥର ଗତିରେ ସାଇକଲ ଚଲାଇ ଚଲାଇ ଗଲା ଓ ତାହାର ପଛେ ପଛେ ସମସ୍ତେ ତାହାର ବେଶକୁ ସମାଲୋଚନା କରି କରି ଅଗ୍ରସର ହେଲେ ।

ନିବିଡ଼ ବନ ଭିତରେ ସୁରମ୍ୟ ଉପବନ । ଗୃହଆଡ଼େ ପାଚେରୀ ଘେରା । ସଡ଼କର ପାଖରେ, ଗାଆଁରୁ ଅଳ୍ପ ଦୂରରେ; ଜୋର୍‌ରେ ଡାକ ଦେଲେ ଶୁଭିବ, ଅଥଚ ନିବିଡ଼ ଜଙ୍ଗଲରି ଗମ୍ଭୀରତା ଅଳ୍ପ ଅଳ୍ପ ପରିସ୍ଫୁଟ । ଥାନା ବସ୍ତି ପାଇଁ ବାଙ୍କାଙ୍କୁ ସାବାସ୍ ଦେବାରେ ସତେ ଯେପରି କମ୍ପିଟିଶନ ଉଠିଗଲା । ସାଇକେଲଗୁଡ଼ାକ ପାଚେରୀକୁ ଡେରିଦେଇ ସମସ୍ତେ ଟିକିଏ ଟିକିଏ ଦମ୍ ମାରିଲେ । ସମସ୍ତଙ୍କୁ ଠିଆକରାଇ ବାଙ୍କା ଅତି ପରିଚିତ ଲୋକପରି ଫାଟକ ଛିଡ଼ ମଝିରେ ହାତ ପୂରାଇ ଫାଟକ ଖୋଲିଲା ଓ ସମସ୍ତଙ୍କୁ ସେ ଫେରିଲାଯାଏ ଅପେକ୍ଷା କରିବାକୁ କହି ଦୂରରେ ଦିଶୁଥିବା ଘରଆଡ଼େ ଅଗ୍ରସର ହେଲା । ଦଶ ପନ୍ଦର ମିନିଟ ଗଲା । ବାଙ୍କା ଫେରିବାର ନ ଦେଖି କିଏ ଭାବିଲା "ଅବାଗିଆଟାଏ", କିଏ ଭାବିଲା 'ଗପରେ ବୋଧହୁଏ ମାତିଯାଇ ଆସିବାକୁ ଭୁଲିଗଲା', କିଏ ଭାବୁଥାଏ, ହଁ ଆସିବ ।"

ଏହିପରି କଳ୍ପନା ଜଳ୍ପନା ଚାଲିଛି, ହଠାତ୍ ଭିତରୁ ପାଟି ଶୁଭିଲା, "ମରିଗଲିରେ, ମରିଗଲିରେ, ହେ ରାମ, ଦାମରେ, ଦଉଡ଼ ଆସରେ, ବାଡ଼େଇ ପକେଇଲାରେ । ଓହୋ ଆଉ ମାରନା, ଆଉ ମାରନା, ବୋପାଲୋ, ମାଆଲୋ ।" ସମସ୍ତଙ୍କ ଦେହରୁ ଗମ୍ ଗମ୍ ଝାଳ ବୋହିଗଲା । ହୋ ହୋ ହୋଇ ସମସ୍ତେ ସାଇକେଲଠକ ଧରି ପାଟି ହେଉଥିବା ଜାଗାଆଡ଼େ ଛୁଟିଗଲେ ।

ପିଣ୍ଡା ଉପରେ ଗୋଟିଏ ପହଲଓ୍ୱାନ ବାଙ୍କାକୁ ମାଡ଼ି ବସିଥାଏ । ହାତକୁ ପଛଅଡୁଆ କରି ଗୋଟାଏ ଗାମୁଛାରେ ବାନ୍ଧି ଦେଇଥାଏ ଓ

ମଝିରେ ମଝିରେ ଗୋଟିଏ ଲେଖାଏଁ ବାଇଗିପଳିଆ ବଥା ଜନ୍ମେଇ ଦଉଥାଏ । ବାଙ୍କାର କରୁଣ ଅବସ୍ଥା ଦେଖି ସମସ୍ତେ ଚଳେଇ ଉଠିଲେ, "ହାଁ ହାଁ, ରୁହ ରୁହ, କାହିଁକି ତାକୁ ମାରୁଛ, କଅଣ ତାର ଅପରାଧ ?" ଦରଓ୍ୱାନଟି ଏତେ ଜଣ ପେଣ୍ଟକୋଟ ପିନ୍ଧା ବାବୁ ଦେଖି ମାଡ଼ ଦେବାରୁ କ୍ଷାନ୍ତ ହେଲା ଓ ଚୋରର ଧରିବାର ପୌରୁଷତା ଦେଖାଇ କହିଲା, "ଏ ଶଳା ଗୋଲିଆ ଚୋର ଭାବିଥିଲା ନିତି ଅନ୍ଧାର ଥିବ । ଶଳା ବେକୁବ୍ କାଲି ଚୋରି କରି ପଳେଇଥିଲା । ପୁଣି ଆଜି ଆସିଛି, ପୁଅର ମନେ ନାହିଁ ଯେ କାଲେ କିଏ ଛକିଥିବ । ନଗ୍ନଟିଆ ଜାଗା ଲାଗି ସମସ୍ତେ ଟିକିଏ ଅଣହୁସିଆର ରହୁଥିଲେ ଯେ ପୁଅକୁ ଟିକିଏ ସୁବିଧା ହେଉଥିଲା । ଦୁଇ ତିନିଥର ଏମିତି ନେଲାଣି, କେହି ଦେଖିପାରୁ ନ ଥିଲେ । ଆଜି ପୁଅ ଯିବ କୁଆଡ଼େ ?" ସମସ୍ତେ କ୍ରୋଧରେ ଅସ୍ଥିର ହୋଇ ପ୍ରତିବାଦ କଲେ— "ଆରେ ସେ ତ ଆମ ସାଙ୍ଗ । ବଣଭୋଜି ପାଇଁ ଇଆଡ଼େ ଆସିଥିଲୁ । ଆମ୍ଭମାନେ ପଦାରେ ଥିଲୁ । ସେତ ପରିବାକୁ ଭିତରକୁ ଆସିଥିଲା, ଆଉ ତୁମର ଚୋରି କଲା କେଉଁଠି ? କାଲି ବା ଆସିଲା କେତେବେଳେ ?"

—"କଅଣ କହିଲେ, ଏ ଆପଣମାନଙ୍କର ସାଙ୍ଗ ? ହଁ ଚେହେରା ଓ ପୋଷାକରୁ ଆପଣମାନଙ୍କ ସାଙ୍ଗ ପରି ଦିଶୁଛି !"

"କି ଅଦ୍ଭୁତ, ପୋଷାକରୁ ତୁମେ ଲୋକ ଚିହ୍ନିଗଲ ? ଦେଖୁଛୁ ଗୋପ ଚଉଧୁରୀ ବୁଢ଼ା ତମ ଦାଉରେ ଆଉ ରହି ପାରିବେ ନାହିଁ !"—

—"ଆଚ୍ଛା ପୋଷାକ ନ ହେଲା ନାହିଁ, ମାଡ଼ ବସିଲାରୁ କହୁଚି ଏ ବକ୍ସି କୋଠି ।"

"ଏଇଟା କଅଣ ତେବେ ବକ୍ସି କୋଠି ନୁହେଁ?"

"କୋଉ ବକ୍ସି ହୋ, ଏଁ !"

ଠିକ୍ ଏହି ସମୟରେ ଜଣେ ପ୍ରୌଢ଼ ସେଠାରେ ଆସି ପହଞ୍ଚି ସବୁ ଶୁଣିଲେ ଏବଂ ଦୁଃଖ ପ୍ରକାଶ କରି କହିଲେ, "ହଁ ହଁ ସେ ବାବୁ ଯାହା କହୁଛନ୍ତି ଠିକ୍ ହୋଇଥିବ । କାରଣ ମୁଁ ଆଠବର୍ଷ ହେଲା ବକ୍ସି ଠାରୁ ଏ କୋଠି ଓ ତୋଟା କିଣିଅଛି । ଏ ଚାକର ବର୍ଷେ ହେଲା ରହିଛି । ତେଣୁ ସେ ତାହା ଜାଣେ ନାହିଁ । ପ୍ରକୃତରେ ବି କାଲି ଜଣେ ଚୋର ଏଠାରୁ କେତେକ ଜିନିଷ ଚୋରିକରି ନେଇ ପଳାଇଛି । ସେଥିଲାଗି ଆଜି ଏ ଚାକର ସତର୍କ ହୋଇ ରହିଥିଲା । କ୍ଷମା କରିବେ ମୁଁ ଏ ଭୁଲ ଲାଗି ଅନୁତପ୍ତ ।"

କାଠାଟା ବୁଝି ସମସ୍ତେ ମୁଣ୍ଡରେ ହାତ ଦେଲେ । ପ୍ରୌଢ଼ଙ୍କ ଅନୁରୋଧ ସତ୍ତ୍ୱେ ବାଙ୍କାର ଅରାଜି ହେତୁ ସମସ୍ତେ ସେ ସ୍ଥାନ ପରିତ୍ୟାଗ କରି ଚନ୍ଦକା ବଙ୍ଗଳାକୁ ଗଲେ । ବାଟରେ ଜଣେ ପଚାରିଲା, "ହଇରେ ବାଙ୍କା, ଆଠବର୍ଷ ତଳର କଥା ହେଲଣି । ତତେ ବିଧାତା କହିଲା ନାହିଁ ଟିକିଏ ବୁଝି ଶୁଝି କାମ କରିବା । କଟକରୁ ବୁଝି ନେଇଥିଲେ କଣ ହୋଇ ନ ଥାନ୍ତା ।" ଆଉ ଜଣେ କହିଲା, "ଗୁଡ଼ ଯାହା ହବାର ହେଲାଣି ।"

ବଙ୍ଗଳା ଭିତରେ ବୁଜୁଳା ଗୁଡ଼ାକ ଫିଟାଫିଟି କରିଦେଇ ଓ ସୁଟ୍ ସବୁ ପାଲଟି ପକାଇ ସମସ୍ତେ ଗଡ଼ିଗଲେ ଓ ବାଙ୍କା କାମରେ ଲାଗିଲା । ତରକାରୀ କରିବାରେ ରଘୁର ଖୁବ୍ ଖ୍ୟାତି ଥିଲା । ତେଣୁ ତରକାରୀ ତିଆରି କାମକୁ ସେ ଆଦରି ନେଲା । ବାକିତକ ବାଙ୍କାର ।

ଯୁବତେ ବାକିତକ ତାଆସ ଖେଳିବାକୁ ବସି ପୂର୍ବଦିନ ନୂଆ ହୋଇ କଣା ହୋଇଥିବା ତାଆସ ମୁଠାକୁ ଖୋଲିଲେ । ତାଆସକୁ ଦେଖି ସମସ୍ତେ ଡାବା । ମୁଠାଏ ପୁରୁଣା ତାଆସ, ଅଠର ଜାଗାରେ ଚିରା, ଚରା, କାନଭଙ୍ଗା, ଉଲୁବ । ଦାମ ବଗିଡ଼ି ଉଠି ପାଟି କଲା; "ଏ କଣ, କାଲି ନୂଆ କିଣି ଆଣିଲି । ନୂଆ ତାଆସ କିଏ ନେଇ ଏ ପୁରୁଣା ତାଆସକୁ ଭର୍ତ୍ତି କରିଦେଲା ? କୋଉ ପାଜି ସଇତାନ ଯୁବା କରିଛୁ, ଗଲେ ତା' ମୁଣ୍ଡ ଛେଚିବି । ଏ ତାଆସରେ ଆଉ ଖେଳିବା କଅଣ ? ପଛଚିହ୍ନ ଦେଖିତ ସବୁ ତାଆସ କହି ହେଇଯିବ । କଥାଟା କାନରେ ପଡ଼ିବା ମାତ୍ରେ ବାଙ୍କା ଝପଟି ଆସି ପଚାରିଲା, "କୋଉ ମୁଠାଟା ଆଣିଲ କଡରେ, ଯୋଉଟା କଣା ହୋଇଥିଲା; ଆହା, କାଲି ରାତିରେ ଘନଆ ସେ ତାଆସକୁ ଦେଖୁଥିଲା । ମୁଁ ଭାବିଲି, କାଳେ କେତେବେଳେ ପଟି ମାରିଦେବ; ସେଥିଲାଗି ନୂଆ ମୁଠାକ ପୁରୁଣା ଖୋଳରେ ରଖି, ଧୋତଡ଼ ମୁଠାକ ଏ ଖୋଳରେ ରଖି ଦେଇଥିଲି ।"

"ଭଲ କରିଥିଲୁ, ନ ହେଲେ କ ତତେ ଚୁଙ୍ଗୁଚୁଙ୍ଗିଆ ବାଙ୍କା ଡ଼ାକୁଥାଆନ୍ତେ ?" ରଖିଲୁ ତ ରଖିଲୁ କହି ଦେଲୁନି ?"

—"ମୁଁ ତ ଯୋଗାଡ଼ ଯନ୍ତ୍ରରେ ଲାଗିଛି । ସାଡ଼ିକୁ ମୋର ଧ୍ୟାନ ନାହିଁ, ଏଇ କଥାତ" କହି ବାଙ୍କା ପଦାକୁ ଚାଲିଗଲା । ପୁଳାଏ ବଡ଼ ସାନ ଗୋଡ଼ି ଆଣି କୁଟେଇ ଦେଇ କହିଲା, "ହଉ ଖେଳ ବାଘ-ବକରି-ଖେଳ ।"

ତରକାରୀ ଅଧାଅଧି ହେଲା ବେଳକୁ ରଘୁ ଲୁଣ ଖୋଜିଲା । ଲୁଣ ନାଁ ଶୁଣିବାମାତେ ବାଙ୍କା ଥକା ମାରି ବସିଗଲା । ଶ୍ରେଷ୍ଠ ଶ୍ରେଷ୍ଠ କଥା ନିଠଉ ନିଠଉ ଲୁଣ କଥାଟା ଏକାବେଳକେ ଭୁଲି ଯାଇଛି । ସମସ୍ତଙ୍କ ମୁଣ୍ଡରେ ବଜ୍ର ପଡ଼ିଲା । ଗାଁ ସେଠାରୁ ପାଏ ବାଟ, ଅଣନିଶ୍ୱାସୀ ହୋଇ ବାଙ୍କା ଦୌଡ଼ିଲା । ଫେରିଲା ବେଳକୁ ଦେଖେତ ତରକାରୀ ପାଖରେ ଗୋପାଳ ଜଗିଛି । ରଘୁ ଝାଡ଼ାଫେରି ସାରି ଆସିବା ଯାଏ ସେଠାରେ ରହିବାକୁ କହି ଗୋପାଳ ଖେଳ ଥାନକୁ ଗୁଲିଗଲା । ବାଙ୍କା ଦେଖିଲା ତରକାରୀ ହୋଇ ଆସିଲାଣି । ଭଲକରି ଅନ୍ଦାଜ କରି ଲୁଣ ପକାଇ ଦେଲା । ବରଂ ଟିକିଏ ଅଲଣା ହେବା ଭଲ ଭାବି ଟିକିଏ ଲୁଣ ମୁଠାରେ ରଖିନେଲା ।

ସନ୍ଧ୍ୟା ହୋଇ ଆସୁଥିଲା, ପେଟ୍ରୋମାକ୍ସ ଲଣ୍ଠନଟା ଆଗରୁ ଲଗାଇ ଦେଲେ ଯିବ । କିରାସିନି, ସ୍ପିରିଟ୍, ମେଣ୍ଟାଲ ବିଷୟ ବାଙ୍କା ଭାବୁଥିଲା । ଦୂରରେ ରଘୁକୁ ଫେରିବାର ଦେଖି ବାଙ୍କା ଚଟାପଟ ଆଲୁଅ ଲଗାଇବାକୁ ଗୁଲିଗଲା । ଲଣ୍ଠନରେ କିରାସିନି ଭର୍ତ୍ତିକରି ଲଗାଇ ଦେଲା । ଗୁଡ଼ିଆ ଦୋକାନରୁ କଣାହୋଇ ଯାଇଥିବା ରସଗୋଲା ହାଣ୍ଡିଅଡ଼େ ନଜର ପଡ଼ିଗଲା । ଦେଖିଲା ପିମ୍ପୁଡ଼ି ଧାରି ଲାଗିଗଲେଣି । ସାଙ୍ଗେ ସାଙ୍ଗେ ହାଣ୍ଡିଟା ଝାଡ଼ିଦେଲା । ବେଶି ପିମ୍ପୁଡ଼ି ହୋଇ ନଥିଲେ । ଗୋଟାଏ ଦୁଇଟା ରସଗୋଲାରେ ହୋଇ ଯାଇଥିଲେ । ତାକୁ ବି ଝାଡ଼ିଦେଲା, ଗୋଟାଏ କନାରେ କିରାସିନି ଜୁଡ଼ୁବୁଡ଼ୁ କରି ହାଣ୍ଡି ଥୁଆ ହୋଇଥିବା ଜାଗା ଗୁରିପାଖରେ ମାଖିଦେଲା, ମନରେ ସନ୍ତୋଷ ଆସିଲା । ଗୁଣୁ ଗୁଣୁ ହୋଇ କହିଲା, "ଶଳେ ଏଥରକ ଖାଉଥାଆନ୍ତୁ ।"

ପତର ପଡ଼ିଗଲା, ବାଙ୍କା ସବୁ ପରଶି ଦେଲା, ତାପରେ ନିଜେ ବସିଲା । ତରକାରୀ ଝୋଳ ବାସନା ସମସ୍ତଙ୍କ ଭୋକକୁ ବଢାଇ ଦେଲା । ଦାମ ଆଗଭୁରି ପରଟାରୁ ଖଣ୍ଡେ ଗ୍ରେବାଇ ଦେଇ ପାଟିକରି ଉଠିଲା, "ଏହେ ଥୁ ଥୁ ଗ୍ରମ୍ ଗ୍ରମ୍ କି ପିତା !" ତାଟକା ହୋଇ ସମସ୍ତେ ଟିକିଏ ଟିକିଏ ପାଟିରେ ଗୁଞ୍ଜି, 'ଏହେ ଥୁ ଥୁ' କୋରସ୍‌ରେ ଯୋଗଦେଲେ । ବାଙ୍କା କହିଲା, "ବଡ଼ ଆଶ୍ଚର୍ଯ୍ୟର କଥା, ମୁଁ ନିଜେ ଷ୍ଟୋରରୁ କଣି ଆଣିଛି, କାଲେ ଗରମ ହୋଇଥିବ ସେଥିଲାଗି ଗୁଳିତ ବି । ଆଉ ସେଥିରେ ଟିକିଏ ସୋଡ଼ା ପକାଇଦେଇଥିଲି ପରଟାଟା ଟିକିଏ ଫୁଲିବ ବୋଲି ।"

ଡ଼ମା ଡ଼ମା ଆଖିକରି ଗ୍ରାମ ପଚାରିଲା, "ସୋଡା କୋଉଠୁ ଆଣିଲୁ ? "କାହିଁକି, କାଲ୍ଲ ଆଲମାରିରେ ଯୋଉ ଗ୍ଲୋଟ ସୋଡ଼ାବାଇକାର୍ବ ଲେବଲ୍ ମରା ଶିଶି ଥିଲା ସେଥିରୁ ଅଜାଡ଼ି ଗୋଟାଏ ପୁଡ଼ିଆରେ ଆଣିଥିଲି ।"

—"ସତ୍ୟାନାଶ୍, ସତ୍ୟାନାଶ, କରେ ମତେ ଟିକିଏ ପଚାରିଲୁ ନାହିଁ ? ଘରକୁ ନେବ ବୋଲି କଲେଜ ଡାକ୍ତରକୁ କେତେ ଖୋସାମଦ୍ କରି କୁଇନାଇନ୍ ଆଣି ସେ ଶିଶିରେ ରଖିଥିଲି, ଚଣ୍ଡାଳ ସବୁ ସାରିଲୁ, ଏବେ ଖାଇବା କଅଣ ?" ବାଙ୍କାର ମୁହଁ ଶୁଖିଗଲା । ଦାମ କହିଲା, "ଗୁଡ଼ ଯାହା ହବାର ହେଲାଣି । ତରକାରି ଓ ମିଠା ଖାଇ କଷ୍ଟେ ମଷ୍ଟେ ରାତିଟା କଟାଇ ଦେବା ।" ଏତକ କହିବା ସଙ୍ଗେ ସଙ୍ଗେ ଝୋଳରେ ଆଙ୍ଗୁଠିଟା ବୁଡ଼େଇ ପାଟିରେ ଗୁଞ୍ଜି ଦେଲା । ଆଉ ଯାଏ କୁଆଡ଼େ । ଦୁର୍ଗନ୍ଧ ଅଘ୍ରାଣ କଲାପରି ମୁଖ ବିକୃତ କରି ପାଟିକଲା, "ବୋପାଲେ, ଲୁଣ ସେରେ ପାହୁଲାଏ ।" ବାଙ୍କା ବିବ୍ରତ ହୋଇପଡ଼ି କହିଲା, "କି ଆଶ୍ଚର୍ଯ୍ୟ ମୁଁ ଜାଣି ଜାଣି କମ୍ ଲୁଣ ପକାଇଛି ତେବେ ବି ଏତେ ଲୁଣିଆ ହେଲା ?"

—"ହା ବିଧାତା" କହି ରଘୁ ଗାଲରେ ହାତ ଦେଲା । ସମସ୍ତେ ତା ଆଡ଼େ ଚାହିଁବାରୁ ସେ ପଚାରିଲା, "ହାଇରେ ତତେ ଲୁଣ ପକାଇବାକୁ କିଏ କହିଲା ?"—"ତୁ ନ ଥିଲୁ, ତରକାରି ହୋଇ ଆସିଥିଲା, ମୁଁ ପକାଇ ଦେଲି, କଅଣ ଖରାପ ହେଲା ?"

"ପକେଇଛୁ ବୋଲି ମୋତେ କହିଲୁ ନାହିଁ, ତାହାହେଲେ ମୁଁ ଆଉ ପକେଇ ନଥାନ୍ତି"

—"ପରଟା ଅବସ୍ଥା ଏମିତି, ତରକାରି ଏମିତି, ଏଇ ମିଠା କେଇଟାରେ ଗୁଜୁରାଣ ମେଣ୍ଟିବ, ଯାହାହେଉ ଜଳଖିଆ ପରି ହୋଇଯିବ, ରାତି ଗୋଟାକଟ ଏହିପରି" ଭାବି ହରି ରସଗୋଲାଟାଏ ପାଟିରେ ପୂରାଇ ଦେଲା । ପେଣ୍ଡୁଟାଏ କାନ୍ଥରେ ବାଡ଼େଇ ହୋଇଗଲେ ଯେପରି ଫେରିଆସେ ରସଗୋଲାଟା ଠିକ୍ ସେହିପରି ତା ପାଟିରୁ ପଦାକୁ ଲେଉଟି ଆସିଲା । ଅ, ଅ, ଥୁ , ଥୁ କରି ହରି କହିଲା "ବାବାରେ, ରସଗୋଲାରେ ତ ବର୍ମାଶେଲ ଗୋଲାପ ପାଣି ଢଳାଯାଇଛି ।" ଗୋପାଳ କହିଲା, "ହଁ ହୋଇଥିବତ, ବାବୁ ଆମର ଜୁଡ଼ୁ ବୁଡ଼ୁ କିରାସିନ କନା ଧରିଥିଲେ

ତେଲ ଟପ୍‌ଟପ୍ ପଡୁଥିଲା । ହାଣ୍ଡି ପାଖରେ କନାକୁ ଧରି ଆଡ଼କୁ ସାଡ଼କୁ ଚୁହୁଁଥିଲେ । ହାତମୁଠା କେତେବେଳେ ହାଣ୍ଡି ଉପରକୁ ଚାଲି ଯାଇଥିବ । ନ ହେଲେ ଏ ବର୍ମାଶେଲ ଗୋଲାପ ପାଣି ପଡ଼ନ୍ତା କେମିତି ?" ବାଙ୍କା ଆଖିରେ ଲୁହ ଦେଖି କେହି ଆଉ ବେଶି ବିରକ୍ତ ହେଲେ ନାହିଁ । ରସଗୋଲାତକ ଦୁଇ ତିନଥର ଗରମ ପାଣିରେ ସିଝେଇ, ତରକାରିକୁ ଗରମ ପାଣିରେ ଧୋଇ କୌଣସି ପ୍ରକାରେ ଜୀବନ୍‌ ବିକଳିଆ ଖାଇଗଲେ । ପରଟାର ପ୍ରଶ୍ନ ଉଠିଲା ନାହିଁ ।

ଭୋକେ ଓଡ଼ିଆ ନିଦ ଯା'ନ୍ତି । ରାତି ପ୍ରାୟ ନଅଟା ହେବ । ଶାରୀରିକ ଓ ମାନସିକ କ୍ଲାନ୍ତିଜନିତ ନିଦ୍ରା ସମସ୍ତଙ୍କୁ ଘାରି ଦେଇଛି । ଠିକ୍ ଏହି ସମୟରେ ବାଙ୍କାକୁ ମାଡ଼ିଲା ପରିସ୍ରା । ପେଟ୍ରୋମାକ୍ସ ଲଣ୍ଠନଟି ଜଳୁଥାଏ । କବାଟଟା ଫିଟାଇ ସେ ଉଙ୍କିମାରିଲା । ଦୁଆର ବାଟେ ଲଣ୍ଠନ ଆଲୁଅଟା ଥୋଡ଼ାଏ ବାଟ ଖେଦିଗଲା । ନିଦରୁ ଉଠା ଆଖିରେ ତାକୁ ଯେପରି ଆଗରେ ୪ଟା ଖୁଣ୍ଟପରି ଜିନିଷ ଚଟ୍ କରି ଦିଶିଗଲା । ଚନ୍ଦକା ଜଙ୍ଗଲରେ ହାତୀ ଥାଆନ୍ତି—ବାସ୍—ବୋମା ଫୁଟାଇବାକୁ ସେତିକି ନିଆଁ ଯଥେଷ୍ଟ । ଧଡ଼୍‌କରି କବାଟଟା କିଳିଦେଇ ସେ ପାଟିକରି ଉଠିଲା, "ଉଠରେ, ଉଠରେ, ଉଠରେ, ହାତୀ, ଆଉ, ଆଉ ।" ବିକଟ ଶବ୍ଦ ଶୁଣି ସମସ୍ତେ ଉଠିପଡ଼ିଲେ ଓ ହାଉଳି ଖାଇ ଅର୍କେଷ୍ଟ୍ରା ବା ଐକ୍ୟତାନରେ ଯୋଗଦେଲେ 'ଆଉ ଆଉ ଉଠରେ ଉଠରେ ।" ହଠାତ୍ ଚତୁର୍ଦ୍ଦିଗସ୍ଥ ବାୟୁ ଲଘୁଚାପ ମଣ୍ଡଳ ଭିତରକୁ ପଶିବାକୁ ଉଦ୍ୟମ କଲେ ଯେପରି ବିଫଳକାମ ହୋଇ ଘୂର୍ଣ୍ଣିବାୟୁ ସୃଷ୍ଟିକରନ୍ତି ସେହିପରି ନିଦ୍ରାବସ୍ଥାରେ ଥିବା ଫାଙ୍କାମନ ଭିତରକୁ ହଠାତ୍ ଗୁଡ଼ାଏ ଭାବନା ପଶିବାକୁ ଚେଷ୍ଟାକରି ଘୂର୍ଣ୍ଣି ଭାବନା ସୃଷ୍ଟି କଲା—ସମସ୍ତଙ୍କର ମୁଣ୍ଡ ଘୁରିଗଲା । ବାଙ୍କା କାଳବିଳମ୍ବ ନ କରି ମଶାରି ଖୁଣ୍ଟି, ମଶାରି ବାଡ଼ା ପହଁରିବେଣ୍ଟ ଇତ୍ୟାଦି ଯୋଗାଡ଼ କରି ସମସ୍ତଙ୍କ ହାତକୁ ବଢ଼ାଇ ଦେଇ କହିଲା, "ଜଲଦି ମଶାଲ ତିଆରିକର କିରାସିନି ଯଥେଷ୍ଟ ଅଛି । ମଶାଲ ଛଡ଼ା ହାତୀକୁ ଆଉ ଉପାୟ ନାହିଁ ।" ନିଜେ ଆପଣାର ଚଦରଟା ପହଁରି ବେଣ୍ଟରେ 'ଗୁଡ଼ାଇ କିରାସିନି ଢାଳିଲା । ପ୍ରାଣ ଓ ପୋଷାକକୁ ତୁଳି ସମସ୍ତେ ମଶାଲ ତିଆରି କରି ପକାଇଲେ । କାହାର ପ୍ୟାଣ୍ଟ କାହାର ଲୁଙ୍ଗି ମଶାଲରେ ପରିଣତ ହେଲା । ବିକଟ ଚିତ୍କାର ସହ ୧୦।୧୨ଟା ମଶାଲ ଘର ଭିତରେ

ଜଳୁଥାଏ । କାହାର ଜୀବନ ପ୍ରତି ଲୋଭ ନାହିଁ ଯେ ହାତୀ ଆଗକୁ ମଶାଲ ଧରିଯିବ । ଘର ଭିତରେ କରସିନ ଧୂଆଁ ଶ୍ୱାସରୋଧ କରିବାକୁ ବସିଲଣି । ବେଢ଼ି ଉପରେ କୋରଡ଼ା ପରି ଦୁଆରଟା ଧଡ଼ ଧଡ଼ ହେଲା । ଆଉ କି ସନ୍ଦେହ ଥାଏ ! ହାତୀ ଆସିଗଲା; ଆଉ ରକ୍ଷାନାହିଁ । ପଛ କବାଟ ଖୋଲି ବାଙ୍କା ପଦାକୁ ବାହାରିପଡ଼ିଲା । ଗୁଲ୍ ଗାଲ୍ ହୋଇ ସମସ୍ତେ ମଶାଲ ସହ ବାହାରିଲା ବେଳେ ଦି ଚୁରି ଜଣଙ୍କ କାମିଜ, ଲୁଙ୍ଗିରେ ନିଆଁ ଲାଗିଗଲା । ସେ ନିଆଁକୁ ମକଚି ଦେଇ ସମସ୍ତେ ପଦାକୁ ବାହାରିପଡ଼ିଲେ ।

ଦେବଦୂତ ପରି ବଙ୍ଗଳା ଚପରାଶି ଲଣ୍ଠନ ଓ ବର୍ଚ୍ଛା ଧରି ସେଠାରେ ପହଞ୍ଚିଗଲା । ବାଙ୍କା ତାକୁ କୁଣ୍ଢାଇ ପକାଇ "ଆସ୍ତି ଆସ୍ତି" ପାଟିକଲା । ଚପରାଶିଟି ବଡ଼ବଡ଼ିଆ ପାଟିକରି କହିଲା, "ଭୂନ ହୁଅ, ଭୂନ ହୁଅ, ହାତୀ ପାଟି ଶୁଣିଲେ ଇଆଡ଼େ ଖେପି ଆସିବ ।" ଉନ୍ମାଦ ରୋଗୀଙ୍କ ନାକରେ କିଏ ଯେ ଯେମିତି ଅଦାରସ ଚପୁଡ଼ି ଦେଲା । ସମସ୍ତେ ଚୂପ୍ ହେବାରୁ ଚପରାଶି ପଚାରିଲା, "ହାତୀ କେଉଁଠି ?" ହଳିଆ ବଳଦକୁ ଅଡ଼େଇ ଅଡ଼େଇ ନେଲାପରି ବାଙ୍କା ଚପରାଶିକୁ ହାତୀଥିବା ଜାଗା ପାଖକୁ ନେଲା । ଅଧାଳିଭା, ଅଧା ଖୁଣ୍ଟା ମଶାଲ ସବୁ ଧରିନେତା ପଛେରେ ଜନତା ଗଲାପରି ସମସ୍ତେ ପଛେ ପଛେ ଗଲେ । କି ଆଶ୍ଚର୍ଯ୍ୟ, ହାତୀ ଉଭାନ୍ । ଠିକ୍ ତାରି ଜାଗାରେ ଆଗ ପଛ ହୋଇ ଦୁଇ ଦୁଇଟା ଚୁରିଟା ଗଜା ଶାଳୁଆ ଗଛ ଉପରି ଡାଳପତ୍ର ମିଶି ଏକ ହୋଇଯାଇଛି । ସବା ଆଗରେ ଗୋଟାଏ ମୋଟା ଗୁଡ଼ଆଗୁଡ଼େଇ ଲଟା ଗଛ ଉପରୁ ତଳକୁ ଲମ୍ବିଆସିଛି । ମୁହୂର୍ତ୍ତକ ମଧ୍ୟରେ ଉଡ଼ିଯାଇଥିବା ଚେତନା ସମସ୍ତଙ୍କ ପିଣ୍ଡରେ ପୁନଃପ୍ରବେଶ କଲା । ହରି ଓ ଗୋପାଳ ନିଜ ନିଜର ଲଙ୍ଗିଆ ଅବସ୍ଥା ବିଷୟରେ ସଚେତନ ହୋଇ ବଙ୍ଗଳା ଭିତରକୁ ପଳେଇ ଗଲେ ଓ ସତରଞ୍ଜି ଦୁଇଟା ଅଣ୍ଟା ଚାରିପାଖେ ଗୁଡ଼ାଇ ଦେଲେ । କୋଟ କାମିଜ ପେଣ୍ଟ ପ୍ରାୟ ସମସ୍ତଙ୍କର ମଶାଲ ବାଟଦେଇ ଆକାଶକୁ ଚାଲିଯାଇଥିଲା । ତା ସାଙ୍ଗରେ କାହାର ଫାଉଣ୍ଟେନ, କାହାର ଟଙ୍କିକିଆ, ଦ'ଟଙ୍କିଆ ନୋଟ୍, ଦ' ଜଣଙ୍କର ହାତବନ୍ଧା ଘଡ଼ି ବି ଚାଲିଯାଇଥିଲା । ଭାଗ୍ୟେ ସମସ୍ତେ ଲୁଙ୍ଗି ପାଲଟି ଥିଲେ, ନ ହେଲେ ଅବସ୍ଥା ଢିକଡ଼ାର ହୋଇଥାଆନ୍ତା । ଗୋପାଳର ଲୁଙ୍ଗିଟା ଦରପୋଡ଼ା ଅବସ୍ଥାରେ ମିଳିଲା ।

ହରିର ପୂରା ପୋଡ଼ି ଯାଇଥିଲା । ମଲା ମୂଷାପରି ବାଙ୍କା ସତରଞ୍ଜି ଟା ପିନ୍ଧି ନିଜ ଲୁଗାଟା ତାକୁ ଦେଲା । ସବୁ କଷ୍ଟଠାରୁ ବଳିପଡ଼ିଲା ଚପରାଶିଠାରୁ ଗାଳି ଶୁଣିବା କଷ୍ଟ । ବଙ୍ଗଳାର ଆସବାବ୍ ପତ୍ର ନଷ୍ଟ ଲାଗି ଘୁସ୍ ସ୍ୱରୂପ ଚପରାଶିଙ୍କୁ କିଛି ବାସନ ଦେଇ ସମସ୍ତେ ବଡ଼ସକାଳୁ ଫେରିଲେ । ଟାପରା, ଦିହରେ ବିଚ୍ଛୀ ଗଳିଗଲା ପରି ଗଳିଯାଉଥାଏ । ବିଶେଷତଃ ସତରଞ୍ଜି ପିନ୍ଧା ଓସାଇକଲ ଚଢ଼ା ବାଙ୍କା ସମସ୍ତଙ୍କ ହର୍ଷଧ୍ୱନି ବେଶି ଉତ୍ତେଜିତ କରାଉଥାଏ ।

ହଷ୍ଟେଲରେ ଖୁଣ୍ଟର ମାତ୍ରାଟା ସୀମା ଟପିଗଲା । ଗୋପାଳ କହିଲା, "ତାକୁ ଦୂରରୁ ଜୁହାର । ସେ କେବଳ ବାଙ୍କା ନୁହେଁ, ଯଥାର୍ଥରେ ଚଙ୍ଗ ଚୁଙ୍ଗିଆ ବାଙ୍କା ।"

———

# ପୋଛେଇଛ

ବହୁକୁଟୁମ୍ବୀ ହେଲେ ବେଳେ ବେଳେ ଏମିତି କାଣ୍ଡୁଆ ହେବାକୁ ପଡ଼େ । ବଡ଼ ସକାଳୁ ମେହେନ୍ତ୍ରାଣୀଟା ବନ୍ଧୁ ଉପରକୁ ଖିଙ୍କାରି ହୋଇ ଉଠି କହିଲା, "ମଲି ମୋର, ଏ ବଡ଼ ସକାଳଠାରୁ କଚର କଚର, ପାଇଖାନା ସଫା ହଉନି—ସଫା ହଉନି । ସଫା ହବ କେମିତି ? ଏକା ତମରି ପାଇଖାନା ମଇଳାରେ ମୋ ଟୋକେଇ ଉଛୁଳି ପଡ଼ୁଛି ! ଆଉ ପାଞ୍ଚଟା ପାଇଖାନାର ମଇଳା ନେବି କେମିତି ? ଗୃରି ପାଞ୍ଚ ଛେଲୁଆ ମଇଳା ହେଲେ ସିନା ମୁଁ ଟୋକେଇରେ ପୂରେଇ ନେଇ ଯିବି, ଏକାବେଳେକେ ବେତାଏ ମଇଳାକୁ କରିବି କଅଣ ! ପାଇଖାନାରେ ଗୁଡ଼ିବ ନାହିଁ ତ ଆଉ କଅଣ କାନରେ ବାନ୍ଧି ନେବି ?"

ମେହେନ୍ତ୍ରାଣୀ ପାଟି ଯେତେବେଳେ ଫିଟିଛି, ତାହା ସହଜେ କି ବନ୍ଦ ହୁଏ ! ରସ୍ତାଟା ଉପରେ ଠିଆ ହୋଇ ଅସନ୍ତୁଷ୍ଟ ନେତାପରି ବକ୍ତୃତା ଝାଡ଼ିବାକୁ ଲାଗିଲା । ବନ୍ଧୁ ବିଚାରା ସରମରେ ଘର ଭିତରକୁ ପଳେଇ ଆସିଲା ଓ ଭାବି ଲାଗିଲା—"ଛି, ଛି, କି କାଳ ହେଲାରେ, ଦାଣ୍ଡରେ ଲୋକଗୁଡ଼ାକ ଶୁଣିଲେ କହିବେ କଅଣ ? ଇସ୍ ଚଣ୍ଡାଳ, ମୁଁ ତାକୁ କାହିଁକି କହିଲି ! ଦରଖାସ୍ତଟାଏ କରି ଦେଇଥିଲେ ଭଲ ହୋଇଥାନ୍ତା—ସାଡ଼ିକୁ ଜମାଦାର ଓ ମେହେନ୍ତ୍ରାଣୀର ଝିଙ୍କା ଓଟରା ଲାଗିଥାଆନ୍ତା । ଯାହା ହେବାର ହେଲାଣି, ସବୁଠୁ ଚୁପ୍ ରହିବା ଭଲ ।"

ବନ୍ଦୁ ଘର ଭିତରେ ଚୂପ୍ ହୋଇ ବସି ରହିଲା । ସରକାରୀ କାର୍ଯ୍ୟକଳାପକୁ ବିରୁଦ୍ଧଦଳିଆ ଲୋକେ ସମାଲୋଚନା କରି କରି ହାଲିଆ ହୋଇ ତୁନି ପଡ଼ିଲାପରି ମେହେନ୍ତାଣୀଟା ବକର ବକର ହୋଇ ଚୂପ୍ ହେଲା ।

ପାଇଖାନାଟା ରାଜା ଦଶରଥଙ୍କ ଅମଳର । ଗୋଟିଏ ଠିକ ଦୋମହଲା କୋଠା କହିଲେ ଚଳେ । ଉପରେ ବସିବା ଥାନଟି ଯେତିକ ପ୍ରଶସ୍ତ, ତଳ ମଇଳା ରହିବା ଥାନଟି ବି ସେତିକ । ଏତେ ପ୍ରଶସ୍ତ ଯେ ଶୀତ ଦିନେ ଚାରିଜଣ ଲୋକ ଆରାମରେ ଶୋଇଯାଇ ପାରିବେ । ଏମିତିଆ କୋଠରୀ ପୁଣି ତିନୋଟି । ପ୍ରଥମେ ତଳେ ତିନୋଟି ମଇଳା ବାଲ୍ଟି ଥୁଆ ହୋଇଥିଲା । ବଡ଼ ବଡ଼ ନୂଆ ବାଲ୍ଟି । ଭଗବାନ ଜାଣନ୍ତି, କାହା ନଜର ତା ଉପରେ ପଡ଼ିଲା, ଦିନେ ଦେଖାଗଲା ୩ଟା ଯାକ ବାଲଟି ହରଣଚାଲ ! ତାପରେ ଥୁଆ ହେଲା ମାଟି କୁଣ୍ଡ । ରାଗାନ୍ଧ ତା ମେହେନ୍ତାଣୀର ଉଠା, ପକା, ଛେଚା ଛେଚାରେ ମାଟି କୁଣ୍ଡମାନେ ବେଶିଦିନ ଆତ୍ମରକ୍ଷା କରି ପାରିଲେ ନାହିଁ । ତିନଥର ସେମାନଙ୍କର ନବ କଳେବର କରିବା ପରେ ଗୃହକର୍ତ୍ତା ବନମାଳି ଓରଫ୍ ବନ୍ଦୁ ପାଇଖାନାକୁ ନିଜ ଭାଗ୍ୟ ଆଦର ରହିବାକୁ ଛାଡ଼ିଦେଇ ଚୁପ୍ ହୋଇ ବସିଲା । ଫଳରେ ମଇଳା ପ୍ରଶସ୍ତ କୋଠରୀର ଚଟାଣରେ କୁଟିଡ଼ଇ ହୋଇଗଲା । ମଇଳାକୁ ପୋଛି ନ ନେଇ କଡ଼କୁ ଆଡ଼େଇ ଦେବାକୁ ମେହେନ୍ତାଣୀକୁ ବି ବାଟ ମିଳିଗଲା । ସେଥିପାଇଁ ଜାଗା ବି ଯଥେଷ୍ଟ ଥିଲା । ପୃଥିବୀ ସୃଷ୍ଟି ହେବା ପରେ ତହିଁରେ ଯେପରି ଜୀବଜନ୍ତୁ ଦେଖା ଦେଇଥିଲେ ଠିକ୍ ସେହିପରି ମଇଳା ଗଦାରେ କ୍ରମେ ଲାଂଗୁଡ଼ିଆ ପୋକ ଦେଖାଦେଲେ । କ୍ରମେ ପୋକଗୁଡ଼ାକ ବଢ଼ି କୁମ୍ଭ ମେଳାରେ ହେଉଥିବା ଲୋକଙ୍କ ପରି ସାଲୁ ସାଲୁ ହେଲେ । ସେ ନର୍କ କୁଣ୍ଡକୁ ଯମଦୂତେ ବି ଯିବାକୁ ଡରିଲେ ବୋଧହୁଏ ! ତା ନ ହେଲେ ପୋକପଲ ବଢ଼ି ଚାଲନ୍ତେ କିଆଁ ?

ଏ ତ ଗଲା ତଳ ବା ମଇଳା ମହଲାର ଦୃଶ୍ୟ । ଉପର ବା ବସିବା ମହଲ ବି କୌଣସିଗୁଣେ ତଳ ମହଲାରୁ କମ୍ ନୁହେଁ । ଘରର ପିଲାମାନେ ବେଳେ ବେଳେ ସେଠାକୁ ଯାଇ ଯଥା ସ୍ଥାନରେ ନ ବସି, ଶୌଚ କରିବା ସ୍ଥାନରେ ପ୍ରକୃତି ମେଣ୍ଟାନ୍ତି । ଏଥିରେ ଅବଶ୍ୟ ପିଲାଙ୍କର ଦୋଷ ଅଛି କି ନା ତାହା ସନ୍ଦେହଜନକ । ଗୋଟିଏ ପିଲାକୁ ଥରେ

ମୁହାଁମୁହିଁ ପକଡ଼ ପଚ୍ଛରିବାରୁ ସେ କହିଲ, "ଗାଡଟା ଏତେ ବଡ଼ ! ଉର ମାଡ଼ିଲା କାଦଲ ତଳକୁ ଗଳିପଡ଼ିବ ! ସେଇଥିଲାଗି ସେଠି ନ ବସି ଏଠି ବସିଲ ।" ସେହିଦିନଠାରୁ ଛୁଆମାନଙ୍କୁ ପାଇଖାନାକୁ ନ ଯିବାକୁ ଯେତେ ଆକଟ କଲେ ସୁଦ୍ଧା ସେମାନେ ବେଳେ ବେଳେ ସେଠି ଯାଇ ଲୁଚେଇ ଚୋରେଇ ପ୍ରକୃତି ମେଣ୍ଟାଇ ଦିଅନ୍ତି । ଖବର କାଗଜରେ ମନ୍ତ୍ରୀଙ୍କ ଦୃଷ୍ଟି ଆକର୍ଷଣ କଲା ପରେ ଏଥିପ୍ରତି ମେଥେହନ୍ତାଣୀର ଦୃଷ୍ଟି ଆକର୍ଷଣ କଲେ ସେ ସଙ୍ଗେ ସଙ୍ଗେ ଜବାବ୍ ଦିଏ "ଉପରକୁ ମଇଳା କରୁଛି କାହିଁକି ? ଆମେ କଣ ତାହାଁକ ଲଗା ? ଆମେ ତଳ ମଇଳାକୁ ସଫା କରିବାକୁ ଅଛୁ; ଅଧିକା ପଇସା ଦିବ ତ ଉପର ସଫା ହେବ ।"

କଣ ଦିନେ ଅଧେ ହୋଇଛି ଯେ ସଫା କରିବାକୁ ଅଧିକା ପଇସା ଦିଆଯିବ ? ଫଳରେ କ୍ରମେ ଉପର ମହଲଟା ଛୁଆଙ୍କ ମଇଳାରେ ପରିପୂର୍ଣ୍ଣ ହେଲା । ତଳ ଅପେକ୍ଷା ଉପରଟା ଅଧିକ ମାରାତ୍ମକ ହୋଇ ଉଠିଲା । ଲଙ୍ଗୁଡ଼ିଆ ପୋକ ସାଲୁ ସାଲୁ ହେଲେ । ଛୁଆ ମଳ ଓ ଶୌଚ ପାଣି ଫେଣ୍ଟି ହୋଇ ଗୃହଆଡ଼ଯାକ ହୋଇଗଲା । ପାଣି ନଳାଟା ବନ୍ଦ ହୋଇଯିବାରୁ ଅବସ୍ଥା ଆହୁରି ଅସମ୍ଭାଳ ହେଲା ।

ବର୍ଷାଦିନ ଦୁରବସ୍ଥା କହିଲେ ନ ସରେ । ପ୍ରକୃତିମେଣ୍ଟକ ଉପରେ ଫଟା ଛାତରୁ ଟପ୍ ଟପ୍ ପାଣି ପଡ଼େ । ବେଳେ ବେଳେ ଟୋପାଟାମାନ ଗୃହଆଡ଼େ ଜମିଥିବା ମଳଫେଣ୍ଟା ପାଣିରେ ପଡ଼େ ଓ ତହିଁରୁ ଛିଟିକାମାନ ଆସି ଗୋଡ଼, ପିଠି ଆଦି ଅଙ୍ଗ ପ୍ରତ୍ୟଙ୍ଗରେ ପଡ଼େ । ଲଙ୍ଗୁଡ଼ିଆ ପୋକମାନେ ବି ପଦାତାବେଳହାଙ୍କ ପରି ମଣିଷ ଗୋଡ଼ରେ ଚଢ଼ିବାକୁ ଆରମ୍ଭ କରନ୍ତି । ଏତିକରେ ଦୁଃଖ ସରିଲା ନାହିଁ । ତା ଉପରେ ଅଛି ଦୁର୍ଗନ୍ଧ; ତାହା ବର୍ଣ୍ଣନା କରିବ କିଏ ? ପୃଥିବୀର ସବୁ ରାଜନୈତିକ ଦଳର ବକ୍ତାମାନେ ଏକାଠି ହେଲେ ବି ବର୍ଣ୍ଣନା କରିବାକୁ ସମର୍ଥ ହେବେ ନାହିଁ । ଅନନ୍ୱୟ ଅଳଙ୍କାର ଅନୁଯାୟୀ ସୂର୍ଯ୍ୟଙ୍କୁ ଉପମା ଦେବାକୁ ଆଉ କିଛି ନ ଥିବାରୁ ତାଙ୍କ ସହିତ ତାଙ୍କୁ ହିଁ ତୁଳନା କଲାପରି ସେ ପାଇଖାନାର ଦୁର୍ଗନ୍ଧ ସହିତ କେବଳ ତାକୁଇ ତୁଳନା କରାଯାଇପାରେ । ସେପରି ଦୁର୍ଗନ୍ଧ ବିଶ୍ୱ ବ୍ରହ୍ମାଣ୍ଡରେ କୁଆପି ନଥିବ । କୌଣସିମତେ ପ୍ରକୃତି

ମେଞ୍ଚାଇ ଦେଇ ଲୋକ ଯେତେବେଳେ ପଦାକୁ ପଳାଇ ଆସେ ସେତେବେଳେ ଯେସ ନୂଆ ଜନ୍ମ ପାଇଲା ପରି ଭାବେ ।

ପାଇଖାନାଟି ବନୁର ସିନା ସହସୁହା ହୋଇ ଯାଇଥିଲା; କିନ୍ତୁ କଲିକତାରେ ଚାକିରୀ କରିଥିବା ତାର ଭାଇ ହନୁ ଯେତେବେଳେ ଛୁଟିରେ ଘରକୁ ଫେରିଲା, ସେତେବେଳେ ସେ ସେହି ପାଇଖାନାର ପ୍ରଥମ ଦର୍ଶନରେ ବ୍ୟଥିତ ହୋଇ ପୂରା ଦୁଇଦିନ ଜଳ ସ୍ପର୍ଶ କରିପାରିଲା ନାହିଁ । ଦୁଇ ଭାଇଙ୍କ ମନ୍ତ୍ରଣାରେ ମେହେନ୍ତର ଡାକି ସଫେଇ କରିବା ଲାଗି ସ୍ଥିର କରାଗଲା ।

ପାରିଶ୍ରମିକ ସ୍ଥିର କରିବା ଲାଗି ନିମନ୍ତ୍ରିତ ହୋଇ ଆସିଥିବା ଦୁଇଜଣ ମେହେନ୍ତର, ପ୍ରଥମେ ସରଜମିନ ତଦନ୍ତରେ ଲାଗି ପଡ଼ିଲେ । କିଛି ସମୟ ପରେ ବିକୃତି ମୁଖରେ ସେଠାରୁ ଫେରିଆସି ସେମାନେ ଦୁଇଭାଇଙ୍କୁ ଯାହା ଶୁଣାଇଲେ ସେଥିରେ ବନୁର ମୂର୍ଚ୍ଛା ଉପକ୍ରମ ଦେଖାଗଲା । ହନୁ ଉପହାସ କରନ୍ତେ ଜଣେ ମେହେନ୍ତର କହିଲା, "ପନ୍ଦର ଟଙ୍କାରୁ ଛଦାମଟାଏ କମ୍ ହେଲେ ଅନ୍ୟ ଲୋକ ଦେଖ—ଏ ତ କିଛି କମ୍ କାମ ନୁହେଁ ? ଗୃହିଗାଡ଼ି ମଇଳା ତଳୁ ବାହାରିବ । ତାକୁ ଖାତଯାଏ ବୋହିବାକୁ ହେବ । ଉପରୁ ଏ ଗୃହ ସେ [illegible]ଇ ମଇଳା ସଫା ହେବ । ଧୂଆଧୋଇ, ଫିନାଇଲ୍ ପକା, ପାଇଖାନା ଗୃହକଡ଼ ସଫା କରିବା— କଅଣ ଅଳପ କାମ ? ଆରେ ବାପ୍‌ରେ ବାପ୍ ! ଏଥିରୁ କମ୍ ହେଲେ ପୋଷେଇବ ନାହିଁ ।"

ବନୁ ଦରଦାମ୍ କଷାକଷି କରିବାକୁ ଯାଉଥିଲା । କିନ୍ତୁ ହନୁ ସେଥିରେ ବାଧା ଦେଇ, ରାଗରେ ମେହେନ୍ତର ଦୁଇ ଜଣଙ୍କୁ କହିଲା, "କଅଣ ପନ୍ଦର ଟଙ୍କା କୋଉଠି ପଡ଼ା ହେ, ତୁମ୍ ଲୁଟି ଲେଙ୍ଗା ? ଗୃହ ପଇସାରେ ହାମ୍ ସଫେଇ କରି ଦେଙ୍ଗା—ହାମକୁ କଅଣ ଉଲୁ ସମ୍‌ଝା ।" ପନ୍ଦର ଟଙ୍କା ଓ ଗୃହ ପଇସାର ପାର୍ଥକ୍ୟ ହୃଦୟଙ୍ଗମ କରି ମେହେନ୍ତର ଦୁଇଜଣ ଉପହାସ କରି ଫେରି ଯାଉ ଯାଉ କହିଲେ, "ହଉ ହଉ ବାବୁ, ଖୁବ୍ ଶସ୍ତା ଚୂଡ଼ଲ ଖାଉଥିବ, ଗୃହ ପଇସାରେ ସଫା କରି ପକାଅ କିଏ ମନା କରୁଛି ।" ହନୁ ପଛରୁ ଉତ୍ତର ଦେଲା "ଆରେ ଦେଖେଗା, ହାମ୍ କରେଙ୍ଗା କି ନାହିଁ ।"

ଗୃହ ପଇସାରେ ଏତେ ମଇଳାପୂର୍ଣ୍ଣ ପାଇଖାନା ସଫେଇ ହେବ ଅତି ଅସମ୍ଭବ ବୋଲି ବନ୍ଦୁ ଓ ଜମିଥିବା ଆଉ କେତେଜଣ ମନ୍ତବ୍ୟ ପ୍ରକାଶ କରନ୍ତେ ହନୁ ଦୃଢ଼ ଭାବରେ ପାପୁଲିରେ ବିଧାମାରି କହିଲା, "ଗୃହ ପଇସାରୁ ଏକ ଛଦାମ୍ ବେଶି ହେବ ନାହିଁ । କାଲି ଯଦି ସଫା ନ କରେ ତେବେ ମୋ ନାଁରେ ଗୋଟାଏ କୁକୁର ପୋଷିବ ।"

ବାଜି ମରାମରି ଯାଏ କଥା ଯିବାରୁ ହନୁ କାଳ ବିଳମ୍ବ ନ କରି ଜଣେ ଲୋକକୁ ଗୃହ ପଇସାର ମ୍ୟାଗ୍‌ସଲ୍‌ଫ୍ ବଜାରରୁ ଆଣିବା ଲାଗି ପଠାଇଲା । ସେତକ ହାତରେ ରଖି ବନ୍ଦୁକୁ କହିଲା "ଦେଖ, କାଲି ସକାଳେ ମୁଁ ଯାହା କହିବି ତୁମେ ବିନା ଓଜର ଆପତ୍ତିରେ ତାହା ସବୁ କରିଯିବ । ମୋତେ କିଛି ପ୍ରଶ୍ନ, ବିଷ୍ମୟ ପଚାରିବ ନାହିଁ । ବନ୍ଦୁ ବିସର୍ଗ କିଛି ବୁଝି ନ ପାରି ବନ୍ଦୁ ସମ୍ମତି ସୂଚକ ମୌନତା ଅବଲମ୍ବନ କଲା ।

ରାତିରେ ହନୁ ଗୋଟାଏ ବଡ ଛେଲୁଆ ଓ କିଛି ଗୁଡ଼ଳ ଧୁଆପାଣି ସଂଗ୍ରହ କରି ରଖିଲା । ବଡ଼ି ସକାଳୁ ଅଧଗ୍ଲାସ ଗରମ ପାଣିରେ ଆଗରୁ ଆଣି ରଖିଥିବା ଗୃହ ପଇସାର ମ୍ୟାଗ୍‌ସଲଫ୍ ଗୋଳଦେଇ ପିଇଦେଲା । ଗୋଟାଏ ଘଣ୍ଟା ମଳ ଝାଡ଼ାପରେ ସୁଦ୍ ପାଣିଝାଡା ହୁଅନ୍ତେ ସେ ବନ୍ଦୁକୁ ଡାକି କହିଲା—"ଶୀଘ୍ର ଯାଅ ପୋଲିସ ଷ୍ଟାଣ୍ଡରେ ଥିବା ଫୋନ୍‌ରେ ମ୍ୟୁନିସିପାଲିଟିକୁ ସଙ୍ଗେ ସଙ୍ଗେ ଡାକି କହିଦେବ, ମୋତେ କଲେରା ଧରିଲା ।" ଝାଡ଼ା ଔଷଧ ଖାଇଥିବା ଜାଣି ନ ଥିବାରୁ ବନ୍ଦୁ ହାଉଳି ଖାଇ ଦଉଡ଼ି ଗଲା ଫୋନ୍ କରିବାକୁ । ଏଣେ ହନୁ ସଂଗ୍ରହ କରିଥିବା ଛେଲୁଆରେ ଥରେ ହଗି ଦେଇ ତହିଁରେ ରାତିରୁ ରଖିଥିବା ଗୁଡ଼ଳଧୁଆ ପାଣି କିଛି ଅଜାଡ଼ି ଦେଲା ଓ ଗୋଟିଏ ବାଇଁଶ କଣିରେ ଗୋଳେଇ ଦେଲା ।

ସହଜେ ତ ଗୃହଆଡ଼େ ହଇଜା; ଖବର ପାଇବା ମାତ୍ରେ ମ୍ୟୁନିସପାଲିଟି କର୍ମଚାରୀମାନେ ଫଉଜ ସାଜି, ଆମ୍ବୁଲାନ୍‌ସ ଗାଡି ଧରି ସେଠାରେ ହାଜର ହୋଇ ଗଲେ । ଛେଲୁଆରେ ଥୁଆ ହୋଇଥିବା ଗୁଡ଼ଳ ଧୁଆ ପାଣି ଭଳି ପାଣିଆ ଝାଡ଼ାକୁ ଦେଖି, ଡାକ୍ତର ଓ ହେଲ୍‌ଥ

ଇନ୍‌ସପେକ୍ଟରମାନେ ଭୁରନ୍ତ କଲରା ବୋଲି ଚାଲିଗଲେ । ପାଇଖାନା ଦେଖିବାକୁ ଯାଇ କର୍ମଶୃଙ୍ଖମାନେ ଛାଟି ପିଟି ହୋଇ ପଳେଇ ଆସିଲେ । ନାକ ଉପରେ ବାସନା ରୂମାଲ ରଖି ସମସ୍ତେ କୁହାକୋହି ହେଲେ, "ଆଜଯାଏ ଯେ ଏଠି କଲରା କେମିତି ଲାଗି ନ ଥିଲା ତାହାହିଁ ଆଶ୍ଚର୍ଯ୍ୟ ।"

ହନୁକୁ ଆମ୍ବୁଲାନ୍‌ସରେ ପକାଇ କର୍ମଶୃଙ୍ଖମାନେ ଆମ୍ବୁଲାନ୍‌ସ ଭଡ଼ା ତିନଟା ଟଙ୍କା ମାଗିଲେ । ତତ୍‌କ୍ଷଣାତ୍ ହନୁ ପ୍ରତିବାଦ କରି କହିଲା "ଆମେ ତ ଆମ୍ବୁଲାନ୍‌ସ ପାଇଁ କହି ନ ଥିଲୁ, ମୁଁ ଡାକ୍ତରଖାନା ଯିବି ନାହିଁ । ଏଇଠି ରହି ଚିକିତ୍ସା ହେବ ।" କର୍ମଶୃଙ୍ଖମାନେ ଟିକିଏ ଚିନ୍ତା କରି ଆଦେଶ ଦେଲେ, "ଆଚ୍ଛା ଟଙ୍କା ନ ଦିଅ ପଛକେ ଡ଼ାକ୍ତରଖାନାକୁ ଯିବାକୁ ପଡ଼ିବ; ଏଠି ତୁମକୁ ରଖାଇ ଦିଆଯାଇ ପାରିବ ନାହିଁ ।"

ସଙ୍ଗେ ସଙ୍ଗେ ଆଉ ଦୁଇଟା ଝାଡ଼ା ହୋଇ ଯିବାରୁ କର୍ମଶୃଙ୍ଖମାନେ ହନୁକୁ ଆମ୍ବୁଲାନ୍‌ସରେ ପକାଇ ଡାକ୍ତରଖାନା ନେଇଗଲେ । ଗଲାବେଳେ ହନୁ ମନେ ମନେ ଭାବୁଥାଏ -- ଶଳେ ତିନିଟଙ୍କା ମୋତେ ମାଗୁଛନ୍ତି, ମୁଁ ତ ଜବାବ୍ କରିଛି ଗୁରିପଇସାରେ କାମ ଫତେ କରିବ । ଫେରିଲା ବେଳକୁ ପାଇଖାନା ପୂରାପୂରି ସଫେଇ ହୋଇ ସାରିଥିବ ।

ପରିବାରର ସମସ୍ତଙ୍କୁ ହଇଜା ଇନ୍‌ଜେକ୍‌ସନ ଦିଆଯିବା ପରେ ପାଇଖାନା ପାଳି ପଡ଼ିଲା । ଯୁଦ୍ଧକାଳୀନ ବ୍ୟବସ୍ଥା ପରି ମେହେନ୍ତର ଫଉଜ ଛୁଟିଲେ । ଗାଡ଼ ଗାଡ ମଇଳା ସ୍ୱତନ୍ତ୍ର ଗାଡ଼ିରେ ବୁହା ହେଲା । ଉପର ତଳ ସବୁ ପାଣିରେ ମଜାମଜ ହୋଇ ଧୂଆ ହେଲା । ତା ଉପରେ ପୁଣି ଆଉ ଥରେ ଫିନାଇଲ ପାଣିରେ ଧୂଆ ହେଲା । ପାଇଖାନା ଗୃହପାଖ ସଫା ହୋଇ ବ୍ଲିଚିଂ ପାଉଡ଼ର ଛିଟା ହେଲା । ସେଇ ପାଇଖାନାରୁ ହଜାର ହଜାର ଜୀବାଣୁ ଗୃହ ଆଡ଼େ ଖେଦି ସହରର ସେହି ଅଂଶକୁ ଧ୍ୱଂସ କରି ଦେବାର ଆଶଙ୍କା ଥିବାରୁ କର୍ମଶୃଙ୍ଖମାନେ ପାଇଖାନା ଉପରେ ବିଶେଷ ଧ୍ୟାନ ଦେଇଥିଲେ । କୋଡ଼ିଏ ପଚିଶ ଜଣ ମେହେନ୍ତର ପାଞ୍ଚ ଛଅ ଘଣ୍ଟା ଅକ୍ଳାନ୍ତ ପରିଶ୍ରମ କରି ପାଇଖାନାର ସାଧାରଣ ଅବସ୍ଥା ଫେରାଇ ଆଣିଲେ । ତାଙ୍କ ସାହାଯ୍ୟରେ ବନ୍ଧୁ ପାଇଖାନାଟା ସଫେଇତ କରିନେଲା ଓ ତଳେ ତିନିଟା ନୂଆ କୁଣ୍ଡ ଥୋଇଦେଲା ।

ଡାକ୍ତରଖାନାରେ ହନୁର ଝାଡ଼ା ମାଇନା ହେବା ପରେ ତାର ଭଲ ଝାଡ଼ା ବୋଲି ଜଣା ପଡ଼ିବାରୁ ତାକୁ କାଢ଼ି ଦେଲେ । ସେ ସିଧା ସିଧା ଫେରିଲା ପାଇଖାନା ପାଖକୁ । ତାର ନୂଆ ଚେହେରା ଦେଖି ଖୁସ୍ ହୋଇଗଲା । ହନୁକୁ ଡାକି କହିଲା—"ଗୁରୁ ଇସାରା ଝାଡ଼ା ଔଷଧରେ ପାଇଖାନା ମନମୁତାବକ ସଫା ହେଲା କି ନାହିଁ ? ସେ ମେହେନ୍ତର ଦୁଇଟାଙ୍କୁ ପନ୍ଦର ଟଙ୍କା ଦେଇଥାନ୍ତି କାହିଁକି ?" ନୁଭକୁଅ ହୋଇ ତା ମୁହଁକୁ ଚାହିଁ ରହିଲା ।

ଏତିକିବେଳେ ସରକାରୀ ଡାକବାଜି ଯନ୍ତ୍ର ରଡ଼ି ଛାଡ଼ିଲା—"ଭାଇମାନେ ଭୟ କର ନାହିଁ, ଏ ଗୁଡ଼ାକ ହଇଜା ନୁହେଁ—ପ୍ରକୃତରେ ଏ ଗୁଡ଼ାକ ଝାଡ଼ାବାନ୍ତି ।" ରଡ଼ି ଶୁଣି ହନୁ ଉପହାସ କରି କହିଲା—"ଆରେ ଦୂର୍ ଦୁର୍—ଏ ନୁହଁ, ଏବେ ବି ପାଇଖାନା ଝାଡ଼ା ବନ୍ଦ ହୋଇନି ।"



# ହେଙ୍କଡ୍ ଧୁନା

ସାହି ରାସ୍ତା କଡ଼ରେ ବନ ପିଜୁଳି ଡାଲାଟା ମେଲାଇ ବସିଥାଏ । ଟିକିଏ ଦୂରରେ ଧୁନା ବସି ତାଠାରୁ ଗୋଟିଏ ପିଜୁଳି ନେଇ ଚୋବାଉ ଥାଏ । ପିଜୁଳିରେ ଦାନ୍ତ ମାରି ଦେବାପରେ ବନୁ ତାକୁ କହିଲା "ହେ ଧୁନା ଭାଇ, ଆଜି ତୋର ହାତରେ ବହନି ହେଲା, ଦେ ପଇସା ଦେ !" ବହନି କଥା ଶୁଣି ଧୁନା ବଡ଼ ଅଡୁଆରେ ପଡ଼ିଲା । ଅଣ୍ଟାରେ ପାହୁଲାଟାଏବି ନାହିଁ । "ଗୋଟିଏ କିଏ ସାଙ୍ଗ ହାବୁଡ଼ିଗଲେ ତାଠୁଁ ପଇସାଟିଏ ନେଇ ଦେଇଦେବି" ବୋଲି ଭାବି ସେ ସେଇଠାରେ ବସି ପିଜୁଳିଟା ଚୋବାଇବାକୁ ଲାଗିଲା ଓ ଦଉଛି ବୋଲି କହି ବନୁକୁ ପ୍ରବୋଧ ଦେଲା ।

ଅଳ୍ପକ୍ଷଣ ପରେ ଗୋଟିଏ ଅପରିଚିତ ଭୁଷୁଣ୍ଡା ଲୋକ ସେଠାରେ ଆସି ପହଞ୍ଚିଲା । ଡେଙ୍ଗା ଯେମିତି ତଗଡ଼ା ବି ସେମିତି । ମାଲଟାଏ ହେବ ପରା ! ଗୋଟିଏ ବଡ଼ ପିଜୁଳି ଧରି ସେ ପଚାରିଲା—

"ଏ ପଇସାରେ କେଇଟା ।"

"ଗୋଟିକ ଚାରି ପଇସା ।"

ମାଲର ଆଖି ଖୋସି ହୋଇଗଲା, ପାଟି ମେଲା ହୋଇଗଲା । ଟିକିଏ ଛଟେଳଇ କରି କହିଲା "ଏଇ ମାସ ଭିତରେ କୋଠା ବାଡ଼େଇବୁ ଦେଖୁଛି । କଅଣ ନବୁ ଠିକ୍ ଠିକ୍ କହ ?"

"ଛଅ ପଇସାରୁ ଏକ ଛଦାମ୍ କମ ହେଲେ ଦେବ ନାହିଁ । ମନ ହେଉଛି ତ ନିଅ, ନ ହେଲେ ରାସ୍ତା ଦେଖ"—

ମାଲ ପିଜୁଳିଟାକୁ ଠିକ୍ ପାଚିଛି କି ନୋହିଁ ଯାଇଁ ପରୀକ୍ଷା କରିବା ଲାଗି ଦୁଇ ଆଙ୍ଗୁଠିରେ ଟିକିଏ ଚିପି ଦେଲାରୁ ସେଇଟା ଫାଟିଗଲା । ଛଅ ପଇସାରେ ନୋହିଁରା ପିଜୁଳିଟାଏ ନେବାକୁ ତାର ମନ ଗଲାନାହିଁ । ଶେଷଥର ପାଇଁ ସେ ଦର କରି ବସିଲା—"ପଇସାରେ ଗୋଟାଏ ଲେଖାଏଁ ଦେବୁକି ନାହିଁ କହ ?"

"କହି ଦେଉଛି ଗୋଟି ଛଅ ପଇସାରୁ ଛଦାମଟିଏ ବି କମ୍ତି ହେବ ନାହିଁ ।"

ପିଜୁଳିଟା ଥୋଇଦେଇ ମାଲ ଚାଲି ଯିବାକୁ ଉଦ୍ୟତ ହେଲାରୁ ବନ୍ଦୁ ପାଟିକରି ଉଠିଲା—"ନବାର ନ ଥିଲା ତ ଏ ପିଜୁଳିକୁ ଫଟେଇଲ କାହିଁକି ? ଏ ଫଟା ପିଜୁଳିକୁ ନବ କିଏ ? ଏ ପିଜୁଳିର ଦାମ ଦେଇଯାଅ ।"

ଏଥି ମଧ୍ୟରେ ଧୂନା ବି ଜଣଙ୍କ ପାଖକୁ ଚାଲିଆସିଥିଲା । ମାଲଟି ଟିକିଏ ବିରକ୍ତ ହୋଇଯାଇ କହିଲା—"ଏ ନୋହିଁରା ପିଜୁଳିଟାକୁ ଦେଇ ଛଅପଇସା ନେବୁ, କଅଣ ଦୁନିଆଟା ଲୁଟି ନେବୁ କିରେ ?"

କଥା ନାହିଁ, ବାର୍ତ୍ତା ନାହିଁ, ଅଗୁନିକି ଘଡ଼ଘଡ଼ ମାରିଲାପରି ଧୂନା ପାଟି କରି ଉଠିଲା—"ଏଡ଼େବଡ଼ ପିଜୁଳିଟାକୁ ଅଧଲାଏ । ତମ ନନା ବାହାଘରେ କେବେ ଖାଇଥିଲ ? ତାକୁ ଟିକିଏ ନରମା ଦେଖିଲ ପରା ? ଜମା ମାଡ଼ିନେଇ ପଳେଇବ ବୋଲି ବସିଥିଲ ନା—? ଯେ ପିଜୁଳି ନିଅ; ଛଅ ପଇସା ଥୁଅ, ରାସ୍ତାଦେଖ ।"

ଜଣେ ଭଦ୍ରସ୍ଥ ଲୋକର ହଠାତ୍ ଏପରି ବ୍ୟବହାରରେ ମାଲ ଟିକିଏ ଥକାମାରିଗଲା । କିଛି ସମୟ ଧୂନାକୁ ଚାହିଁ ସେ କହିଲା, "ସେ ଦୋକାନୀ, ମୁଁ ଗରାଖ । ସେ ଭଜ ବେଶି କହିଲା; ମୋର ପସନ୍ଦ ହେଲା ନାହିଁ, ମୁଁ ନ ନେବି; ତୁ ମଝିରେ କିଏ ? ମଣିଷ ଦେଖିବାକୁ ଛଅଭରି, କଥା କହୁଛି ଛଅ ମହଣର । ଉପରେ ପଡ଼ି ଭଲଲୋକ ଦେଖେଇ ହେଉଛି, ମୁଁ ନେବ ନାହିଁ ଯା ।"—

"କଅଣ କହିଲୁ ମୁଁ କଏ ! ହରିବଂଶଲା ଶଙ୍କି ଲୁ, ମୁଁ ତୋ ବୋପା । ଶଳା ପିଜୁଳି ଫଟେଇ ଆହୁରି ପୁଣି ରୋଆବ ଦେଖଉଚ, କମିତି ଶଳା ପଇସା ନ ଦେଇ ଯିବୁ ମୁଁ ଦେଖିବ ?"—ଧୂନା ଏତିକ କେବଳ କହିଲା ନାହିଁ । ତା ସଙ୍ଗେ ସଙ୍ଗେ ଆଣ୍ଠୁ ଉପରକୁ ଲୁଗାଟା ଖୋସି ମାଲକଚ୍ଛ ଭିଡ଼ିଦେଇ, ଜାନୁରେ ଗୋଟାଏ ଫୁଟୁକ ମାରି, ହାତ ମୋଡ଼ିଲା ପରି ନାକତଳେ ଭୃଗୁଟାରେ ଆଙ୍ଗୁଠିକୁ ଟାଣିଆଣି ମାଲକୁ ଆବୋରି ଠିଆ ହେଲା ।

ଘଟଣାଟା ଏତେ ଦ୍ରୁତ ଗତିରେ ଘଟିଗଲା ଯେ ମାଲ ବିଚାରା କିଛି ଭାବିବାକୁ ସମୟ ପାଇଲା ନାହିଁ । ସେ ଆଗ ବାଲୁ ବାଲୁ କରି ଧୂନାର ତେଲଙ୍ଗି ବାଉଁଶ ପରି ମୋଟ ମୋଟ ଜଙ୍ଘ, ବାଉଁଶ କଣି ପରି ହାତ ବାହା, ଗଣି ହୋଇ ଯାଉଥିବା ପଞ୍ଜରା କାଠିକୁ ବଡ଼େ ଚାହିଁଗଲା । ଟିକିଏ ପରେ ପ୍ରକୃତିସ୍ଥ ହୋଇ ଭାବିବାକୁ ଲାଗିଲା—"ଏହାକୁ ଗୋଟିଏ ଚାପୁଡ଼ା ଦେବା ଅର୍ଥ, ନିଜେ କିଛିଦିନ ପରେ ଫାଶୀ ଖୁଣ୍ଟରେ ଲଟକିବା । ଆଜି ବି ନିଜ ସାହିରେ କୁକୁର ବି ମହାବଳ ବାଘ । ଯଦି ଭଲଆ ଏ ସାହିର ସମସ୍ତେ ଯଦି ମୂର୍ଖ ହୋଇଥିବେ, ତେବେ ଗୋଟାଏ ଅଯଥା କନ୍ଦଳ ସୃଷ୍ଟି ହେବ । ଏ କନ୍ଦଳଠାରୁ ତିନୋଟି ପଇସା ଦେଇଦେବା କୋଟିଗୁଣେ ଭଲ ।"

ଧୂନା ପୁଣି ବିରଜେଇ ଉଠିଲା, "ଆବେ ଭାବୁଚୁ କଅଣ, ଚଞ୍ଚଳ ତିନିଟା ପଇସା ଥୋ, ତାପରେ ତୋ ବୋପା ନାଁ ଭାବି ଭାବିକା ଘରକୁ ଯିବୁ । ଶଳା ଭାବୁଚୁ ଏଠି ସମସ୍ତେ ମାଇଆ, ଆଜି ନିଜେ ଏକା ଅଣ୍ଡିରା, ଥୋ ବେ ଶଳା ଥୋ ।" ମଇଳା ଟିକିଏ କେଉଁଠି ପଡ଼ିଲେ ଯେପରି ଘଣଘଣିଆ ମାଛିମାନେ ତାକୁ ବେଢ଼ି ଯାଆନ୍ତି, ସେହିପରି ସେ କଳ ପାଖରେ ସେତେବେଳକୁ ଆଠ ଦଶ ଜଣ ଜମି ଗଲେଣି । ମୂଷା ବିରାଡ଼ିର ଯୁଦ୍ଧ ଦେଖିବାକୁ କାହାକୁ ଆମୋଦ ନ ଲାଗିବ, ବିଶେଷରେ ଯେତେବେଳେ ମୂଷା ବିରାଡ଼ି ଉପରକୁ ପଞ୍ଝା ଦେଖାଉଥିବ ।

ମାଲ ଧୂନାର ଏ ପ୍ରକାର ଅପ୍ରାକୃତିକ ବ୍ୟବହାର ଓ ଅଯଥା କଟାଳ ଦେଖି ଅବାକ୍ ହୋଇଗଲା । ଚୁଟୁନ୍ଦ୍ରା ମାଇଲେ ହାତ ଗନ୍ଧେଇବ ବୋଲି ଭାବି ସେ ପ୍ରକାଶ୍ୟରେ କହିଲା, "ଆଚ୍ଛା ଆଚ୍ଛା ବାବୁ ଆଜି ରାଗନା ମୁଁ ତିନ ପଇସା ଦେଉଚି, ସେ ପିଜୁଳିକୁ ବି ଦେଉଚି, ତୁ ଟିକିଏ ଥଣ୍ଡା

ହୋଇଯା ।” ଏହା କହି ସେ ବନୁ ଆଡ଼କୁ ତିନୋଟା ପଇସା ପକେଇ ଦେଇ ସେଠାରୁ ଚାଲିଗଲା । ସଙ୍ଗେ ସଙ୍ଗେ ଧୂନା ସେ ଫଟା ପିଜୁଳିଟାକୁ ତଳୁ ଗୋଟେଇ ବନାକୁ କହିଲା—“ଏଇଟା ହ’ ପଇସା । ଆଉ ମୋରଟା ପଇସାଏ, ଏମିତି ତିନି ପଇସା ପାଇଗଲୁ ।” ବନୁ “ଯଥାଲାଭ” ଭାବି ଚୁପ୍ ରହିଲା ଆଉ ଗଡ଼ ଜୟ କଲାପରି ପିଜୁଳିଟା ଖାଇ ଖାଇ ଧୂନା ସେ ଜାଗାରେ ଥୋଡାଏ ପଇଁତରା ମାରିଗଲା ।

ମାଲ ଚାଲିଯିବା ପରେ ସାହି ଟୋକାଏ ହୋ ହୋ ହୋଇ ହସିଉଠି ଧୂନାକୁ କହିଲେ “ହଇବେ ତୋର ତ କମ ସାହସ ନୁହେଁ ! ସେ ଗୋଟାଏ ଚାପୁଡ଼ା ମାରିଥିଲେ ତୋ ମୁଣ୍ଡ ଛିଡ଼ ଯାଇଥାନ୍ତା, କଅଣ ନିଜ ସାହି ବୋଲି ଏ ରୋଆବ୍ ଦେଖାଉଥିଲୁ ନା ଆଉ କିଛି ?”

“ଆବେ ତୁମେ ଜାଣିଚ କଅଣ, ତା ଦେହଟାକୁ ଦେଖୁଥିଲ ପରା । ଆରେ ଜୋର୍ଟା ହାତ ଗୋଡ଼ରେ ନଥାଏ, ଥାଏ ଛାତି ଭିତରେ ।”

ଜଣେ କହିଲା “ଆରେ ହେଇଚ ଧୂନାର ବଳ ଗୁଡ଼ାକ ଛାତି ଭିତରେ ବେଶି ଠିଲେଇବାରୁ ପଞ୍ଜରାକାଠି ଗୁଡ଼ାକ ପଦାକୁ ବାହାରି ପଡ଼ୁଛି ।” ସମସ୍ତେ ଏହା ଶୁଣି ଠୋ ଠୋ ହସି ଉଠିଲେ ।

ଧୂନା ଟିକିଏ ତେଜ ହୋଇ କହିଲା “ହୁଁଃ—ଯା, ଯା ଆ ବେ ସିଆଡ଼େ ହସିବ । ତୁମେ ସବୁ ଜାଣିଛ କଅଣ । ପାଟିରୁ କଥା ବାହାରିବନି, ଚାଲାକ କରିବାକୁ ଆଗଭର ହୋଇ ଆସିବେ । ମୁଁ କଅଣ ତୁମକୁ ଡାକୁଥିଲି ? ଉପରେ ପଡ଼ି ବକର ବକର କାହିଁକି ହଉଛ ।”

କଥାଟା କ୍ରମେ ଅନ୍ୟଆଡ଼େ ଗତି କରିବାର ଦେଖି ଅଦୂରରେ ବସିଥିବା ସାହି ଅଧିକାରୀ ଘଟଣା ସ୍ଥଳକୁ ପଶିଆସି କହିଲା “ଆବେ ତୁମେ ସବୁ ହସୁଛ, ତୁମକୁ ଲାଜ ମାଡ଼ୁନି, ସେ ଏକା ଏଡ଼େ ବଡ଼ ମାଲଟାକୁ ଫିମ୍ପା ଉପରେ ଭଗେଇ ଦେଲା, ତୁମେ ସବୁ ତାକୁ ବାହାବା ଦଅନ୍ତ କଅଣ, ଓଲଟି ହସୁଛ । ତା ଭଳିଆ ଛାତି ତୁମର ହେବ ?”

ଜଣେ ନ ଶୁଭିଲାଭଳି କହିଲା—“ତା ଭଳିଆ ଏ ମୂର୍ଖାଣ୍ଡି କିଏ କରିବ ।”

ଅଧିକାରୀ ପୁଣି କହିଲା—“ତା ଭଳିଆ ଗୋଟାଏ ହେଙ୍କଡ଼ ଆଉ କୋଉ ସାହିରେ ଦେଖିଛ ? ତୁମେତ ଶଳେ ପର ଶିଖି ମୋଟେ ଦେଖି ପାରିବନି । ଏହି ବଦଗୁଣ ଲାଗି ଏକା ଆମ ସାହି କାହିଁକି ଆମ ମୁଲକଟା

ନଷ୍ଟଭ୍ରଷ୍ଟ ହୋଇ ଯାଉଛୁ । ଜଣେ କଏ ଆଗକୁ ବାହାରି ପଡ଼ିଲେ ତୁମେ ସବୁ ପଛରୁ ଠେଲିବା ଛାଡ଼ି ପଛକୁ ଟାଣି ପକେଇବ । କୋଉ ଶଳାଟା ଏଥିରେ ପଦାକୁ ବାହାରିବ ? ଏ ବଦ୍‌ଗୁଣ ନ ଛାଡ଼ିବାଯାଏ ଶଳେ ଛନ୍ଦର ଛନ୍ଦର ହୋଇ ନର୍କରେ ଘାଣ୍ଟି ହୋଇ ମରୁଥିବ ।”

ତାପରେ ଧୂନା ପିଠିକୁ ଥାପୁଡ଼େଇ ଅଧିକାରୀ ପୁଣି କହିଲେ "କଅଣ ପାଇବୁ ତାଙ୍କ କଥାରୁ, ଖେଚଡ଼ା ଗୁଡ଼ାକ ଟାହିଲି କରୁଛନ୍ତି । ତୁ ସେ ଗୁଡ଼ାକ ଶୁଣ୍‌ନା । ଯାହା ହେଉ ଆଜ କାମଟା ଏ ଦେଖେଇ ଦେଲୁ ।"

ଧୂନା ଛାତି ଫୁଲେଇ ଓ ବେଣା ମେଲେଇ ସେ ସ୍ଥାନରୁ ଚାଲିଯିବା ପରେ ଜଣେ ଅଧିକାରୀକୁ କହିଲେ—"ସେଇଟାକୁ କ ହେଙ୍କଡ଼ି କହୁଛ ? ସାହି ଭିତର କଥା ଏଠି ତ ସମସ୍ତେ ଅଛନ୍ତି । ଦରକାର ପଡ଼ିଲେ ତା ପାଖକୁ ଧାଇଁଯିବେ । ସେଇଥିଲାଗି ସେ ହେଙ୍କଡ଼ାମିଟା ଦେଖେଇ ଦେଲା । ସାହି ବାହାରେ ମୁହଁ ଖନ ବାଜିଯିବ । ତା ପିଠିରେ ହାତ ମାରୁଛ କଅଣ ?"

"ସାହି ଭିତରେ ପୂରା ହେଙ୍କଡ଼ ହୋଇସାରୁ; ତାପରେ ବାହାରେ ହେଙ୍କଡ଼ାମି ଦେଖେଇବ । ମୂଳରୁ ଗଜା ମାରିଲା ବେଳରେ ଯଦି ଦଳିଦେବ ତେବେ ଗଛ ହେବ କୁଆଡୁ ? ପଛରୁ ଅଣ୍ଟେଇଲେ ଯିନା ତାର ସାହସ ବଢ଼ିବ ।"

ସେହିଦିନ ଠାରୁ ଧନା ସାହି ହେଙ୍କଡ଼ ରୂପେ ପରିଚିତ ହେଲା । ସାହିର ସମସ୍ତେ ତାକୁ ପୂରା ହେଙ୍କଡ଼ କରିବାକୁ ଲାଗି ପଡ଼ିଲେ । ଅଧିକାରୀ କଥାକୁ ସମ୍ମାନ ଦେଖେଇବା ଅପେକ୍ଷା ଧୂନାକୁ ଟାହିଲି କରିବାର ଇଚ୍ଛାଟା ଅବଶ୍ୟ ଅଧିକ ଥାଏ । ଧୂନା କିନ୍ତୁ ସବୁ ସତ ମଣେ । ଅଯୋଗ୍ୟ ମନ୍ତ୍ରୀ ଯେପରି ଜନସାଧାରଣଙ୍କ ଶକ୍ତିରେ ବଳୀୟାନ ହୋଇ ସେହି ଜନସାଧାରଣଙ୍କ ଉପରେ ଘୋଡ଼ା ଚଢ଼େ, ଧୂନା କ୍ରମେ ସେହିପରି ସାହିବାଲାଙ୍କ ଉପରେ ବେଶି ବେଶି ହେଙ୍କଡ଼ାମି ଦେଖେଇଲା । ଏଇଟା ସମସ୍ତଙ୍କୁ ଅସହ୍ୟ ହେଲେ ସୁଦ୍ଧା ଅଧିକାରୀର ଆକଟକୁ ଖାତିର କରି କେହି ତାକୁ କିଛି କହିଲେ ନାହିଁ । ଜଣେ ଅଧେ ଟାହିଲିକରି ହେଙ୍କଡ଼ ଧୂନା ବୋଲି ଡାକୁ ଡାକୁ ତା ନାଁ ହି 'ହେଙ୍କଡ଼ ଧୂନା' ହୋଇଗଲା ।

ସମସ୍ତଙ୍କର ପରୋକ୍ଷ ସମର୍ଥନ ପାଇ, ଧୁନା ସାରଦିଆ ଗଛ ପୂଷ୍ଟ ହେଲପରେ ଅଧିକରୁ ଅଧିକତର ହେଙ୍କଡ଼ ହୋଇ ଉଠିଲା ।

× × ×

ଠାକୁରଙ୍କ ନୂଆ ଘରଟା ବହୁତ ଦିନରୁ ଅଧାହୋଇ ପଡ଼ିଥାଏ, ଗୁଡ଼ କିନ୍ତୁ ପଡ଼ି ପାରୁ ନ ଥାଏ । ଠାକୁରଙ୍କ ମାଣ୍ଡ, ଯାନ, ଯାତରୁ କଉଡ଼ିଏ ବି ବଳେ ନାହିଁ । ଗୁଡ଼ ପଡ଼ିବ କିପରି ? କପାଳ ବାଜିଲୁ ଭେଟ ଲଢ଼େଇ ବେଳେ ଗୋଡ଼, ସିମିଟି, ଛଡ଼ ପ୍ରଭୃତି ଗୁଡ଼ ଢଳେଇ ଜିନିଷତକ ଅନାୟସରେ ମିଳିଗଲା । ତେବେ ଗୁଡ଼ା ଢଳେଇ କରିବା ପାଇଁ ମଜୁରି ନାହିଁ, ନଟାମ୍ଭ ଟାଣଟୁଣ ଚଢ଼ିବାରୁ ସବୁ ହୋଇ ଠିକ୍ କରାଗଲା ଯେ ସାହିରେ ରାଜମିସ୍ତ୍ରୀ ବାସିନ୍ଦା କିଛି କମ୍ ନାହାନ୍ତି । ଗୋଟାଏ ଦିନ ସମସ୍ତେ କାମରୁ ବନ୍ଦହୋଇ ଲାଗିଗଲେ ଗୁଡ଼ ଢଳେଇ ହୋଇଯିବ । କଡ଼ା କଡ଼ା ନିୟମ କରାଗଲା, ବଡ଼ ହେଉ ବା ଛୋଟ ହେଉ ସମସ୍ତେ କାମରେ ଲାଗିବେ । କିଛି କରି ନ ପାରିଲେ ଢ଼ ଗାଣ୍ଡୁଆ ଗୋଟି ବା ବାଲି ବୋହିଦେବେ । ମୋଟ ଉପରେ କିଛି ନା କିଛି କାମ ସମସ୍ତଙ୍କୁ କରିବାକୁ ହେବ, ତା ନ ହେଲେ ଇଏ କହିବ ସିଏ କଲାନି; ସିଏ କହିବ ଇଏ କଲାନି; ଫଳରେ କେହି କାମ କରିବେ ନାହିଁ । ପ୍ରସ୍ତାବ ଅନୁଯାୟୀ ଦିନେ କାମ ଆରମ୍ଭ ହେଉ ହେଉ ଵିରାଡ଼ ଛୁଟିଲା ।

ଯକାକୁ ଗୋବରା, ଧୁନାକୁ ଚେତେଇ ଦେବାଲାଗି ତାକୁ କହିଲା—"ଆବେ ହେ ହେଙ୍କଡ଼ !"

"କଅଣ କ ବେ ?"

"ଠାକୁର କାମ ପାଖକୁ ଯାଉଛୁ ଟି ?"

"ଇଚ୍ଛା ହେଲେ ଯିବା !"

"ଇଚ୍ଛା ହେଲେ କଅଣ ବେ, ଯେକୌଣସିମତେ ଯିବାକୁ ହେବ । ନ ଗଲେ ଫଳ ପାଇବୁ ।"

"ଫଳ କଣ ବେ, ଆମ୍ବ ନା ପଣସ ? ଦିବ କିଏ ବେ ?"

"ଆମ୍ବ ନୁହେଁ ବେ, ବେଲ, ବେଲ; ଟିଟିରେ ଦୁମ୍ ଦାମ୍ ପଡ଼ିବ ।"

"ଏଁ ଦେଖିତ ଭଲା, କୋଉ ଶଳାଟା ଏତେ କାଉମର୍ଦ୍ଦନ ଅଛି, ବେଲ ଦେବ, ମୁଁ ଯିବିନି, କିଏ କଅଣ କରିବ ଦେଖିବି ?"

"ଆଚ୍ଛା ହେଉ କେମିତି ଶଳା ନ ଯିବୁ ଦେଖିବା !"

"ଯା, ଯାଆ ବେ, ଶଳା ମୋ ପାଖରେ ଫୁଟାଣି ! ଏମିତି କେତେ ଦେଖିଛୁ । ଯା ଶଳା କଣ କରିବୁ କର ।"

"ହଉ ଶଳା ରହ, ପିଠି ପୋଡ଼ିଲା ବେଳେ, ବୋପା ମାଁ ପଚାରୁଥିବୁ ।" କହି ଗୋବର ରାଗରେ ଚମ ଚମ ହୋଇ ଚାଲିଗଲା । ଧୂନା ନଗରଥାନକୁ ମୋଡ଼ିବାକୁ ଲଗିଲା ।

... ...

କାମ ଉପରେ ଅଧିକାରୀ ନିଜେ କୋଡ଼ି ଧରି ଗାଣ୍ଡୁଆରେ ଗୋଡ଼ ଭର୍ତ୍ତିକଲା ଓ ଅନ୍ୟମାନଙ୍କୁ ଶୀଘ୍ର କାମରେ ଲାଗିଯିବାକୁ ଡାକିଲା । ଗୋବର ସେତେବେଳକୁ ଗୋଟାଏ ମେଣ୍ଟ କରି ସାରିଲାଣି । ଡକାହେଲାରୁ ଦଳଟାଯାକ କହିଲେ—"କାହିଁକି, ଏତ ସାହି କାମ, ସମସ୍ତଙ୍କ କାମ, ଧୂନା କାହିଁକି ନ କରିବ, ସେ ନ କଲେ ଆମେ କରିବୁ ନାହିଁ ।" ଧୂନା ତ ରାଗରେ ପାଚି ଯାଇଥିଲା, ତାକୁ ପଚାରନ୍ତେ ସେ ସାଫ୍ ସାଫ୍ କହିଦେଲା—"ମୋ ଇଚ୍ଛା ନାହିଁ, ମୁଁ କରିବି ନାହିଁ ।" ଗୋବର ଦଳବି କହିଲେ "ସେମିତି ଆମର ଇଚ୍ଛା ନାହିଁ ଆମେ କରିବୁ ନାହିଁ । ଆମର କଅଣ ଏକୁଟିଆ କାମ କି ?"

ଅଧିକାରୀ ଦେଖିଲା ମହା ବିପଦ । ସମସ୍ତଙ୍କୁ ବୁଝେଇ ସୁଝେଇ କହିଲା, "ଆରେ ସାହିର ମଙ୍ଗଳ ମାନେ ସମସ୍ତଙ୍କ ମଙ୍ଗଳ । ନିଜ ପାଇଁ ନିଜେ କରିବା କଥା । ଇଚ୍ଛା ଅନିଚ୍ଛା କଥା ଏଠି ଉଠୁଛି କାହିଁକି ? କିଏ କଣ କାହା ପାଇଁ କରୁଛି । ଥେଣ୍ଟା ଥେଣ୍ଟି ହେଲେ ସାହିର ଖରାପ, ତା ସଙ୍ଗେ ସଙ୍ଗେ ନିଜର ଖରାପ ।" କଥାଗୁଡ଼ାକ ଧୂନାର ଏ କାନରେ ପଶି ସେ କାନରେ ବାହାରିଗଲାରୁ ଅଧିକାରୀ ଗୋବର ଦଳକୁ କହିଲା— "ସେହି ଗୋଟାକ ପାଇଁ କଅଣ ସାହିଟାକୁ ନଷ୍ଟ କରିବ ? ତା କଥା ପଛେ ବୁଝାଯିବ, ତୁମେ ସମସ୍ତେ ଆସ । ଜଣକ ପାଇଁ କାମ ବନ୍ଦ ରହିପାରିବ ନାହିଁ । ଗୋବର ନଛୋଡ଼ବନ୍ଧା, ସେ କହିଲା—"ତମରି ଯୋଗୁ ତା ମୁହଁ ବଢ଼ିଗଲାଣି । ଏ କି ଜଗର ତାର, ଶଳା ହେଙ୍କଡ଼ାମି ଦେଖାଇବାକୁ ଆଉ ଜାଗା ମିଳିଲା ନାହିଁ, ଦେଖଉଚି ସାହି କାମରେ । ଏହିକ୍ଷଣି ଏଇଟା ଫଇସଲା ହେଉ, ନ ହେଲେ ଆମେ କାମ କରିବୁ ନାହିଁ ।

ଅଧିକାଶ ରଗିଯାଇ କହିଲା—"ଜଣେ ଲୋକ ବାଟରେ ଛେରିଲା ବୋଲି ସମସ୍ତେ ବାଟରେ ଛେରିବ ? ଜଣେ ନିଜର ହାତ କାଟିଦେଲା; ତୁମେ ତେବେ ନିଜ ନିଜ ହାତ କାଟି ପକାଇବ । ତୁମେ ସମସ୍ତେ ସାହିକୁ ଜବତ୍ କରୁଛ ନା ଧୂନାକୁ ଜବତ୍ କରୁଛ ?"

ଗାଇଁ ଗାଇଁ ହୋଇ ଗୋବରା କହି ଉଠିଲା—'ଏକା ମିନିଟରେ ତାକୁ ଜବ୍‌ବତ୍ କରି ଦିଅନ୍ତୁ । ତୁମରି ଯୋଗୁଁ ହୋଇ ପାରୁନି, ତୁମରି ଯୋଗୁ ତାର ମୁହଁ ବଢ଼ିଛି ।

ନିଶରେ ହାତମାରି ହେଙ୍କଡ଼୍ ଧୂନା କହିଲା—"ଏମିତି କୋଉ ଶଳାଟା ଜନ୍ମ ହୋଇନି, ମୋତେ ଜବତ କରିବ ।"

ଗୋବରାକୁ ତା ଆଡ଼କୁ ଉଦ୍ଧକି ଯିବାର ଦେଖି ଅଧିକାଶ ଆକଟି କହିଲା—'ଖବରଦାର୍, ନିଜ ଭିତରେ ବାଡ଼ିଆ ପିଟା ହେଲେ ଫେର୍ ଦେଖିବ । କାମ ପଡ଼ୁଟକେ ନ ହଉ, ବାଡ଼ିଆ ପିଟା ହେବାକୁ ମୁଁ ଦେବିନି । ସବୁ ମୂର୍ଖଯାକ ଶଳେ ଏକାଠି ହୋଇଛ । ସାହିଟାକୁ ଲୋକହସା କରୁଛ । ଯାଅ ଶଳେ ସମସ୍ତେ ଗାତକୁ ଯାଅ, ସେ କାମ ବନ୍ଦ ଥାଉ ।

ସାହି କାମ ବନ୍ଦ ହୋଇଗଲା ବୋଲି ଗୋବରା ଦଳଙ୍କ ମନରେ ଯେତେ ଦୁଃଖ ନ ହେଲା, ତାଠୁ ଦଶଗୁଣ ଦୁଃଖ ହେଲା ଧୂନାର ହେଙ୍କଡ଼ାମି ବଜାୟ ରହିଲା ବୋଲି । ସେମାନଙ୍କର ଗୋପରେ ମନ୍ତ୍ରଣା ଚାଲିଲା, ଧୂନାର ହେଙ୍କଡ଼ାମି କେମିତି ଛଡ଼େଇବାକୁ ହେବ । ତାକୁ ହାତରେ ନ ମାରି ଭିତରେ କେମିତି ମାରିବାକୁ ହେବ ଯେଉଁଥିରେ କି ଅଧିକାଶ କହିବାକୁ ବାଟ ନ ଥିବ ।

ପ୍ରବଳ ଇଚ୍ଛା ହେଲେ ଉପାୟ ଯୁଏଁ ଯୁଏଁ ଆସିଯାଏ । ଦଳର୍. ମନ୍ତ୍ରଣାସଭାରେ ଡଟକା ଯୋଗ ଦେଇଥିବା ରଘୁଆ କହିଲା—'ତା ହେଙ୍କଡ଼ାମି ଛଡ଼ାଇବା ସାମାନ୍ୟ କଥାଟାଏ । ଏତେ ଚକ୍ରାରେ ଦରକାର କଅଣ, ଏକାଦିନକରେ ସେ ନିଜ ହାତରେ ସାବାଡ଼ ହୋଇଯିବ । ଖାଲି ମୁଁ ଯାହାକୁ ଯାହା କହିବି ସେ ତାକୁ କଲେ ହେଲା ।

ପୂର୍ବ ଯୋଜନା ଅନୁଯାୟୀ ବଡ଼ ସକାଳୁ କାର୍ତ୍ତିକା ପୋଖରୀର ଗୋଟିଏ ପ୍ଲେଟ ତୁଠ ଆବୋରି ବସିଲା । ଗୋବରାଦଳ ବନ୍ଧ ଉପରେ ଏଣେ ତେଣେ ବସି ଗୁଡ଼ାଖୁ ଘଷ ଥାଆନ୍ତି । ଏହି ସମୟରେ ହେଙ୍କଡ଼ ଧନା ଗୁଡ଼ାଖୁ ଘଷି ଘଷି ସେଠାରେ ପହଞ୍ଚିଲା ।

ତାକୁ ଦେଖି ଜଣେ କାର୍ତ୍ତିକା ଆବୋର ବସିଥିବା କୁଠକୁ ଗାଧୋଇବାକୁ ଗଲ । ସେଠି ପହଞ୍ଚୁ ନ ପହଞ୍ଚୁଣୁ କାର୍ତ୍ତିକା ପାଟି କଲା, "ଯାବେ ଶଳା ଏତେ କୁଠ ପଡ଼ୁଚ୍ଛ, ଏଠିକ କାହିଁକ ଆସୁଛୁ ।" ସେ ଫେରିଗଲା । ଆଉ ଜଣେ ନ ଜାଣିଲା ପରି ପଶିବାକୁ ଉପକ୍ରମ କଲାରୁ ସେ ଗର୍ଜି ଉଠିଲା—"ଶଳା ଚତେ ଶୁଭିଲା ନାହିଁ, ମନା କରୁଛି ପର ସେ କୁଠରେ କେହି ପଶନ ।" ସେ ବି ଫେରିଗଲା । ଧୂନାବ କୌତୁହଳର ସହିତ ତାହା ଲକ୍ଷ୍ୟ କଲା । ଆଉ ଜଣେ ଟିକଏ ଚେଡ଼ିଦେଇ କହିଲା—କାହିଁକ ଏ କୁଠ କଅଣ କଣି ନେଇଛକ, ଏତେ ବୋଆବ କାହିଁକ ?" ମାର ନମାର ହୋଇ କାର୍ତ୍ତିକା କହିଲା—"ମୁଁ କଣିନଥି ତୁ ଶଳାଟି କଅଣ କଣିଛୁ । ଏତେ କୁଠ ପଡ଼ୁଚ୍ଛ, ଏଇ କୁଠକୁ ଏତେ କଗର କାହିଁକ ?" ସେ'ବି ଫେରିଗଲା । ଧୂନାକୁ ଜଣାଗଲା ଯେମିତି ଗୋଟିଏ ବଣରେ ଦୁଇଟି ସିଂହର ଆବିର୍ଭାବ ।

କାର୍ତ୍ତିକାର ହେଙ୍କଡ଼ାମିରେ ୮।୧୦ ଜଣ ହଟି ଯିବାର ଦେଖି ଧୂନାର ଜାନୁ କମ୍ପି ଉଠିଲା । ଏକ ବଣରେ ଦୁଇ ସିଂହ ଅସହ୍ୟ । ସେ ଭୂତପରି ପିଆଡ଼େ ମାଡ଼ିଯାଇ କାର୍ତ୍ତିକା ହାଁ ହାଁ କରୁ କରୁ ସେ କୁଠରେ ଭୁସ୍କରି ପଶିଗଲା । ଅଣ୍ଟଅଣି ପାଣି ହୋଇଛି କ ନାହିଁ ସେ ଝକଲରେ ବୋପା ଲେ, ମାଆ ଲେ ହୋଇ ପଛକୁ ଲେଉଟି ପଡ଼ିଲା । ପାଣି ଭିତରେ ନାଗଫେଣିଆ କଣ୍ଟା ପକେଇଥିବା ଲୋକ ଓ ତାର ପୂର୍ବପୁରୁଷଙ୍କ ଉଦ୍ଦେଶ୍ୟରେ ଅଶ୍ରାବ୍ୟ ଅଶ୍ଳୀଳ ଭାଷା ପ୍ରୟୋଗ ଓ ନାନା ଅଖାଦ୍ୟ ପରିବେଷଣ ପୂର୍ବକ ହେଙ୍କଡ଼ ଧୂନା ଯନ୍ତ୍ରଣାରେ ଚ୍ଛେଟେଇ ଚ୍ଛେଟେଇ ଘରକୁ ଫେରିଲା । ସେ ଯିବାପରେ ରଘୂଆ କହିଲା "ପୁଅ ଏଥରକ ୧୬ ଅଣା ହେଙ୍କଡ଼ରୁ ୧୨ ଅଣାକୁ ଖସି ଆସିଥିବ ।

× × × ×

ଧାନା ଘର କଡ଼ ବଉଳଗଛ ମୂଳେ ଗୋଟିଏ ପିମିଟି ଚଉତରା । ବଉଳ ଗଛ ଛାଇ । ବେଶି ଚାଆସ ମାଡ଼ ସେଇଠି । ଦିନେ ଦିପହରିଆ ନବେଳାରେ ରଘୁଆ ଚଉତରା ଉପରେ ଗଡ଼ୁ ଗଡ଼ୁ ଗଛ ଡାଳରେ କଅଣ ଗୋଟାଏ କାଳିଆ ହୋଇ ଜନିଷ ଦେଖିଲା ।

ଉଠିପଡ଼ି ତାକୁ ଭଲକରି ଚାହିଁଲା । କଅଣ ଭାବି ଟିକଏ ମୁରୁକିହସା ଦେଲା । ଥାନା ଘରେ ସେହିଦିନ ଗୋବରା ଦଳର ଗୋଟାଏ ଘମାଘୋଟ ଗୁପ୍ତ ମନ୍ତ୍ରଣା ବସିଲା ।

ତା ପରଦିନ ବଡ଼ ସକାଳୁ ଗୋବରା ସାହିର ଟୋକାମାନଙ୍କୁ ଆକଟ କରି କହିଲା—"ଦେଖ ଥାନା ଉପରେ ସାହି ଚାନ୍ଦା ଗୁଡ଼ାଏ ବାକି । ତାକୁ ବାସନ୍ଦ କରାଗଲା, କେହି ତା ଦୁଆର ମାଡ଼ିବନି କି ତା ବଉଳ ଚଉତରା ଉପରେ ବସିବ ନାହିଁ ।" ସମସ୍ତେ ରାଜି ହେଲେ ବି ଦ'ପହର ବେଳକୁ ଜଣେ ଦ'ଜଣଙ୍କୁ ସେଠି ବସିବାର ଦେଖାଗଲା । ଗୋବରା ସେମାନଙ୍କୁ ଭଣ୍ଡ-ସଣ୍ଡ ଗାଳି ଦେଇ ଓ ଚଣ୍ଡିଆଏ ଲେଖାଏଁ ଦେଇ ସେଠାରୁ ତଡ଼ିଦେଲା । ତାଙ୍କ ଭିତରୁ ଜଣେ ଧୂନା ପାଖକୁ ଯାଇ କହିଲା—"ଧୂନା ଭାଇ, ଏ ସାହିରେ ଜୁଲମ ବଢ଼ିଲା ।"

"କାହିଁକି, କଅଣ ହେଲା ?"

"ଆମେ ସେଠି ଟିକଏ ବସିଥିଲୁ, ଗୋବରା ଥାନାକୁ ଅଣ୍ଟେଇବ ବୋଲି ଆମକୁ ଜବରଦସ୍ତି ତଡ଼ିଦେଲା ।"

"ତୁମେ ସବୁ ମାଇଆ ବୋଲି ଚାଲି ଆସିଲ ।"

"ସେଇ ଏଡ଼େ ପ୍ରତିଜ୍ଞା କରି କହୁଛି, କାହାକୁ ବସେଇ ଦଉନି ।"

"ଆରେ ତୁମ ଉପରେ ଘୋଡ଼ା ଚଢ଼ିବ ବୋଲି କଅଣ ମୋ ଉପରେ ଘୋଡ଼ା ଚଢ଼ିବ, ଚାଲିଲୁ କୋଉ ଶଳାଟା ମୋତେ ବନ୍ଦ କରିବ ?"

ଗୋବରାର ଭୀଷଣ ପ୍ରତିବାଦ ସତ୍ତ୍ୱେ ଧୂନା ଚଉତରାକୁ ଗାମୁଛାରେ ଝାଡ଼ିଦେଇ ଗଡ଼ିଗଲା । ଆଉ ସମସ୍ତେ ବିରକ୍ତ ହୋଇ ଚାଲିଗଲେ । ଠିକ୍ ଏହି ସମୟରେ ଥାନା ଘର ଭିତରୁ ବାହାରି ଗଛକୁ ଲାଗିଥିବା ଗୋଟାଏ ଦଉଡ଼ି ହଲିଗଲା । ଧୂନା ନାକକୁ କଅଣଟାଏ ମାରିଦେଲା, ସେ ଚମକିପଡ଼ିଲା । ତା ସଙ୍ଗେ ଟପୁଟାପ୍ । "ଆରେ ବାପରେ, ବାଘର ମହୁମାଛି" କହି ଧୂନା ବାଇବାଛୁ ହୋଇ ସେ ସ୍ଥାନ ଛାଡ଼ି ପଳେଇଲା । ଦହଟାଯାକ ଆବୁ ଫଳ ଯାଇଥାଏ । ଥାନା ଘରେ

ଲୁଚ ରହି ରଘୁଆ ହସି ହସି କହିଲା ଏଥର ହେଙ୍କଡ଼ାମି ଆଠ ଅଣାକୁ ଖସି ଆସିଥିବ ।

ବାକି ଆଠଅଣା କେମିତି ଯିବ, ସେ ବିଷୟ ଗୋବରା ଦଳ ଯେବେ ଚିନ୍ତା କରିବା ବେଳେ କାର୍ତ୍ତିକା ଆସି କହିଲା—"ଆରେ ଏ ବଡ଼େଇ ସାହିଆ ମଦନଆଟା ଏଡ଼େ ଚଢ଼ଲ ! ତା ଘର ଆଗରେ ଯଦି କିଏ ଗୋଟିଏ ରାମନାମି ଗୀତ ବୋଲୁଛି ତେବେ ସେ ମରେ କି ମାରେ । ସାହିବାଲିଏ ତାକୁ ଚିଡ଼େଇ ଚିଡ଼େଇ ଅଧାପ୍ରାଣ କଲେଣି । ସେ ବି ଏମିତି ରାଗି ଗଲଣି ଯେ, ରାମ କି ହନୁମାନ କାହା ନାଆଁ ଶୁଣିବା ମାତ୍ରେ ଡ଼େଙ୍ଗ, ବୋଲୁଅ ଗୁଡ଼ୁଛି । ତା ମାଇପ ବି ଗୋବର ପାଣି, ଗରମ ପାଣି ଯାହା ପାଉଛି ଉପରକୁ ଫୋପାଡ଼ୁଛି । କି ଭଣ୍ଡ-ହଣ୍ଡ ଗାଳି ! ଶଳାଟା ବାପ୍ସା ଗେଧପର ହେଲଣି ।" ସମସ୍ତେ ଟିକିଏ ଟିକିଏ କୌତୁହଳାକ୍ରାନ୍ତ ହେଲେ; କିନ୍ତୁ ରଘୁଆ ତାଳିଟାଏ ମାରଦେଇ କହିଲା—"ଏଃ ମିଳିଗଲା ଗୋଟାଏ ବାଟ ।"

ସଙ୍ଗେ ସଙ୍ଗେ କାନଫୁସି ପ୍ରସ୍ତାବଟା ସାବ୍ୟସ୍ତ ହୋଇଗଲା ଯେ; ବଡ଼େଇ ସାହି ମଦନଆ ଆମ ସାହିର ରାମାୟଣ ପୋଥିର କେତେଟା ଗୀତ ଚୋରିକରି ନେବାକୁ ବସିଛି । ତେଣୁ ତାହା ଆଗରେ କି ତା ଘର ପାଖରେ କେହି ପୋଥି ଗୀତ ବୋଲିବା ବନ୍ଦ । ଏହାପରେ ଜଣେ ଧୂନା କାନରେ ଫୁସ୍ ଫୁସ୍ କରି କହିଲା—"ଧୂନା ଭାଇ, ତୁ କୁଆଡେ ପୋଥିଗୀତ ମଦନଆ ଘର ପାଖରେ ବୋଲିଦେବୁ, ସେଥିଲାଗି ଗୋବରା ହେରିକା ତୋତେ ଛକିଛନ୍ତି । ଯଦି ତୁ ବୋଲିବୁ ତୋତେ ବାସନ୍ଦ କରି ହଇରାଣ କରିବେ ।" ସତକୁ ସତ ଗୋବରା ବି ଆସି ଶୁଣେଇ ଦେଲା— "ଦେଖ ଧୂନା, ମଦନଆ ଘର ପାଖରେ କି ତା ଘରେ ଯଦି ପୋଥି ଗୀତ ବୋଲିବୁ ତେବେ ଭାରି ଖରାପ ହେବ ।" ଧୂନା ତାଚ୍ଛଲ୍ୟ ଭାବରେ କହିଲା, "ମୋର ଆଲୁଅ କରିବୁ ।" * * *

ଗୋବରାକୁ ଡେଙ୍ଗ, ଧୂନା ଗୋଟିଏ ରାମାୟଣ ଛାନ୍ଦ ବୋଲି ବୋଲି ସନ୍ଧ୍ୟାବେଳେ ମଦନଆ ଘରଆଡ଼େ ମୁହାଁଇଲା । ବିଚରା ସେଠୁ ଘରକୁ ନ ଫେରି ସିଧା ସିଧା ଡାକ୍ତରଖାନା ଗଲା । କିଛିଦିନ ପରେ ସେଠାରୁ ଫେରିଲା ବେଳକୁ ସେ ଆଉ ହେଙ୍କଡ଼ ଧୂନା ନଥିଲା ।



# ଝଗର୍ ଚଟ୍

ମଦ ଖଟିରେ ଚକଭା, ରଘୁଆ ଆଡ଼କୁ ଗିଲାସଟା ବଢ଼େଇ ଦେଇ କହିଲା "ନେ ଭାଇ ତୁ ଆଗ ଆରମ୍ଭ କର।" ରଘୁଆ ଟିକିଏ ଇତସ୍ତତଃ ହୋଇ କହିଲା " ନାହିଁ ଭାଇ, ଆମ ସାହିରେ ଘର ଆକଟ । ଅଧିକାଂଶ ଜାଣିଲେ ମୋ ଧଡ଼ ଉଡ଼ିଯିବ—"

"ରଖ୍ ତୋ ଅଧିକାଂଶ, ସେ ଜାଣିବ କାହିଁକି, ଅଳ୍ପ କରି ଖାଆ । ଏତେ ଦିନରେ ଏକାଠି ହେଇଛଇଁ । ନ ପିଇଲେ ଚଳିବ ନା, ତୁ ନ ପିଇଲେ ମୁଁ ପିଇବି ନାହିଁ ।"

ରଘୁଆ ମନେ ମନେ କଥାଟାକୁ ଓଜନ କଲା । "ଏତେ ଦିନର ସାଙ୍ଗ, ଏତେ ଦିନ ପରେ ମୋ ପାଖକୁ କୁଣିଆ ହୋଇ ଆସିଛି । ଏଡ଼େ ସୁନ୍ଦର ଜୋଛନା ରାତିଟା, ଏଡ଼େ ବଡ଼ ମଉଜଟା ଅକାରଣ ହୋଇଯିବ ନା ! ଆଉଡ଼େ ପୁଣି ରାଢ଼ ଅଧିକାଂଶ । ତା ହାତରେ ପୁଣି ପୁଲାଏ ଠାଉଆ ବୋଲକରା । ଅଧିକାଂଶ ହାବୁଡ଼ରୁ ସିନା ଖସି ଯାଇ ପାରିବ କିନ୍ତୁ ଏ ବୋଲକରା ଠାଉଆ ଏ କସ୍ କଦରଟରେ ଜାଣି ପକେଇବେ ଓ ସାଙ୍ଗେ ସାଙ୍ଗେ ଅଧିକାଂଶ କାନରେ ପକେଇ ଦେବେ । ଶଳା ରାଢ଼ ମୋ ଭଣ୍ଡି ଧରିବ"—

ଚକରା ପୁଣି କହିଲା—"ସତ କହୁଛୁ ଭାଇ, ଆଖି ଢୁଳୁଛି, ମା ରାଣ ଖାଉଛି, ତୁ ନ ପିଇଲେ ମୁଁ ଜମାରୁ ଛୁଇଁବ ନାହିଁ । ତେଣିକ ଯାହା ହେଉଛି ହେଉ ।"

ରଘୁଆ ଗିଲାସଟା ହାତରେ ଧରି ଭାବିଲା "ନା କୁଣୁଆ ମଉଜଟା ଭାଙ୍ଗି ଦେବି ନାହିଁ । ଲୁଚି ଲୁଚି ଯାଇ ଘରେ ଚୁପ୍ ହୋଇ ଶୋଇ ପଡ଼ିବି । ବୋଲକରା ଠାଉଆଙ୍କ ହାବୁଡ଼ରେ ପଡ଼ିଲେ ହାତ ଓଠ ଧରି ପକେଇବ"—

ଚକରା ପୁଣି କହିଲା "ଅଟକଲୁ କାହିଁକି; ହେ ପିଇଦେ, କିଏ କାହିଁକି ଜାଣିବ ? ଅଳପ କରି ପି । ହଟା କଞ୍ଚା ପିଆଜ ଚୋବାଇ ଦେଲେ ଶଳା ଗନ୍ଧ ବଡ଼ବୋପା ବି ବାହି ହୋଇଯିବ । ପିଆଜ ଏଇଠି ଅଛି ।"

ରଘୁଆ ଭାବିଲା—"ହଅମ ମୁଁ କୋଉଁ ସବୁଦିନେ ପିଉଛି । ଗୋଟାଏ ଦିନତ କସ୍କ ଦରରେ ଛପିଗଲେ ଗଲା । ଏତେ ଦିନର ସାଙ୍ଗଟା ମନରେ କଷ୍ଟ ହେବ ନା ?"

ଧୀରେ ଧୀରେ ମଦ ଗିଲାସଟା ତା ଓଠରେ ଲାଗିଲା । ଗୋଟିଏ ଢୋକ ତଣ୍ଟି ବାଟେ ଗଳିଗଲା । ତାପରେ ଗୁଟ୍ । ମାଉଁସ ଭଜା, ପିଆଜି । ଉତ୍ଫୁଲ୍ଲ ହୋଇ ଚକରା ଦୁଇ ତିନ ଢୋକ ଏକାବେଳେକେ ପିଇଦେଲା ।

ରଘୁଆ ଦେହ ଝୁହୁଁ ଝୁହୁଁ ଉଷୁମ ହୋଇ ଆସିଲା । ତା ସଙ୍ଗେ ମନ ବି । ଅଳପ ଟାଇବ ବୋଲି ମନରେ ଯେଉଁ ଗଣ୍ଠି ପକାଇଥିଲା ସେଇଟା ହୁଗୁଳିଗଲା । ତା ଉପରେ ବି ଚକରା କହି ଲାଗିଲା "ହେଏମ ଆଉ ଢୋକେ ପିଇଦେ ।" ରଘୁଆର ଆଉ ଢୋକେ ଗୁଳିଲା । ଢୋକ ପରେ ଗୁଟ୍ ଓ ଗୁଟ୍ ପରେ ଢୋକ ବଢ଼ି ଚାଲିଲା; ପୂରା ବୋତଲଟାଏ ଖତମ୍ । ଅଧିକାଂଶ ଡର ଓ ଅଳପ ପିଇବାର ସିଦ୍ଧାନ୍ତକୁ ବହୁତ ପଛରେ ପକାଇ ରଘୁଆର ଉଷୁମ ମନ ଆକାଶରେ ଭାସୁଥାଏ । କ୍ରମେ ସେ ସବୁ ଅଦୃଶ୍ୟ ହୋଇଗଲା ।

ତୋଫା ଜନ୍ମଗଣ୍ଠିକୁ ଉପଭୋଗ କରିବା ଲାଗି ଦୁହେଁ ଚାଲି ଚାଲି ନଈ କୂଳକୁ ଗଲେ । ପାଣି ସୁଅରେ ଯେପରି କାଠି କୁଟା ଭାସି ଭାସି କେତେବେଳେ ଏକାଠି ଓ ଅନ୍ୟବେଳେ ମେଳ ଯାଇ ଅଲଗା ହୋଇ-ଯାଆନ୍ତି । ସେହିପରି ଦୁହିଁଙ୍କର ଭାବନା ସ୍ରୋତରେ ବିଷୟବସ୍ତୁ ଗୁଡ଼ାକ କେତେବେଳେ ବା ମଝାରୁ ଛିଣ୍ଡି ଅଲଗା ଅଲଗା ହୋଇ ଏଣେ ତେଣେ ମାଡ଼ି ଯାଉଥାଏ ।

ଦଇବ ଦୁର୍ଯୋଗକୁ ହାତ କାହାର ? ଯୋଗକୁ କେମିତି ବେଙ୍ଗ ହାଓ୍ୟା ଖାଇବାକୁ ଆସି ନଈ କୂଳରେ ବସିଥିଲି । ଅଧିକାରୀର ସେ ବୋଲକରା ନମ୍ବର ଏକ । ସେ ରଘୁଆର ଏମିତିଆ ହାଲ ଦେଖି ବଡ଼ ଖୁସିଟାଏ ହୋଇଗଲା—ପୁଲିସ ଚୋରକୁ ପକଡ଼ିଲେ ଯେମିତି ଖୁସିଟାଏ ହୁଏ । କାଳ ବିଳମ୍ବ ନ କରି ସେ ଖସି ଆସିଲା ଗାଆଁକୁ । କିଛି ସମୟ ପରେ ସେ ଅଧିକାରୀ, କଣ୍ଟୁଆଳ । ତାକୁଆ ଆଉ ଦୁଇ ତିନ ଜଣକୁ ସାଙ୍ଗରେ ଆଣି ସେଠାରେ ପହଞ୍ଚିଗଲା । ରଘୁଆ ପାଖରେ କୁଣିଆ ଥିବାର ଦେଖି ଅଧିକାରୀ ତା ସଙ୍ଗେ ଉଛବାଚ କରିବାକୁ ଠିକ୍ ମନେ କଲାନି । ପ୍ରମାଣ ତ ଦଶ ଆକ୍ଷି ହୋଇଗଲା, ଆଉ ପାଟି ଭୁଣ୍ଡ କରି ଲାଭ କଅଣ ? ସେ ସମସ୍ତଙ୍କୁ ନେଇ ଫେରିବାର ଉପକ୍ରମ କରୁଛି, ଏହି ସମୟରେ ଗୋଟାଏ ଚୁଙ୍ଗୁଚୁଙ୍ଗିଆ ଟୋକା ରଘୁଆ ପାଖକୁ ଯାଇ କହିଲା, "ହେ ରଘୁଆ ଭାଇ, ଅଧିକାରୀ ତତେ ଦେଖିଲାଣି ।" ପାଥିବ ବିଷୟରେ ରଘୁଆର ମନ ଆଉ ନଥିଲା । ସେ ସଙ୍ଗେ ସଙ୍ଗେ କହି ଉଠିଲା, "ଅଧିକାରୀ ଶଳାଟା କିଏ ବେ । ମୁଁ ଶଳାର ସାହିତ୍ୟ ଷେଣ୍ଢ । ସେ ଶଳାଟା କିଏ ? ତାକୁ ସେ ପୁଅର ମାମୁଁକୁ ।" ଏତକ କାନରେ ପଡ଼ିବାରୁ ଅଧିକାରୀ ରାଗରେ ରକ୍ତ ଝୁଞ୍ଜଳ ହୋଇ ଫେରିଲା ।

× × × ×

ନିଶାପରେ ଅଧିକାରୀ ଏକା ଜଗର ଧରି ବସିଲା—ତା ଘର ଆଗରେ ଗ୍ଳୁମୁଡ଼ିଆ ନ ବନ୍ଧେଇଲେ ସେ କେବେହେଲେ ତାକୁ ଜାତିରେ ଚ଼ୁରେଇବ ନାହିଁ । ରଘୁଆ ବଚରା ଗୋଡ଼ତଳେ ପଡ଼ ପଡ଼ ମୁଣ୍ଡରୁ ଫ୍ଳେପା ଛଡ଼େଇଲା । ଗୋବର ପାଣି ପିଇ ଲଣ୍ଡା ହେବାକୁ ରାଜି ହେଲା । କିନ୍ତୁ ଅଧିକାରୀର ଏକା ଜଗର ଗ୍ଳୁମୁଡ଼ିଆ ବାନ୍ଧ । ରଘୁଆ ମନେ ମନେ ହିସାବ କରି ଦେଖିଲା, ସାହିରେ ସତୁରି ଘର, ଗ୍ଳୁମୁଡ଼ିଆ ବାନ୍ଧିଲେ ଖାଲି ସମସ୍ତଙ୍କୁ ବଂକେ ଖାଇବାକୁ ଦେବାରେ ତ ଶହେ ପାଞ୍ଚପା ଟଙ୍କା ଖର୍ଚ୍ଚ; ତା ଉପରେ ପୁଣି, ଖୋଳପୂଜା, ହୋମ, ପ୍ରାୟଶ୍ଚିତ୍ତ ଟଙ୍କା ଦୁଇଶହ ପାଖାପାଖି । ଛଅଣାର ମଦପାଇଁ ଦୁଇଶହ ଟଙ୍କା ଜୋରିମାନା, ତା ଉପରେ ପୁଣି ହୀନଅବସ୍ଥା । ପୁଣି ଥରେ ଗୋଡ଼ତଳେ ପଡ଼ି କହିଲା "ଠାକୁରାଣୀ ଲଗିଛନ୍ତି, ସତକରି କହୁଛି ମୋର ଜମା ପିଇବାକୁ ଇଚ୍ଛା ନ ଥିଲା, କୁଣିଆଟା ଏକା ଜଗର କରି ପିଆଇ ଦେଲା ।" ନିଶାପରେ ବସିଥିବା ବହୁ ଲୋକଙ୍କର ହୃଦୟ ତରଳିଲା; କିନ୍ତୁ ଅଧିକାରୀ ଅଟଳ, ତାର ଏକା ଜଗର ଗ୍ଳୁମୁଡ଼ିଆ ବନ୍ଧେଇବ । ରଘୁଆ ଯେତେବେଳେ ଦେଖିଲା ଆଉ ଜମାରୁ ଆଶା ନାହିଁ ସେତେବେଳେ ସେ ସାଫ୍ ସାଫ୍ କହିଦେଲା "ମୁଁ ଗ୍ଳୁମୁଡ଼ିଆ ବାନ୍ଧିବି ନାହିଁ ।" ଅଧିକାରୀ ଗର୍ଜନ କରି ଉଠିଲା "କେମନ୍ତ ! ଏତେ ଦମାକ୍, ଦେଖିବ କୋଉ ପୁଅ ତୋ ପିଠିରେ ପଡ଼ିବ ? ଯା ଶଳା, ତୁ ଏକଘରକିଆ ହୋଇ ରହିଲୁ । ସମସ୍ତେ ଜାଣିରଖ ନିଆଁ-ପାଣି ବନ୍ଦ । ଏମିତିଆ କଡ଼ାକଡ଼ି ନ ହେଲେ ସାହିଯାକ ସମସ୍ତେ ମଦ ପିଇବେ ।

ଯେଉଁଥିକି ଡରୁଥିଲା ସେଇଥିରେ ପଡ଼ିବାରୁ ରଘୁଆ ଏକାବେଳକେ ବେପରୁଆ ହୋଇଗଲା । ସେ ସ୍ଥିରକଲା ନର୍କକୁ ଯିବ ତ ଭଲକରି ଯିବ । ନର୍କକୁ ଭଲକରି ଘାଣ୍ଟିବ, ଆଉ ଦଶ ଜଣକୁ ସାଥି କରିବ ଓ ତାଙ୍କ ହାତରେ ବ ଘଣ୍ଟେଇବ । ଅଧିକାରୀର ଯାହା କରିବାର ଥିଲା ତାହା ସବୁ ନିଶ୍ଚିତ କରିଦେଲା । ଆଉ ଶଳାଟା କ ଆଉ କରିବ ? ଆଉ ଧମକେଇବାକୁ ତାର କଅଣ ଅଛି ? ହଆସିଲରେ ନିଆଁ । ମ୍ୟୁନିସିପାଲିଟି କୁଅରେ ପାଣି । ଏ ସାହିରେ ସଉଦା ନ ଦେଲେ ଆଉ ସାହି ଅଛି । ଶଳା ମୋର କଅଣ ବନ୍ଦ କରିବ ଦେଖିବି ? ସେ ଡାଳ୍‌ଫୁକାର ମଦ ଖାଇଲା ।

ବାସନ୍ଦଟା ପଡ଼ିଲେ ଖୁବ୍ କଡ଼ାକଡ଼ ପାଳନ ହେଲା । କେହି ରଘୁଆ ସହିତ ସମ୍ବନ୍ଧ ରଖିଲେ ନାହିଁ । କଥାବାର୍ତ୍ତା ବି ବନ୍ଦ । ଥୋକେ ପ୍ରଥାକୁ ସମ୍ମାନ କରି ବାସନ୍ଦ କଲେ ଓ ଆଉ ଥୋକେ ପ୍ରଥାର ବିପକ୍ଷରେ ଯିବାକୁ ଡରି ବାସନ୍ଦ କଲେ । ଦ୍ୱିତୀୟ ଦଳର ସଂଖ୍ୟା ଅବଶ୍ୟ ବେଶି ଥିଲା । ଅଧିକାଂଶର ଏକଜିଦ୍ ବାସନ୍ଦ ପ୍ରତି ସେମାନଙ୍କର ଟିକିଏ ବିରାଗ ଜାତ କରାଇଥିଲା । ଏକା ସାହିରେ ଘର, ସକାଳୁ ଉଠିଲେ ମୁହଁ ଚାହିଁଚାହିଁ । ରକ୍ତର ସମ୍ପର୍କ ଅଛି । ପଡ଼ିଲେ ପଡ଼ିଲେ କେତେଜଣ ଅନ୍ଧାରୁଆ ଆଡ଼କୁ ପାଡ଼କୁ ଚାହିଁ, ଫୁସ୍ ଫୁସ୍ ହୋଇ କଥାବାର୍ତ୍ତା ଆରମ୍ଭ କଲେ । ରଘୁଆର ଟିକିଏ ବି ସାହସ ବଢ଼ିଲା । ତା ପାଇଁ ନଟିଆର ଦରଦଟା ଟିକିଏ ବେଶି ତୀକ୍ଷ୍ଣ ହୋଇ ଉଠିଛି । ରଘୁଆ ଆଶାନ୍ୱିତ ହୋଇ ତା ଆଡ଼କୁ ଥୋପ ପକେଇଲା ।

ନଟିଆ ନିତି ରାତିରେ ବୁଲାଣି ବାଟରେ ଯାଇ, ମଶାଣି ପାଖରେ ରଘୁଆକୁ ଭେଟେ, ଓ ଦୁହେଁ ହସି ବହୁତ ସୁଖ ଦୁଃଖ ହୁଅନ୍ତି । ତାରି ଜରିଆରେ ରଘୁଆ ତା ନୀରବ ସମର୍ଥକମାନଙ୍କ ସହ ସମ୍ପର୍କ ସ୍ଥାପନ କରେ । ଏତେ ଲୁଚିଚୋରିଟା ରଘୁଆକୁ ଖରାପ ଲାଗିଲା । ମନରେ ଦିନେ ଭାବିଲା, ନଟିଆ ତା ପାଖକୁ ବଲ୍‌କୁଲ୍ ଚାଲି ଆସିଲେ କେମିତି ହୁଅନ୍ତା ! ଚକରୀ ଯେମିତି ତାକୁ ମଦ ପିଆଇଥିଲି, ସେହି ପନ୍ଥାଟା ସେ ଭୁଲିଯାଇ ନ ଥିଲା । ଦିନେ ରାତିରେ ନଟିଆକୁ ସେ ସେହି ପନ୍ଥାରେ କାବୁ କରିଦେଲା । ତାକୁ ମଦ ପିଆଇ ଭୋଳ କରାଇ ସିଧା ସାହି ଦାଣ୍ଡେ ଦାଣ୍ଡେ ଘରକୁ ନେଇ ଆସିଲା । ତା ଆରଦିନ ଲାଗିଲା ଘମାଘୋଟ ଖଣ୍ଡ । ନଟିଆ ପଡ଼ିଲେ ଗୁମୁଡ଼ିଆ ବାନ୍ଧିବାକୁ ରାଜି ହୋଇ ଯାଇଥିଲା । କିନ୍ତୁ ରଘୁଆ ତାକୁ ବୁଝାଇ ବସିଲା—କାହିଁକି ? ଏତେ ଡର କାହାକୁ ? ଅଧିକାଂଶ ମୋର କି ଆଲୁଅଟା କରି ପକେଇଛି ? ମୁଁ ଏକା ତ ଆଜଯାଏ ତାକୁ ଚେଡ଼ ଦେଇ ରହିଲି । ମୋର କି ଅସୁବିଧାଟା ହୋଇଛି ? ସମସ୍ତଙ୍କର ତ ହୋଇ ହୋଇ, ଅଧିକାଂଶର କାହିଁକି ଗୁମୁଡ଼ିଆ ପାଇଁ ଏତେ ଜଗର ? ଗୋଟାଏ ଲୋକର ଜଗର କାହିଁକି ରହିବ ? ସେ କଅଣ ଦଣ୍ଡମାପିଆ ହୁଆ, ଆମେ କଅଣ ଛ ମାପିଆ ? ନାଁ, ତୁ କେବେହେଲେ ରାଜି ହୋ' ନା । କିନ୍ତୁ ଏକେଘରିକିଆ ଆମେ ଦି'ଜଣ ହେଲେ ଆମର ଆଉ ଉପାଙ୍କବ ।

ତହିଁ ଆରଦିନ ସକାଳେ ନଟିଆ ଦାଣ୍ଡରେ ଅଧିକାଂଶଙ୍କୁ ସାଫ୍ ସାଫ୍ ମନା କରିଦେଇ ରଘୁଆ ସାଙ୍ଗରେ ମିଶିଲା ।

କଥାରେ କହନ୍ତି, ଘୋଡ଼ାକୁ ଘୋଡା ସରି ନୁହେଁ । ଦୁଇଜଣ ହୋଇଯିବାରୁ ରଘୁଆର ହିମତ ଖୁବ୍ ବଢିଗଲା । ଦୁଇରେ ବି ତା ମନ ସନ୍ତୁଷ୍ଟ ରହିଲା ନାହିଁ । ସତିଆଟା ଯଦି ଆସି ତାଙ୍କ ସାଙ୍ଗରେ ମିଶନ୍ତା ତେବେ ତାଙ୍କ ଦଳଟା ବଡ଼ ଟାଣ ହୁଅନ୍ତା । ଦୁହେଁ ଅନବରତ ତା ଦେହରେ ଏକ କାଳ୍ପନିକ ରୋଗ ଜବରଦସ୍ତି ଆବିଷ୍କାର କରି ତାର ଅବ୍ୟର୍ଥ ଔଷଧ ମହୁଲ ମଦର ବ୍ୟବସ୍ଥା କଲେ । ଦୁଇଜଣ ସାଥି ଥିବାରୁ ସତିଆର ବେଶି କିଛି ଭୟ ରହିଲା ନାହିଁ । ଗାଁରେ ନିଶାପ ଭିତର ଦେଇ ତାକୁ ଆଉ ଦୁହିଁଙ୍କ ସହ ବୈଧାନିକଭାବରେ ମିଶିଯିବାକୁ ବେଶି ଡେରି ଲାଗିଲା ନାହିଁ ।

ତିନିରୁ ଚାରି, ଚାରିରୁ ପାଞ୍ଚ, ଏହିପରି ଭାବରେ ରଘୁଆ ଦଳ ବଢ଼ି ବଢ଼ି ଯେତେବେଳେ ଦଶରେ ପହଞ୍ଚିଲା ସେତେବେଳେ ଅଧିକାଂଶ ଟିକିଏ ଡରିଗଲା । ରଘୁଆ ଉପରେ ରାଗରେ କଡ଼ମଡ ହେବା ଛଡ଼ା ଆଉ କିଛି କରିପାରୁ ନ ଥାଏ । ଆଉ ଗୁମୁଡ଼ିଆ ବାନ୍ଧାଟା ଯଦି ନୂଆ ମଦଖିଙ୍କ ପାଇଁ ବ୍ୟବସ୍ଥା ନ କରୁଛି ତେବେ ରଘୁଆର ନିତାପଟଟା ହୋଇଯିବ । ନିଶାପ ଦୁଇ ରକମର ହୁଏ ବୋଲି କହି ସେ ତା ନାକବାଳ ତଳକୁ କାଟିଦେବ । ମନ ଭିତରେ ବହୁତ ଘଣ୍ଟାଚକଟା କରି ସ୍ଥିରକଲା,—ନାଃ ସେ ତାଆ ନଗର ରଖିବ । ଯେତେ ଯିବାର ଯାଆନ୍ତୁ । ଯାହା ହେବାର ହେଉ ପଛକେ ସେ କଦାପି ରଘୁଆ ପାଖରେ ନଇଁବ ନାହିଁ ।

ରଘୁଆ ଦଳ ଟାଣ ହେବାର ଦେଖି ସାହିବାଲାଏ କ୍ରମେ ଅଧିକାଂଶର ଟାଣ ମୁଠାରୁ ଗୋଟିଏ ଗୋଟିଏ ହୋଇ ଖସିଲେ । ଶେଷରେ ଏମିତି ହେଲା ଯେ, କାହାର ଆଉ କିଛି ଭୁଲପାଇଁ ନିଶାପରେ ସାମାନ୍ୟ ଦଣ୍ଡବିଚସେବାକୁ ବି ଏଡ଼ିଦେଇ ଲୋକେ ରଘୁଆ ଦଳକୁ ପୁଷ୍ଟକଲେ । ଫଳରେ ଅଧିକାଂଶ କ୍ଷୀଣ ହୋଇଗଲା । ବାକି ରହି ଯାଇଥିବା କେତେକ ଲୋକ ଅଧିକାଂଶଙ୍କୁ ବୁଝାଇଲେ—"ଦେଖ, ରଘୁଆ ଦଳତ ବେଶି ହୋଇଗଲା । ତାକୁ ଜାତିରେ ନେଇ ଗୋଟାଏ ମିଳାମିଶା କରିଦେବା । କୋଠ ଟଙ୍କାରୁ ଖର୍ଚ୍ଚ କରି ସମସ୍ତଙ୍କୁ ପଞ୍ଚାମୃତ ପିଆଇ ପ୍ରାୟଶ୍ଚିତ କରାଇଦେବା, ନ ହେଲେ ଏ ସାହିଟା ଜାଣ ଗଲା ।"

ଅଧିକାରୀ ଗର୍ଜି ଉଠିଲା "କେମନ୍ତ—ରଙ୍ଗୁଆ ପାଖରେ ମୁଣ୍ଡ ନୁଆଁଇବ; କାହିଁକି ମୁଁ କଅଣ ମଦ ଖାଇଛି କି ? ପଞ୍ଚଗବ୍ୟ ନ ପିଇ ପୁଣି କୋଠ ଟଙ୍କାରୁ ପଞ୍ଚାମୃତ ପିଇବେ ? ଗଲେ ତୁମେ ସମସ୍ତେ ରଙ୍ଗୁଆ ତରଫରେ ହେଲଣି । ଯାଅ ଗଲେ ଯାଅ, କାହାକୁ ବି ଡରିନ; ଏ ମୁଣ୍ଡ ଛୁଡ଼ିଯିବ ପଛେ ମୋ ଜଗର୍ ମୁଁ ଛାଡ଼ିବ ନାହିଁ । ଗଲେ ମୋ ପାଖରେ ରହି ବଶୀଷଣ ବନିଲଣି ।"

ଅଧିକାରୀ ବାହାରକୁ ଚୋଡ଼ ଦେଖାଇଲା ସତ, କିନ୍ତୁ ସମସ୍ତେ ଯେ ତାକୁ ଛାଡ଼ିଯିବେ, ତା ସେ ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲା । ଯେଉଁଦିନ ସମସ୍ତେ ତା ଜଗରରେ ଖଣ୍ଡଯାଇ ସଦଳବଳରେ ତାକୁ ଛାଡ଼ି ରଙ୍ଗୁଆ ଦଳରେ ଯୋଗଦେଲେ ସେଦିନ ତା ପିଳେହି ପାଣି ହୋଇଗଲା । ସେ ଏକଘରିକିଆ ହୋଇ ରହିବାକୁ ଯେତେ ଡରୁ ନ ଥିଲା, ସେତେ ଡରୁଥିଲା ତା ଅଧିକାରୀପଣକୁ । ସେଇଟା ଯେ ବାଆସ୍ତର ମଣ୍ଡଳରେ କଟିଯିବ । ତା ତରଫରେ ଅନ୍ତତଃ ପାଞ୍ଚଜଣ ଥିଲେ ବାଆସ୍ତରରେ ଅଧିକାରୀପଣଟା ବଜାୟ ରଖି ପାରନ୍ତା । ବର୍ତ୍ତମାନ କରେ କଅଣ ? ଚାରିଆଡ଼େ ଅନ୍ଧାର ଦିଶିଲାରୁ ସେ ଶେଷରେ ରଙ୍ଗୁଆ ଦଳରେ ମିଶିବାକୁ ଇଚ୍ଛା ପ୍ରକାଶ କଲା । ରଙ୍ଗୁଆ କିନ୍ତୁ ନଗ୍ରେଉଡ଼ବନ୍ଧା, ଅଧିକାରୀ ମିଶିବତ ଆଗ ଗୁମୁଡ଼ିଆ ବାନ୍ଧୁ । ସମସ୍ତେ ବି ଏଗୋଟାଏ "ହୋ"ରେ ମାତିଗଲେ —"ହଁ ଅଧିକାରୀ ଗୁମୁଡ଼ିଆ ବାନ୍ଧୁ" ତା ଜଗର୍‌ରେ ସମସ୍ତେ ରାଗି ଯାଇଥିଲେ । ଏଣେ ଅଧିକାରୀ ଦେଖିଲା ଗୁମୁଡ଼ିଆ ବନ୍ଧେଇ ଛଡ଼ା ଆଉ ଅନ୍ୟ ଉପାୟ ନାହିଁ । ଦୋଳ ବି ପାଖ ହୋଇ ଆସୁଥାଏ । ବାଆସ୍ତର ବୈଠକ ବସିବ । ତା ଆଗରୁ ଯଦି ଫଇସଲା ନ ହେଲେ ଅଧିକାରୀ ପଣ ଗଲା ସବା ଶେଷରେ ନିଜ ଜଗରକୁ ଚଳୁକରି ସେ ଗୁମୁଡ଼ିଆ ବାନ୍ଧିଲା । ରଙ୍ଗୁଆ ଅଧିକାରୀକୁ କୁଣ୍ଢାଇ ପକାଇଲା ଓ ଓର ଉଣ୍ଡି ଟିକଏ ମଦ ତା ପାଟିରେ ମାରିଦେଲା । ଅଧିକାରୀ କିନ୍ତୁ ଅବଶେଷରେ କହିଲା "ହଁ ମୋ ଜଗରକୁ ପୂରା ଚତୁ କରିଦେଲୁ ।"



# ଓଲଟ କଥା

ଟିକି ଦୋକାନଟିଏ ହେଲେ କଅଣ ହେବ, ସେଠି ପୃଥିବୀର ଦରଦାମ ହୋଇ ଖର୍ଦ୍ଦି ବିକ୍ରୀ ଚାଲେ । ବାହାରକୁ ଦେଖିବାକୁ ଚାଉଳ, ଡାଲି, ଲୁଣ, ତେଲ, ହଳଦିର ବଡ଼ି, ଘି ଇତ୍ୟାଦି ନିତ୍ୟ ବ୍ୟବହୃତ ଜିନିଷ କେତୋଟି; କିନ୍ତୁ ଭିତରେ ଯେଉଁଠି ଆଖି ନ ପଡ଼େ ସେଠି ଖୋଦ୍ ଈଶ୍ୱର ବିଜେ କରିଥାନ୍ତି । ଅର୍ଥାତ୍ ଈଶ୍ୱର ସୃଷ୍ଟ ସବୁ ଜିନିଷ ରହିଛି । ଏତେ ଟିକିଏ ଥାନ ଭିତରେ ଏତେ ଗୁଡ଼ାଏ ଜିନିଷ ରହିବ ବା କେମିତି ! ଅବଶ୍ୟ ମୂର୍ଖମାନଙ୍କର ଏ ସନ୍ଦେହ ହୋଇପାରେ, କିନ୍ତୁ ବୈଜ୍ଞାନିକମାନେ ରତିଏ ହେଲେ ଅବିଶ୍ୱାସ କରିବେ ନାହିଁ । କାରଣ ସେମାନେ ଜାଣନ୍ତି ଯେ ଆଖିକୁ ଦିଶୁ ନଥିବା ପରମାଣୁ ଭିତରେ ପୃଥିବୀକୁ ଉଡ଼ାଇ ଦେବା ଭଳି ବିରାଟ ଶକ୍ତି ଛପି ରହିଅଛି । ପରମାଣୁଠାରୁ କୋଟି କୋଟି ଗୁଣ ବଡ଼ ସେ ଟିକି ଦୋକାନରେ ବିଶ୍ୱ ବ୍ରହ୍ମାଣ୍ଡର ଜିନିଷ ରହି ନ ପାରିବ ବା କାହିଁକି ?

ଦୋକାନର ଜୀବନ ହେଉଛି ସନେଇ ଓ ତା ଗଜା ହେଣ୍ଡିଆ ପୁଅ ଦନେଇ । ସଂଯୋଗ ଓ ବିଯୋଗ ତଡ଼ିତ୍‌ରୁ ଯେପରି ଗୋଟିଏ ଅଭାବ ହେଲେ ବିଜୁଳି ଆଲୁଅ ନ ଜଳେ, ସେହିପରି ସନେଇ ବା ଦନେଇ ଜଣେ କାହାର ଅଭାବ ଘଟିଲେ ଦୋକାନ ଆଉ ନ ଚଳେ ।

ଗରାଖମାନେ ଡାକ୍‌ଫୁକାର ମତ ଦିଅନ୍ତି ଯେ ସନେଇ କଳାପୋତେଇଟା ଜବର ନେଇ ପଛକେ, ନ ମିଳିବା ଜିନିଷଟା ଆଣି ଦେବ । କେତେ ଗରାଖ ବି ତଉଲି ଦେଖିଛନ୍ତି ଯେ ଏଣେ ତେଣେ ଜିନିଷ ପାଇଁ ଧାଁ ଧପଟ କରିବାର ମଜୁରି ଓ ସନେଇର କଳାପୋତେଇଟା ସମାନ ନ ହେଲେ ବି ପାଖାପାଖି । ତେଣୁ ଜବର୍ କଳାପୋତେଇର ପ୍ରତିବାଦ କରିବାକୁ ଦରକାର ପଡ଼େ ନାହିଁ ।

ଦିନେ ବାପ ପୁଅ ବୁଢ଼ିଆଣୀ ପରି ଗରାଖ ମାଛି ଧରିବା ପାଇଁ ଦୋକାନ ଜାଲ ମେଲାଇ ବସିଛନ୍ତି, ଠିକ୍ ଏତିକବେଳେ ଏକା ସଙ୍ଗରେ ତିନିଟା ମାଛି ଆସି ଜାଲରେ ପଡ଼ିଲେ । ଜଣକର ଗୁରିଘୋଡଆ ରଙ୍ଗ ଡବାଏ, ଜଣଙ୍କର ରାଣୀମାର୍କା ବାର୍ନିଶ୍ ଟିଣେ ଓ ଆଉ ଜଣକର ଦି ଟଙ୍କା ନବାତ ଦରକାର । ଦରଦାମ ଛିଣ୍ଡି ଯିବାପରେ ସନେଇ ପୁଅକୁ ପଡଶାଘରୁ ସିଡ଼ି ଆଣି ଧୀରେ ଧୀରେ ସାଂଘା ଉପରେ ଚଢ଼ି ଡେରି ହେଉ ଥଛକେ ଆସ୍ତେ ଆସ୍ତେ ଜିନିଷ କାଢ଼ି, ଆଗ ତା ସିଢ଼ି ଫେରାଇ ଦେଇ, ତା' ପରେ ଜିନିଷତକ, ଆଣି ଦେବାକୁ ଆଦେଶ ଦେଲା । ବାପର କୋଉ ଖଷାବୁଝିପାରି ପୁଅ ଘର ଭିତରକୁ ଗଲା । ପଛଘରେ ଥିବା ସାଇକେଲଟି ବାଡ଼ଦୁଆର ମୁହାଁବାଟେ କାଢ଼ି, ବଜାରକୁ ଚାଲିଗଲା । ମାଛ ଭଜା କେଉଁଠି ଅଛି ତାହା ଆଉ କିଏ ଜାଣୁ ନ ଜାଣୁ ବିରାଡ଼ି ଚଟ୍‌କରି ଜାଣିଯିବ । ସେହିପରି ସନେଇର ପୁଅକୁ କୋଉ ଜିନିଷ କେଉଁଠି ତାହା ଜାଣିବାକୁ ଡେରି ଲାଗେ ନାହିଁ । ଜିନିଷତକ ଯୋଗାଡ଼ କରି ଚଞ୍ଚଳ କିପରି ଫେରିବ ସେଥିଲାଗି ସେ ଲାଗିପଡ଼ିଲା ।

ଏଣେ ସନେଇ ଗରାଖ ତିନି ଜଣଙ୍କୁ ଗପରେ ବୁଡ଼ାଇ ରଖିଥାଏ । ଯାତ୍ରାଦଳରେ ଦେଖଣାହାରିଙ୍କ ଆଗ୍ରହ କମି ଆସିଲେ ଯେପରି ଫାର୍ଶଟାଏ ବାହାରିପଡ଼େ, ଠିକ୍ ସେହିପରି ସନେଇ, ଗରାଖମାନେ ଚଞ୍ଚଳ ହୋଇ ପଡୁଥିବାର ଦେଖି ଘରଆଡ଼ ଦୁଃଖ ସୁଖ ଆରମ୍ଭ କରିଦେଲା । ଜଣେ ବିଗୁଣ ଦରଦ କଣ୍ଠରେ କହିଲା, "ଆଉ କୋଉଠୁ ଘର ପାଇବି ? ଝିଅଯାଟା ଦୁଇବର୍ଷ ହେଲା ମଲାଣି ଯେ ଆଜଯାଏ ଖୋଜି ଖୋଜି ମାଈ ପିଲାଟାଏ ପାଇଲି ନାହିଁ । ଆଉ ମୋର ଗୋଟାଏ କି ଘର ?" ସନେଇ ଆଖି ମେଲା କରି କହି ଉଠିଲା "ଏଁ ମାଈ ପିଲା ଅଭାବ ! ସନେଇ ଥାଉ ଥାଉ ! କେତେ ଦରକାର ? ଗୋଟା ପାଞ୍ଚ ଶହ, ସାବନା ତିନିଶହ, କାଳୀ

ଗଲେ । ଏ ଜରସମନରେ ସାଜ ତ ଟଙ୍କା ଦାଖଲ କର, ପଅର ଅପୁଷ ଦନ ଆଉକୁ ଫିଲ ପାଇବ । ଦ୍'ଦାଷ୍ଟ ପିଲ କଛୁ କମ୍ ପଡ଼ିବ ।'' ଜଣେ ଗସ୍ତଖ ମୂରୁକଦସା ଦେଇ କହିଲା—''ଯାଦା୯ଦଜ, ତମ ଦୋକାନରେ ବାପ ଛଡ଼ା ଆଉ ସବୁ ମିଳିବ ଦେଖୁଛୁ ।''

ଠିକ୍ ସମୟ ବେଳକୁ ଦନେଇ ଜନିଷ ସବୁ ଘରୁ କାଢ଼ିଲା ପରି ଗସ୍ତଖମାନଙ୍କୁ ଦେଲା । ଗସ୍ତଖତକ ଗ୍ଲଲଗଲେ । ଯେ ଗାମୁଛା କାନ୍ଧରେ ଝାଡ଼ିଦେଇ ଦଦରୁ ଝୋଳ ମାରିଲା । ଘଣ୍ଟାଏ ଯାଇଛି କି ନାହିଁ ଜଣେ ଆସି ଗ୍ଲଲଣ ଦଦର ଦସ୍ତା ପଚାରି ମାଗିଲା ।

ଦରଦାମ୍ କଷା କଷି ହୋଇ ଦଦର ପିଚ୍ଛା ଟ ୬୨ ଙ୍କା କଳାପୋଚେଇ ଛୁଣ୍ଟି ଟଙ୍କା ଦେଣ ନେଣ ହୋଇଗଲା ଓ ଦୁଇଦନ ବାଦ୍ ଜନିଷ ନେବାକୁ କହି ଗସ୍ତଖ ଗ୍ଲଲଗଲା । ସେ ଯିବା ବାଦ୍ ବାପ ପୁଅ ହିସାବ ଯୋଡ଼ିଲେ । ପରମିଟ୍ ବାବଦ ସପଲାଇ ଅମଲଙ୍କର ଦଦରକେ ତନ ଟଙ୍କା, ପିଅନ, ବାବୁମାନଙ୍କ ସିଗାରେଟ୍ ଓ ଜନିଷ ବୁହା ଖର୍ଚ୍ଚ, ଫାଣ୍ଡି ଜମାଦାର ପାଉଣା ସବୁ ମିଶି ପ୍ରାୟ ଦଦର ପିଚ୍ଛା ଆଉ ଟଙ୍କେ ଗଲେ ଲାଭ ମୋଟେ ଦୁଇଟଙ୍କା । ସେଥିରେ ପୁଣି ଏତେ ପରିଶ୍ରମ । ଶଳେ ଚଉକରେ ବସି କଅଣ କମ୍ ଅସୁସ । ଶଳାଙ୍କୁ କ୍ୟାପଷ୍ଟେନ ନ ହେଲେ ରୁଚବ ନାହିଁ । ଦ୍'ଅଣିଆ ଖିଲି ନ ହେଲେ ଫୋପାଡ଼ ଦେବେ । ଶଳେ ନନା କାଳେ କେବେ ଦେଖି ନ ଥିବେ । ଉଗ୍ର ସମାଲୋଚନା ପରେ ଦୁହେଁ ପୁଣି ସାଲସ ଆଉକୁ ଆସିଲେ ''ହଅ, ସେଥିରୁ କଅଣ ମିଳିବ ? ସମିଅକୁ ଗ୍ଲହିଁ ଚଳିବାକୁ ହେବ ।''

ଏହି ''ସମିଅକୁ ଗ୍ଲହିଁ ଚଳିବା'' ଲାଗି ମଣିଷ ଗୋଷ୍ଠୀ ଆଜଯାଏ ତିଷ୍ଠି ରହିପାରିଛି । ପ୍ରାଗ୍ ଐତିହାସିକ ଅତିକାୟମାନେ ଲୋପ ପାଇ ଯାଇଅଛନ୍ତି । ସନେଇ ଦନେଇ ତ ସେହି ମଣିଷ ଜାତି ।

ବାଡ଼ଆଡ଼େ ମାଲତକ ଗଦା କରିଦେଇ ଦନେଇ ତା'ବାପା ଆଗରେ କହିଲା ''ବାବା, ପାଞ୍ଚଅ ଦନ ମହ୍‌ଗତ କରିଥିଲେ ସବୁଯାକ ମାଲ କଣ୍ଟ୍ରୋଲ ରେଟ୍‌ରେ ପାଇ ପାରିଥାଆନ୍ତେ ।'' ଆଖି ଓ ପାଟି ମେଲାକରି ସନେଇ ବସିପଡ଼ିଲା । ତା' ମୁଣ୍ଡ ବୁଲେଇଗଲା । ପାଟିରୁ କଥା ବାହାରିଲା ନାହିଁ । କଛୁ ସମୟ ପରେ ଫସ୍ ଫସ୍ କରି କହିଲା ''ଏଁ, ୧୮୦ ଟଙ୍କା ପାଣିରେ ପକେଇଲୁ ? ଆବେ କ'ଣ କଲୁ, ଆବେ ତୁ କଅଣ କଲୁ ?''

ଦନେଇ କହୁଲା, "ମୁଁ କଅଣ କରବ, କାଲକ ମାଲ ଦରକାର ଥିଲା । ବାଲୁ ସାହୁର ଗୋଟାଏ ବାଗିନ୍ ଆସିବ; ବଲ୍‌ଟି ଛଡ଼ାଇବାକୁ ଗୃରଶହ ଟଙ୍କା ନାଘଟ୍ ପଡ଼ୁଥିଲା । ମୋର ଦରକାର ଥିବା କଥା ଜାଣିଲାରୁ ମୋତେ ଚକେଇ ଯିବାକୁ କହୁଲା; ଆଉବ ଆଗତ୍ତୁରା ଟଙ୍କା ଦେଲେ କଣ୍ଟ୍ରୋଲ ରେଟ୍‌ରେ ଦେବ ବୋଲ କହୁଲା । ମାଲ ଆସିବାକୁ ଛଅ ସାତ ଦନ ଡେର ଶୁଣି ମୁଁ ରାଜ ହେଲ ନାହିଁ ।

ସନେଇ ଭୂଇଁରେ ଲୋଟିଯାଇଁ କୋଡ଼ କଗ୍ଡ଼ ହୋଇ ପାଟି କରବାକୁ ଲଗିଲା—"ଆବେ ଶଳା କଅଣ କଲୁବେ; ଶଳାଟା ଟିକଏ ଅକଲ ଖର୍ଚ୍ଚ କଲୁ ନାହିଁ, ଶହେଅଶୀ ଟଙ୍କା ଗୁଡ଼ ଦେଲୁ ?"

"ମୁଁ କଅଣ କରବ, ଗରାଖ କଅଣ ସାତଦନ ସବୁରୁ କରଥାଆନ୍ତା ?"

"ଆବେ ଶଳା କଅଣ କଲୁବେ, ଗରାଖକୁ ୭ ମାସ ପଟି ଚଢ଼େଇ ଦେଇ ଥାଆନ୍ତ, ବହାନ୍ତ ବେଲକୁ ଲୁଚ ଯାଇଥାନ୍ତ ।" କୋଉ ଆମେ ଚା' ଜଳଖ ନ ଦେଇ ଥାଆନ୍ତେ; ଟିକଏ ଖାଲ ଡେର ହୋଇ ଯାଇଥାଆନ୍ତା । ଆବେ ତୁ ମୋ ପୁଅଟି, ଟିକଏ ହେଲେ ନଜ ଅକଲ ଲଗେଇଲୁ ନାହିଁ; ଓଃ କଅଣ କଲୁ ବେ !"

ପୁଅବ ଏହା ଶୁଣି ମୁଣ୍ଡରେ ହାତଦେଇ ବସିଗଲା । ବଡ଼ ବ୍ୟସ୍ତ ହୋଇ କହୁପକାଇଲା—"ଆଃ ମୁଁ ଶଳାଟା ଏତକ ଭାବପାର ଥାଆନ୍ତ କ? ଓଃ ଶହେ ଅଶୀଟଙ୍କା ! ମୁଁ ଶଳାଟା କଅଣ କଲ !" କଚ୍ଛକ୍ଷଣ ବାଦ୍ ବାପ ପୁଅ ଧୈର୍ଯ୍ୟ ଧର ବସିଲେ ।

ଦନେ ଗୋଟାଏ ବଡ଼ ଶିକାର ହାବୁଡ଼ଗଲା । ଜଣେ ଓକଲ ବାବୁଙ୍କ ଗୁମାସ୍ତା । ନୂଆ କୋଠା ତଆର ହେଉଥିଲା । ଓକଲ ବାବୁ ଯଥାସାଧ ଚେଷ୍ଟା କଲେ ବ ଦୁଇଟା ବସ୍ତା ସିମେଣ୍ଟ ଯୋଗାଡ଼ କର ପାରଲେ ନାହିଁ । ସେଥିରେ ପୁଣି ଦରକାର ଦୁଇଶହ ବସ୍ତା । ଘୂରଆଡ଼େ ବୁଲବୁଲ ଶେଷରେ ଗୁମାସ୍ତା ସନେଇ ପାଖରେ ପହଞ୍ଚିଲା । ସିମେଣ୍ଟ ହାଲ ସନେଇକୁ ଅଛପା ନ ଥାଏ । ସେ ହାଙ୍କିଲା ବସ୍ତା କୋଡ଼ଏ । ଗୁମାସ୍ତା ପେଟ ଭିତରେ ମନ ଇଚ୍ଛା ଗୁଡ଼ାଏ ଶୋଧିଲା, "ଶଳେ ଅଳପେଇପେ କଳାପୋତେଇରେ ପୃଥିବୀଟାକୁ ଗିଳିଦେବେ । କଳା ସୁଆଦ ପାଟିରେ ଲଗିଯାଇଛି । ଆଉ ବନ୍ଧ ବାଁଡ଼ ମାନେ କଏ ? ପାଞ୍ଚ

ଜାଗାରେ ଏକାବେଳକେ କୋଡ଼ିଏ । ହା ଅଲପେଇସେ ତୁମ ପେଟ ଫାଟିଯାଉ, ଶଳେ ପୃଥିବୀରୁ ଲୋପ ପାଇଯାଅ ।" ପେଟ କଥା ପେଟରେ ରଖି ମୁର୍ହି କଥା ଆରମ୍ଭ କଲା, "ଏତେ କଳାପୋତେଇ ! ଦବାନବା କଥା କୁହ ପାଞ୍ଚ ଜାଗାରେ ଦଶ ନଅ, ଏମିତି ବେକ କାଟିଲେ ଚଳିବ ?

ସନେଇ ନିର୍ଦ୍ଦୋଷପଣିଆ ଦେଖେଇ କହିଲା, "ମୋର କଅଣ ଅଛି, ମୁଁ ବସ୍ତାକେ ଆଠଣା ପାଏ କି ନ ପାଏ । ତୁମେ ଜାଣି ନ ଥିବ ଯେ ମୋତେ ପଡ଼ୁଛି !"

ବହୁତ ଝିକର ମକର ବାଦ ୧୫ ଟଙ୍କାରେ ଷଉ ଛିଣ୍ଡିଲା । ବହୁ ଜାଗାରୁ ସଂଗ୍ରହ କରିବାକୁ ପଡ଼ିବ ବୋଲି ସନେଇ ଟଙ୍କା ପାଇବା ପରେ ୭ଦିନ ସମୟ ନେଲା । ଗୁମାସ୍ତା ବାବୁ ସାଙ୍ଗରେ କଥାବାର୍ତ୍ତା କରି ବସ୍ତା ୧୫ଟଙ୍କା ହିସାବରେ ଦୁଇଶହ ବସ୍ତାର ଟଙ୍କା ସନେଇକୁ ଦେଇଗଲା । ଓକିଲ ବାବୁ ସେ, ଏତେ ଗୁଡ଼ାଏ ଟଙ୍କା ଅଣହୁସିଆର ହୋଇ ଦିଅନ୍ତେ କେମିତି ? ତାଙ୍କ ଆଦେଶରେ ପୂରା ଷ୍ଟାମ୍ପ ଓ ଟିପ ଚିହ୍ନ ଥିବା ରସିଦ ଖଣ୍ଡେ ଗୁମାସ୍ତା ସନେଇଠାରୁ କରିନେଲା । ସନେଇ ବି ଟିପ ନ ଦେଲେ ଗରଖଟା ଚୁଲିଯାଇ ପାରେ, ଏ ଭୟରେ ହାତ କାଟି ଦେଇଦେଲା । ଭୟ ହେବ ବା କାହିଁକି ? ବସ୍ତାକେ ୫ ହିସାବରେ ୨୦୦ ବସ୍ତାରେ ହଜାରେ ଟଙ୍କା ମୁନାଫା ମୋଟେ ୭ଟା ଦିନରେ । ଗୁରିଥର ଗଣି ତିନି ହଜାର ଟଙ୍କାର ନୋଟଗୁଡ଼ାକ ଅତି ସାବଧାନରେ ନସ ରଖିଲା ।

ସପ୍ଲାଇ ହାକିମ ଯେତେବେଳେ ସିଗାରେଟ୍ଟା ନ ନେଲେ ସେତେବେଳେ ଯାଇ ଦନେଇ ବୁଝିଲା ଯେ ସିମିଟି ଅବସ୍ଥା ବଡ଼ ଗୁରୁତର । ଯାହାହେଉ ହାକିମ ପୂର୍ବ ସ୍ନେହ ସବୁ ସ୍ମରଣ କରି ଆଗରୁ କଏ କଏ ମୋଟା ପରମିଟ ନେଇଛନ୍ତି । ସେମାନଙ୍କର ଠିକଣା ବତାଇ ଦେଲେ । ଦନେଇ ଛୁଟିଲା ସେମାନଙ୍କ ପାଖକୁ ।

ଦୁଇ ତିନି ଯାଗାରୁ ଫେରିବାରୁ ଦନେଇ ମନରେ ଗୁଡ଼ାଏ ପ୍ରଶ୍ନ ଜାଗିଲା । "ସିମିଟି କାହିଁକି ମିଳୁ ନାହିଁ ? ଚୂନ ଆଉ ସିମିଟିରେ କଣ ତଫାତ୍ ? ଲୋକେ କାହିଁକି ଚୂନରେ ଘର ତିଆରି କରୁ ନାହାନ୍ତି ? ପୁରୁଣାକାଳିଆ ଚୂନ ତିଆରି କୋଠାସବୁ କଅଣ ମଜଭୁତ ନୁହେଁ ? ଆମ ଦେଶରେ ସିମିଟି ବେଶୀ ହେଉ ନାହିଁ କାହିଁକି ?" ଜୁଆ ବସିବାକୁ ଡାଲ ଖସିବା ପରି ଦନେଇ ମୁଣ୍ଡରେ ଏ ପ୍ରଶ୍ନ ସବୁ ଉଠିଲାବେଳେ ପ୍ରଦ୍ଧାଳିତ

ରୁପାକୁଦ ସିମେଣ୍ଟ ଫ୍ୟାକ୍ଟଗୀର ଜଣେ ଅଂଶ ବିକ୍ରେତା ଦଲାଲ ଆସି ହାବୁଡ଼ିଗଲା । ଦଲାଲଟା ଗୀମା କୋମ୍ପାନୀ ଏଜେଣ୍ଟଙ୍କ ଠାରୁ ଅଧିକ ମାରାତ୍ମକ ।

ଦନେଇ ଘାଇରେ ପାଣି ଛୁଟିଲା ପରି ତା ମୁହଁରୁ କଥା ଗୁଡ଼ାକ ଛୁଟିଲାଗିଲା—"ରୂପା ପରି ବର୍ଣ୍ଣ ଗେଙ୍ଗୁଟିର ବିରାଟ ଖଣି ଉପରେ କାରଖାନା ବସୁଥିବାରୁ ତା ନାଁ ରୁପାକୁଦ ସିମେଣ୍ଟ ଫ୍ୟାକ୍ଟଗୀ । କେବଳ ଗେଙ୍ଗୁଟି ନୁହେଁ ଗେଙ୍ଗୁଟିକୁ ଛାଡ଼ି ବାଦ୍ ଦୁଇଟି ବଡ଼ ଜିନଷ କୋଇଲା, ଗ୍ରାଫାଇଟ ଖଣି ମଧ୍ୟ ପାଖେ ପାଖେ ରହିଛି । ଏମିତିଆ ଠିକଣା ଥାନ କୋଉ ସିମେଣ୍ଟ କୋମ୍ପାନୀର ନାହିଁ । ବଜାରରେ ଯେଉଁ ସିମେଣ୍ଟ ପାଞ୍ଚ ଟଙ୍କା, ଆମେ ତାକୁ ଅଢ଼େଇ ଟଙ୍କାରେ ଦେଇ ପାରିବୁ । ଦନେଇ ପାଟି ନାଲେଇଗଲା । ଦଲାଲ୍ କହି ଲାଗିଲା—"ଦେଶରେ ଆମର ନାହିଁ ନଥିବା ସିମେଣ୍ଟ ଦରକାର । ବନ୍ଧ, ବାଡ଼, ଡ୍ରାମ୍, କୋଠାବାଡ଼ି, ପୋଲ ତ ଅସୁମାରି ତିଆରି ଚାଲିଛି । ଆମ ଦେଶରେ ସିମେଣ୍ଟ ତିଆରି ହେବ ବୋଲି ସରକାର ବିଦେଶରୁ ଆସୁଥିବା ମାଲକୁ ବନ୍ଦ କରିଦେଲେ । ଯିଏ ସିମେଣ୍ଟ କୋମ୍ପାନୀ ଗଢ଼ୁଛି ତାକୁ ସରକାର ଅଞ୍ଜୁଳା ଅଞ୍ଜୁଳା ଟଙ୍କା ଦେଉଛନ୍ତି । ଆମ କୋମ୍ପାନୀରେ ଅଧେ ଟଙ୍କା ସରକାରୀ । ବାକି ଅଧ ଅଂଶ ବିକ୍ରି ହୋଇ ଲୋକଙ୍କଠାରୁ ମିଳିଯିବା ଉପରେ । କାରଖାନା ଏକଦମ ରେଲ ଷ୍ଟେସନ ଉପରେ । ଯନ୍ତ୍ରପାତି ଖଞ୍ଜାଖଞ୍ଜି ସରିଲାଣି । ଆଉ ମାସକରେ ମାଲ ସହରକୁ ଆସିବ । ଆମ କୋମ୍ପାନୀ ସମସ୍ତଙ୍କୁ ବଳିଯିବ । ଖାତିର କିଛି କମ୍ ନାହିଁ । ପାଞ୍ଚ ଲକ୍ଷ ଟଙ୍କାର ଅଂଶ ୧୫ ଦିନରେ ବିକ୍ରି ହୋଇଗଲା । କେବଳ ମୋର ଗୋଟିଏ ସାଙ୍ଗ ପାଇଁ ଛଅ ହଜାରର ଅଂଶ ମୁଁ ଆଗରୁ ଅଟକାଇ ଦେଇଥିଲି । କାଲି ସେତକ ବି ଯିବ ।"

ଦନେଇ ପଚାରିଲା "ଆଚ୍ଛା ଯେଉଁମାନେ ଅଂଶ କିଣିବେ ସେମାନଙ୍କୁ କୋମ୍ପାନୀ କେମିତି ଲାଭ ଦେବ ?"

ଥୋପ ଆଡ଼କୁ ମାଛ ମୁହଁଇ ଥିବାର ଦେଖି ଦଲାଲ୍ ଉତ୍ସାହର ସହ କହିଲାଗିଲା "କମ୍ପାନୀ, ଅଂଶୀଦାରଙ୍କ କୋମ୍ପାନୀ । ସେମାନେ ଆଗେ ପାଇବେ, ଆଉ ପାଇବେ କାରଖାନା ଦରରେ । ତୁମକୁ ମୋଟେ ପଡ଼ିବ ବସ୍ତା ଦୁଇଟଙ୍କା ।

ଧନେଇ ମନେ ମନେ ଭାବିଗଲା, ବସ୍ତା ଦୁଇଟଙ୍କା, ଖର୍ଚ୍ଚବାର୍ଚ୍ଚ ଯାଉ ଟଙ୍କାଏ, ମୋଟ ତିନି ଟଙ୍କା ଗଲେ ବସ୍ତାକେ ୧୨ ଟଙ୍କା ଲାଭ । ଦୁଇଶହ ବସ୍ତାରେ ୨୪ ଶହ ଟଙ୍କା ଲାଭ, ଗୋଟିଏ ମାସରେ । ଝିଅ ବେଳକୁ ବାବା ତ କହୁଥିଲା ୭ମାସ ପରେ ମାରିଦେଇ ପାରିବ । ଆଶାର ଲୋଭନୀୟ ନାଳ ଆଲୁଅ ତା ଭିତରେ ଜଳିଉଠିଲା । ଏତେ ଗୁଡ଼ାଏ ଲାଭର ସମ୍ଭାବନା ତାକୁ ବି ଟିକିଏ ଅବଶ କରି ପକେଇଲା । ହେଲେ ଟୋକ ପଚାରିଲା "ଆଚ୍ଛା; ଏ ସବୁ ଠିକ୍ ବୋଲି ଜାଣିବ କେମିତି ?"

"ଆରେ ମୁଁ ପରା କୋମ୍ପାନୀ ଲୋକ ! ଆଉ ବି ମୋ କଥାରେ ଏକଦମ୍ ବିଶ୍ୱାସ କରିପିବା ଠିକ୍ ନୁହେଁ । ହେଇ ସେ ଛକ ଉପରେ ଥିବା କୋମ୍ପାନୀର ଅଫିସ ସେଇ ଦ' ମହଲା କୋଠାକୁ ଚାଲ, ସବୁ ବୁଝିପାରିବ ।"

"ଆଚ୍ଛା କହିଲ, ସେ ଛଅହଜାର ଟଙ୍କା ଅଂଶରୁ ତିନିହଜାର ଟଙ୍କାର ଅଂଶ ମିଳିବପାରିବ ?"

କୁଣ୍ଠେଇ କୁଣ୍ଠେଇ ଦଲାଲ୍ କହିଲା "ତା କେମିତି ହେବ ? ଆଚ୍ଛା, ତୁମେ ଯଦି ନେବ ତେବେ ଚାଲି ବାବୁଙ୍କୁ ନେହୁରା ହୋଇ ତୁମକୁ ତିନି ହଜାର କରେଇ ଦେବି । ବାକି ଅଧିକ ପଛେ ସାଙ୍ଗଙ୍କୁ ଦେବି । ମୁଁ ଜବାବ ଦେଇ ପାରିବି ନାହିଁ; ତେବେ ଚାଲି ବାବୁଙ୍କ ପାଖକୁ ।

ମିଠେଇ ଦେଖି ପିଲାଏ ପଛେ ପଛେ ଗଲା ପରି ଧନେଇ ଦଲାଲ୍ ପଛେ ପଛେ ଯାଇ ଅଫିସରେ ପହଞ୍ଚିଲା । କଲଟର, ଧପୋଟିଙ୍କ ପରି କୋଟ, ପେଣ୍ଟ ପିନ୍ଧା ବାବୁମାନେ ତା ମନରୁ ସବୁ ସନ୍ଦେହ ଦୂର କରିଦେଲେ । ସେ ନିଧାର୍ଯ୍ୟ ଭାବେ ଜାଣିଗଲା ଯେ ଆଉ ମାସେ କମ୍ବା ଆଉ କିଛି କମ୍ ଦିନରେ ସେ ବସ୍ତା ଦୁଇଟଙ୍କା ହିସାବରେ ମନ ଇଚ୍ଛା ଯିମିତି ପାଇବ । ଏକା ମାସକେ ଗୋଟାଏ ଖେପରେ ଠନ୍ ଠନ୍ ୨୪ଶହ ଟଙ୍କା ମିଳିବ । ସାତ ମାସ ଅପେକ୍ଷା କରିବାକୁ ତିଆର ଥିବା ବାବା ମାସେ କି ତା'ଠୁ କମ ସମୟ ନିଶ୍ଚେ ଅପେକ୍ଷା କରିପାରିବ । ତାର ଏ ପାରିଲା ପଣ ଦେଖି ତାକୁ ନିଶ୍ଚେ ମୁଣ୍ଡରେ ବସାଇବ ।

ମାଛକୁ ଧରି ଦଲାଲ୍ ଏକାବେଳକେ ଖାଲେଇ ଭିତରେ ପକାଇଦେଲା । ତିନି ହଜାର ଟଙ୍କା ଅଂଶର କାଗଜ ନେଇ ଧନେଇ ଘରକୁ ଆସିଲା । ଦଲାଲ ତା କମିଶନ ନେଇ ଗଲା ତା ଘରକୁ ।

ସବୁ ହାଲ୍ ଜାଣି ସନେଇ ବାଉଳା ହୋଇଗଲା । ବଚଗ୍ର ବେଶି ହାଲକ ଖାଇଲା, ଗରଖଣ୍ଟା ଓକଲ ହୋଇଥିବାରୁ । ସେଥିରେ ପୁଣି ଶତମତ ହାତକଣ୍ଟା ରସିଦ; ତମସୁକର ବଡ଼ବାପା । ପାଗଳା ମୁଣ୍ଡରେ ବରୁଡ଼ ମାରବାର ଅବସ୍ଥା ତାର ହେଲା । ଆମ୍ବ ଗୋଟାଇବାକୁ ଯାଇ ପୁହମଣି ଯେ ପର ଟଙ୍କାରେ ଚୋଟା କଣି ପଠକଇବ ତା ସେ ଭାବ ପାର ନ ଥିଲା । ଓକଲର କଳାପୋଷାକ ପର ତାକୁ ଘୁରଆଡ଼ ଅନ୍ଧାର ଦଶିଲା । କଚେରର ଲୋକ ଗହଳରେ କାନ ଭଁ ଭଁ ହେଲା ପର ତା କାନ ଭଁ ଭଁ ହେଲା । ବର୍ଷକ ଭତରେ ବ ସିମିଟି କାରଖାନାରୁ ବାହାରବାର ଆଶା ନ ଥିଲା । ଏଣେ ଓକଲବାବୁ ଅଥପୁ

କୋମ୍ପାନି ବାବୁମାନଙ୍କ, ଓକଲ ତଥା ଗୁମାସ୍ତାବାବୁଙ୍କର ଗୋଡ଼ତଳେ ମୁଣ୍ଡିଆ ମାର ମାର ବଣ୍ଡି ହେଲା ପଛକେ କଛି ଲଭ ହେଲା ନାହିଁ । ନଜ ଭାଗ୍ୟକୁ ନନ୍ଦ ମଲା ମୁଷାଟି ପର ପଡ଼ରହିଲା । ମନ କଥା ମନରେ ଥାଏ, କହିବ ବା କାହା ଆଗେ ?

କଚେରକୁ ତାର ଘନ ଘନ ଦଉଡ଼ା ଦେଖି ଜଣେ ବଣ୍ଣାର୍ଥୀ ସାଙ୍ଗ ପଚାରଲା "ସନା ଭାଇ, କଚେରକୁ କାହିଁକ ଯାଉଛୁ କରେ, କଅଣ ହୋଇଛି କ ?"

ଫଁ କର ଦୀର୍ଘଶ୍ୱାସଟାଏ ପକେଇ ସନେଇ କହିଲା "ପୁଅକୁ କଳାପୋତେଇ କରବାକୁ ପଠେଇଥିଲ, ପୁଅ ମୋର ଓଲଟା କଳାଟାଏ ଆଣି ମୋତେ ସଇ କରଛି । ଏକାବେଳକେ ଓଲଟା କଳା; ଯେତେ ଟାଣିଲେ କଅଣ ବାହାରୁଛି··?"

—ঃ✳ঃ—

# ମହର୍ଗରୁ କାନ୍ତାର

କଥାରେ ଅଛି ତେଲ ବଳିଲେ ଜାଗା ଅଜାଗାରେ ଲାଗେ । ଗଦେଇବାବୁ ସେଦିନ ଗାଧୋଇଲାବେଳେ ବଳିଥିବା ଟିକିଏ ତେଲକୁ ହ'ପାପୁଲିରେ ନେଇ ପଛଆଡ଼େ ବୋଳୁ ବୋଳୁ ବାଁ ପିଠି ପାଖରେ ଅଟକି ଗଲେ । ବାଁ ପିଠିଟା ଯେ ସ୍ୱାଭାବିକ ଅବସ୍ଥାରେ ନାହିଁ, ତା ସେ ଅନାୟାସରେ ଜାଣି ପାରିଲେ । ବାଁ ପିଠିର ଗୋଟାଏ ଟଙ୍କା ଆକାରର ଜାଗା ହାତକୁ ବେଶ୍ ଅସ୍ୱାସ୍ଥ୍ୟକର ଜଣା ପଡ଼ିଲା । କଥାରେ କହନ୍ତି ଅଥାନରେ ବଥ ହେଲେ ଦେଖି ହୁଏନି କି ଦେଖେଇ ହୁଏନି । କଥାଟା ଯେ ଶତକଡ଼ା ଦୁଇଶହ ସତ ତାହା ଗଦେଇବାବୁ ଏତେବେଳେ ଯାଇ ବୁଝି ପାରିଲେ । ଘର ଭିତରେ ପଶି କବାଟଟା ଭିତରୁ କିଳି, ଖିଡ଼କିଟା ମେଲି କରି ଦେଇ, ସେହି ଆଲୁଅରେ ବାଁ ପିଠିସ୍ଥିତ ସେହି ଟଙ୍କାଏ କ୍ଷେତ୍ରଫଳ ବିଶିଷ୍ଟ ଅସ୍ୱାଭାବିକ ଓ ଅସ୍ୱାସ୍ଥ୍ୟକର ସ୍ଥାନଟିକୁ ଦେଖିବା ପାଇଁ ଏକ ପ୍ରକାର ସାଧନା ଆରମ୍ଭ କରିଦେଲେ । ପ୍ରଥମରେ ତଳେ ବସିପଡ଼ି, ଆଗକୁ ଝୁଙ୍କି ମୁଣ୍ଡକୁ ଜୀବନ ମୂର୍ଚ୍ଛା ତଳକୁ ମାଡ଼ି ବାଁ ପିଠିସ୍ଥିତ ଲକ୍ଷ୍ୟସ୍ଥଳଟିକୁ ଆବିଷ୍କାର କରିବାକୁ ଚେଷ୍ଟା କଲେ; କିନ୍ତୁ ତାଙ୍କର ସମସ୍ତ ଉଦ୍ୟମକୁ ବ୍ୟର୍ଥ କରି ଲକ୍ଷ୍ୟସ୍ଥଳଟି ଦୃଷ୍ଟିଶକ୍ତିର ଅନ୍ତରାଳରେ ସଫଳତାର ସହ ଆତ୍ମଗୋପନ କଲା । ଗଦେଇବାବୁ କିନ୍ତୁ ହଟିବାର ପାତ୍ର ନୁହନ୍ତି । ଯେତେହେଲେ ସେ ମଣିଷ, ଯେଉଁ ମଣିଷର ରହସ୍ୟ ଉଦ୍‌ଘାଟନ ଉତ୍କଣ୍ଠା ଦୁର୍ଜୟ ଏଭରେଷ୍ଟ ଗିରିଶୃଙ୍ଗକୁ ପଦାନତ କରି

ପାରିଛି । ଚନ୍ଦ୍ରର ଅନ୍ୟ କଡ଼ର ଛବିକୁ ସର୍ବସାଧାରଣଙ୍କର ଦୃଷ୍ଟିଗୋଚର କରାଇ ପାରିଛି । ଦୁର୍ଭେଦ୍ୟ ଘନାନ୍ଧକାର ବିଶିଷ୍ଟ ମହାସାଗରର ଅତଳ ଶଯ୍ୟା ଉପରେ ସନ୍ଧାନୀ ଆଲୋକ ପକାଇ ପାରିଛି, ପରମାଣୁର ଭଣ୍ଡାର ଘରେ ଥିବା ଅସରନ୍ତି ଶକ୍ତିର ସନ୍ଧାନ ଦେଇଛି । ତେବେ ଗଦେଇବାବୁ କିଆଁ ବାଁ ପିଠିସ୍ଥିତ ଅସ୍ୱାସ୍ଥ୍ୟକର ଟଙ୍କାଏ କ୍ଷେତ୍ରଫଳ ବିଶିଷ୍ଟ ଚର୍ମକୁ ଦେଖି ନ ପାରିବେ । ପ୍ରଥମ ଉଦ୍ୟମରେ ବିଫଳ ମନୋରଥ ହୋଇ ସେ ଗୋଟାଏ ଆରସି ଆଣିଲେ । ଖିଡ଼କିର ଆଲୁଅକୁ ପଛ କରି ପିଠି ପଛରେ ଆରସିଟାକୁ ଧରି ବିଭିନ୍ନ କୋଣ କରି ବଙ୍କେଇଲେ । ଆରସି ପିନା ପିଠିର ଦୃଶ୍ୟକୁ ପ୍ରତିଫଳିତ କଲା, ହେଲେ ଦୁଇ ଆଖି ତାହା ଭଲ ଭାବରେ ଗ୍ରହଣ କରି ପାରିଲେ ନାହିଁ । କାରଣ ମୁଣ୍ଡଟା ଯଥେଷ୍ଟ ବଙ୍କେଇ ହେଲା ନାହିଁ । ଏ ପନ୍ଥାରେ ବି ଗଦେଇ ବାବୁ ବିଫଳ ହେବାରୁ ହତାଶ ହୋଇ ପଡ଼ିଲେ ସତ କିନ୍ତୁ ଭାଙ୍ଗି ପଡ଼ିଲେ ନାହିଁ । ମଣିଷର ତ କେବଳ ଗୋଟିଏ ଇନ୍ଦ୍ରିୟ ନାହିଁ, ଅନ୍ୟ ଇନ୍ଦ୍ରିୟମାନଙ୍କ ସାହାଯ୍ୟରେ ସେ ଗୋଟିଏ ଜିନିଷର ଧାରଣା କରିପାରେ । ପବନକୁ ତ ମଣିଷ ଦେଖିନି ତଥାପି ତାର ଅସ୍ତିତ୍ୱ ସ୍ପର୍ଶ ଶକ୍ତି ବଳରେ ଉପଲବ୍ଧି କରି ପାରିଛି । ତେଣୁ ଗଦେଇବାବୁ ବାଁ ପିଠିସ୍ଥିତ ସେହି ଅସ୍ୱାସ୍ଥ୍ୟକର ସ୍ଥାନଟିକୁ ନ ଦେଖି ପାରିଲେ କି ମୁସ୍କିଲ ହୋଇଗଲା । ସ୍ପର୍ଶ କରି କଅଣ ସେ ତାର ସ୍ୱରୂପଟା ଜାଣି ପାରିବେନି ? ଗଦେଇ ବାବୁ ଶେଷରେ ସେହି ସ୍ଥାନରେ ତେଲାକ୍ତ ଅଙ୍ଗୁଳି ବୁଲେଇ ବୁଲେଇ ଗଲେ । ଶୀତୁଳିଆ ହବପରି ? ନିଶ୍ଚୟ ବିଥ, ବାଳମୁଳିଆ କି ଆଉକିଛି ଚର୍ମ ରୋଗର ଆବିର୍ଭାବ ହେଉଛି । ଠିକ୍ ଟଙ୍କାଏ ଆକାରର ସ୍ଥାନ । ଚତୁଃପାର୍ଶ୍ୱସ୍ଥିତ ସ୍ୱାସ୍ଥ୍ୟକର ଚମଠାରୁ ଅଳ୍ପ ଉଚ୍ଚତର, ଗୋଟିଏ ଥାନରେ କିଛି ନୂଆମାଟି ପକାଇ ଥାପୁଡ଼େଇ ଦେଇଥିଲେ ଠିକ୍ ଯେମିତି ହୋଇଥାଏ । ତା'ଉପର ଚମଟା ଆଙ୍ଗୁଠିକୁ ଟିକିଏ ଅଧିକ ଚକ୍‌କଣ ଓ ଟାଣ ଲାଗିଲା, ଅଧିକ ଉଷୁମ ବି ଲାଗୁଥାଏ । ଗଦେଇ ବାବୁ ବେଖାତିର କରିଦେଲେ, ଭାବିଲେ ସାତକାମୁଡ଼ା କି ଗୁଡ଼ପୋକ କି ଅବା ଜହଲା ନାଲି ପିମ୍ପୁଡ଼ିଙ୍କ କାମ, ଘୁଏଁ ଘୁଏଁ ତିନିଁ ଆରଦିନକୁ କମି ଯିବ । ଏହାଭାବି ସେ ତେଲ ପାପୁଲିକୁ ଭଲ କରି ହ'ପିଠିରେ ଘଷିଦେଇ ଗାଧୋଇବାକୁ ଚାଲିଗଲେ । ଗାଧୋଇଲାବେଳେ ଗାମୁଛା ହ'ଟିର ରଗଡ଼ା ଦେବାକୁ ବି ଭୁଲିଲେ ନାହିଁ ।

ନିତ୍ୟକର୍ମ ସବୁ ସବୁ ଦଶ ବାଜେ କି ନ ବାଜେ । ତରତର ହୋଇ ଖାଇ ବସିଲେ । ତରକାରିଟା କାହିଁକି କେଜାଣି ମୁଖରୋଚକ ହୋଇନି । ତେନ୍ତୁଳି, ଚନ୍ଦନଚୂନା ପିଆଜ, ଅଦା, ଲୁଣ, ଲଙ୍କର ବରାଦ ହେଲା ଓ ବରାଦ ମୁତାବକ ତାଙ୍କୁ ବ ଯୋଗାଇ ଦିଆଗଲା । ତେନ୍ତୁଳି ପାଣିଟା ତାଙ୍କୁ ଏତେ ଭଲ ଲାଗିଲା ଯେ ସେ ପଥୁରିଟାକୁ ଘୃଣ୍ଟି ପକେଇଲେ । ତା ଉପରେ ପୁଣି ଗିନାଏ ଦହି । ଖିଆପିଆ ସାରିଦେଇ ଓ ପାଟିରେ ପାନ ଖଣ୍ଡେ ଗୁଞ୍ଜିଦେଇ ସେ ଧାଇଁଲେ ଅଫିସକୁ । ଧାଇଁଲାବେଳେ ବାଁ ପିଗ୍ଗୁଟା ଟିକିଏ ଲାଗିଲା ପରି ଜଣା ପଡ଼ୁଥାଏ । ହେଲେ ଅଫିସ ଓ ଅଫିସରଙ୍କ ଚିନ୍ତା ତାଙ୍କୁ ଏକାବେଳେକେ ଦାବି ଦେଇଥାଏ । ଅଫିସ୍‌ର ଚଉକିଟା ପଟା ଚଉକି, ପିଗ୍ଗୁକୁ ଭାରି ହାଡ଼ୁଆ ଜଣାଗଲା । ଅଫିସର ହୋଇଥିଲେ ଅବା ରବର ଫୋମ ଗଦିଟାଏ ଚଉକି ଉପରେ ପଡ଼ିଥାଆନ୍ତା, କିନ୍ତୁ ସେ ଯେ ମାତ୍ର ଜଣେ କିରାନି । ହାଡ଼ୁଆ ଚଉକି ଉପରେ ଦୀର୍ଘ ଛଅଘଣ୍ଟା ଅବିଚ୍ଛିନ୍ନ ଭାବରେ ବସିବା ପରେ ବାଁ ପିଗ୍ଗୁ ତାଙ୍କର ଏକପ୍ରକାର ବିଦ୍ରୋହ କରିଉଠିଲା । ଦିହଟା, ବି ତାଙ୍କର ଟିକିଏ ଶିର୍ ଶିର୍ ଲାଗିଲା । ଘନ ଘନ ହାଇ ତାଙ୍କୁ ବିବ୍ରତ କରିପକାଇଲା । ଦୁଃଖ କଷ୍ଟ ଜର୍ଜ୍ଜରିତ ବାମ ପିଗ୍ଗୁର ଆର୍ତ୍ତନାଦ ସେ ଏକପ୍ରକାର ଶୁଣି ପାରିଲେ । ତାର ବିକଳ ଅବସ୍ଥା ଅନୁଭବ କରିବାଲାଗି ସେ ବାମ ପାପୁଲିକୁ ତା'ଉପରେ ଚଳାଇ ଜାଣିଲେ ଯେ ତାହା ବିଶେଷ ସ୍ଫୁଟିତ, ଦ୍ୱିଗୁଣ ସ୍ଫୀତ ପାପୁଲିର ସ୍ପର୍ଶ ପାଇବାକୁ ଅନିଚ୍ଛୁକ । ଅବସ୍ଥାର ବିଶେଷ ଅବଗତି ନିମନ୍ତେ ସେ ଟିକିଏ ଠିଆ ହୋଇପଡ଼ି, ଚାଲିବାର ଉପକ୍ରମ କଲେ । କିନ୍ତୁ ହାୟୁହାୟୁ ସେ ବର୍ତ୍ତମାନ ବୁଝିପାରିଲେ ଯେ ତାଙ୍କ ବାମପିଗ୍ଗୁ ତାଙ୍କ ସହିତ ଘୋର ଶତ୍ରୁତା ଆଚରଣ କରିଅଛି । ଏ ଶତ୍ରୁତା ଏତେ ଉଗ୍ର ଯେ ତାଙ୍କର ଚଳତ୍‌ଶକ୍ତି ଏକାବେଳେକେ ବନ୍ଦ ହୋଇଯିବା ଉପରେ । ଏକ କ୍ଷୀଣ ଆର୍ତ୍ତନାଦ ତାଙ୍କ ମୁହଁରୁ ବାହାରି ଆସିଲା—"ଆଃ" ।

ପାଖରେ ବସିଥିବା ସଙ୍ଗୀ କିରାନି ବନମାଳି ବାବୁ ପଚାରିଲେ···"କଅଣ ହେଲାକିରେ ଗଦେଇ ?"

ଗଦେଇ ବାବୁ କୁନ୍ଥେଇ କୁନ୍ଥେଇ କହିଲେ···"ଗାଧୋଇ ଗଲାବେଳେ ସାମାନ୍ୟ କୁଣ୍ଡିଆଟାଏ ବାଁ ପିଗ୍ଗୁରେ ହୋଇଥିଲା । ବର୍ତ୍ତମାନ

ଦେଖୁଛୁ ଏହା ଏକ ପ୍ରକାଣ୍ଡ ବଥର ପୂର୍ବାଭାସ ପରି ଜଣା ଗଲାଣି । ତାର କୋପରେ ଦଦଟା ଶିର୍ ଶିର୍ ହେଉଛି । ଜଣାଯାଉଛି ଆଜ ଘରକୁ ଗୁଲକରି ଯାଇ ପାରିବନି ।”

“ହେଲ—ହେଲ—ତୁମେ ତେଲହାତ ମାରିଦେଇଛ, କୁଣ୍ଡିଆଟା ପଷାଣ ହୋଇଗଲା । କୋଉଦିନ ତମର ବୁଦ୍ଧି ହବଟେ । ଏତକ ଟିକଏ କଥା ମାଲୁମ ନାହିଁ, ତେଲଧାର ବାଜିଲେ କୁଣ୍ଡିଆ, ବାଲମୁଳିଆ ଶିତୁଳିଆ ସବୁ ପଷାଣ ହୋଇଯାଏ । କଅଣ କଲ ! କ ହଇରଣ ନ ହେବ, ଯାଅ ଗୋଟାଏ ରିକ୍ସାରେ ବସି ଶୀଘ୍ର ଘରକୁ ପଳାଅ, ଗୋଟିଏ ଅକାନମିନ ପତରରେ ଟିକଏ ଘିଅମାରି, ନିଆଁରେ ଟିକଏ ସେକଦେଇ ବଥ ଉପରେ ପକେଇ ଦେବ । ପଚେଇବାର ଥିଲେ ପଚେଇ ଦେବ, ବସେଇବାର ଥିଲେ ବସେଇ ଦେବ ।

କଡ଼ଦେଇ ଯାଉଥିବା ରଘୁବାବୁ ସେଇଠି ଅଟକିଗଲେ । ବ୍ୟବସ୍ଥା ପତ୍ର ଶୁଣିବା ମାତ୍ରେ ସେ ବାଧାଦେଇ କହିଲେ—“ନାହିଁ ନାହିଁ ଠୋ କରି ଅକାନମିନ ପତ୍ରଟା ଲଦି ଦେବା ଠିକ୍ ହେବନି । ଆଗୁ ବଥଟା କଅଣ ଧକ ଧକ ହେଉଛି ?”

“ବଥ କଥା ପଚାରେ କିଏ, ସାରାଦିହ ଧକଧକ ହେଉଛି । ଆଲୋ ମାଆଲୋ ମରିଗଲି ।”

“ନାହିଁ ନାହିଁ ଅକାନମିନ ପତର ଚଳିବନି । ତୁମେ ମଖମଲ ପତର ପକାଅ । ସବୁ ବଦରକ୍ତ, ପାଣି, ପୁଜ ଚାରିଆଡ଼ୁ ଗୋଟେଇ ଗୋଟେଇ ଆଣି ଗୋଟାଏ ମୁହଁବାଟେ ପଦାକୁ କାଢ଼ିଦେବ—”

ଏପରି ବ୍ୟବସ୍ଥା ପତ୍ର ସବୁ ଦିଆଯାଉଥିବାର ଦେଖି ମିଶ୍ରବାବୁ ସେଠାକୁ ଧାଇଁ ଆସି ପଚାରିଲେ—“ଆଗୁ, ତେଲ ଲଗେଇବା ପୂର୍ବରୁ କେଉଁଟିଏ ଥିଲା ଓ ପରେ କେଉଁଟାଏ ହେଲା ?”

ପୁଣି କୁନ୍ଥେଇ କୁନ୍ଥେଇ ଅନନ୍ତା ସତ୍ତ୍ୱେ ଗଦେଇବାକୁ କହିଲେ, ସାମାନ୍ୟ ଟିକଏ । ମୁଗପରି ହବକ ନାହିଁ, ସେ ପୁଣି ଏମିତି ମାତି ଯିବ ବୋଲି କିଏ ଜାଣିଥିଲା ? ଅଃ ମରିଗଲିଲୋ ବାପା !”

ଷଡ଼ଙ୍ଗୀବାବୁ କେଉଁଠିଥିଲେ ସେ ବ ଯୁଟିଯାଇ ପଚାରିଲେ—“ଆଚ୍ଛା ସେଇଟା ବାଲମୁଳିଆ କି ବଥ ଜାଣି ପାରିଲଣି ତ ? ବାଲମୁଳିଆ ହୋଇଥିଲେ ଶାକୁଆ ପତନ ଘୋରି ଲଗେଇଦିଅ । ଥରକରେ କାମ

ଫଟେ । ଆଉ ମୁଣ୍ଡ ଖେଳାଇବାକୁ ନ ଥିବ । ହାତମାର ଦେଖିଲ ଖୁବ୍ ତାତିଲ ଜଣା ପଡ଼ୁଛି କି ନା”—

ଅଦରକାଣ୍ଡ ଉପଦେଶ ବୋଝରେ କ୍ଲାନ୍ତହୋଇ ପଞ୍ଚ ଗଦେଇବାବୁ କହିଲେ—"ହଁ ହୋ ଖୁବ୍ ତାତିଛି—ଆଃ! ପ୍ରାଣଟା ଗଲା ।" ସବୁ ବେଦନା ଯାକ ଯେମିତି ତାଙ୍କ ମୁହଁ ବାଟେ ପଦାକୁ ବାହାରି ଆସୁଥାଆନ୍ତି ।

ଜଣେ ସହକର୍ମୀର କଷ୍ଟ ଦେଖିଲେ ଅନ୍ୟ ସମସ୍ତେ ତାହା ଦୁଣା ଅଧିକେ ଅନୁଭବ କରଆନ୍ତି । ହେଡ୍‌କ୍ଲର୍କ ବି ବାସନା ପାଇ ସେ ଥାନକୁ ଧାଇଁ ଆସିଲେ ଓ ପଚାରିଲେ—"ମୁଣ୍ଡିଟାକୁ ଛୁଣ୍ଡେଇ ଦେଇଥିଲେ କି" ?

ସଙ୍ଗୀମାନଙ୍କ ସମବେଦନା ଗଦେଇବାବୁଙ୍କ ବେଦନାକୁ ଦ୍ୱିଗୁଣିତ କରୁଥିଲା । ହେଡ୍‌କ୍ଲର୍କଙ୍କୁ ଅସନ୍ତୁଷ୍ଟ ନ କରିବା ଲାଗି ସେ ପୁଣି କୁନ୍ଥେଇ କୁନ୍ଥେଇ ଆରମ୍ଭ କଲେ—"ଇ-ହି-ହି, ମୁଣ୍ଡି ଛୁଣ୍ଡେଇ ନାହିଁ ଟିକିଏ କୁଣ୍ଡେଇ ଦେଇଥିଲି, ତା'ପରେ ଗାଧୋଇଲାବେଳେ ଟିକିଏ ତେଲ ହାତ ବାଜିଗଲା, ଉ-ହୁ-ହୁ—ମରିଗଲି ଲୋ ବାପା"—

ହଁ—ଗଣ୍ଡଗୋଳ ରହିଲା ସେଇଠି । ମୁହଁ ଛୁଣ୍ଡାକୁ ତେଣେ ତେଲମଖା । ଆଜିକାଲି ବଜାରରେ ଯେଉଁ ତେଲ ତାହା ଗୋଟାଏ ମାଲ ମୁହଁରେ ବାଜିଲେ ତାକୁ ବିଷାଣ କରି ଦେଉଛି । ଇଏତ ସହଜେ ଗୋଟାଏ ବଥ ମୁହଁରେ ତେଲ ବାଜିଲେ ଆଉ ସମ୍ଭାଳା ପଡ଼ିବ ? ଯାହା ହେବାର ହେଲାଣି ତା ଉପରେ ଚନ୍ଦନ ଲଗି ଦିଅ । କଅଣ ଲଗିବଟି ?

"ଏ-ହେ-ହେ ମରିଗଲି ଲୋ । ହଁ ଆଜ୍ଞା ଲଗିବ ।

ଖୋଦ୍ ସାହାବଙ୍କ ଦୃଷ୍ଟି କ୍ରମେ ସେହି ସ୍ଥାନକୁ ଆକୃଷ୍ଟ ହେଲା ସେ ବି ଉଠିଆସି ପଚାରିଲେ— "ବଥ, ବାଳମୂଳଆ ଉଠିଲା ନା କିଛି ଆଘାତ ଲାଗି ହେଲା ?"

ଆଉ କିଏ ହୋଇଥିଲେ ଗଦେଇବାବୁ ମୁହଁ ମୋଡ଼ି ନେଇ ଥାଆନ୍ତେ, କିନ୍ତୁ ସେ ଯେ ଖୋଦ୍ ବଡ଼ ସାହାବ । ହର୍ତ୍ତା, କର୍ତ୍ତା, ବିଧାତା । ଘୋର ଅନିଚ୍ଛା ସତ୍ତ୍ୱେ ସେ କୁନ୍ଥେଇ କୁନ୍ଥେଇ କହିଲେ—"ନାହିଁ ଆଜ୍ଞା ଆଘାତ ନୁହେଁ । ବୋଧହୁଏ ବାଳମୂଳଆଟାଏ କୁଣ୍ଡେଇ ଦେଇଥିଲି, ତା ଉପରେ ପୁଣି ତେଲ ହାତ ବାଜିଗଲା ଓଃ, ହୋ, ହୋ—ମାରିଗଲା— ଆ-ହା-ହା ମରିଗଲି" ।

"ହୁଁ ନିଶ୍ଚୟ ବାଳମୂଳିଆ, ନ ହେଲେ ଏତେ କଷ୍ଟ ଦିଅନ୍ତାନ, ଚନ୍ଦନ ଫନ୍ଦନ ଚଳିବନି । ଦରକାର ଗରମ ପାଣି ସେକ, ମ୍ୟାଗ୍ ସଲ୍‌ଫ କମ୍ପ୍ରେସ୍, ପେନ୍‌ସିଲିନ୍ ଇଞ୍ଜେକ୍‌ସନ ଦରକାର ଚଟାପଟ୍ ଚିକିତ୍ସା । ହେଳା କଲେ ହାତଛଡ଼ା ହୋଇଯିବ । ଶୀଘ୍ର ରିକ୍‌ସାରେ ବସି ଘରକୁ ପଳାଅ ସାଙ୍ଗେ ସାଙ୍ଗେ ଚିକିତ୍ସା ଆରମ୍ଭ କରିଦିଅ—!"

ଗଦେଇବାବୁ ଯାହାବା ଟିକିଏ ଡ଼େରି କରିଥାଆନ୍ତେ, ସହକର୍ମୀମାନଙ୍କର ଉପଦେଶ ଓ ବ୍ୟବସ୍ଥାପତ୍ରର ଭୁହାକୁ ଭୁହା ଆକ୍ରମଣ ଦେଖି ସେ ନିକମିତ ସେ ସ୍ଥାନ ଗ୍ରହିବେ ତାଙ୍କର ବାହାର ସମ୍ଭାଳ ନାହିଁ । ସଙ୍ଗେ ସଙ୍ଗେ ରିକ୍‌ସାଟାଏ ଡ଼କା ହୋଇ ଆସିଲା । ପେଙ୍ଗେଇ ପେଙ୍ଗେଇ ସେ ରିକ୍‌ସାରେ ବସିଲେ । ସହକର୍ମୀମାନେ ତାଙ୍କ ଘରକୁ ଯାଇ ତାଙ୍କର ହାଲ ଚାଲ ବୁଝିବେ ବୋଲି ପ୍ରତିଶ୍ରୁତି ଉପରେ ପ୍ରତିଶ୍ରୁତି ଦେଲେ । ପ୍ରତିଶ୍ରୁତି ଗୁଡ଼ାକ ଶୁଣି ଗଦେଇବାବୁ କିନ୍ତୁ ପ୍ରମାଦ ଗଣିଲେ । ମନେ ମନେ ସେ ଭାବିବାକୁ ଲାଗିଲେ—"ଏଇଠି ପଚରା ସରିଲା ନାହିଁ ଯେ ପୁଣି ମୋ ଘରକୁ ଯିବା ଦରକାର ପଡୁଛି ।" ମୋର ଜୀବନ ଯାଉଛି କି ରହୁଛି, ବାବୁମାନଙ୍କର ଚିହ୍ନାରୁ ରେହାଇ ଛଡ଼ା ହେଉଛି । ଦଳେଇମାନଙ୍କୁ ମୂଳରୁ ଗାଇ ଗାଇ ମଣିଷ ଅଧାପ୍ରାଣ ହେଲାଣି । ବାକି ଅଧା ପ୍ରାଣଟା ଘରକୁ ଯାଇ କାଢ଼ି ନେଲେ ଏମାନଙ୍କ ମନରେ ଶାନ୍ତି ଆସିଯିବ ।" ବୀରବଲ ଗପଟା ତାଙ୍କ ମନେ ପଡ଼ିଗଲା । ଗପଟାକୁ ମନେ ମନେ ସେ ଏମୁଣ୍ଡ ସେମୁଣ୍ଡ ଗଡ଼େଇ ନେଲେ ।—

ଥରେ ବାଦସା ବୀରବଲକୁ ପଚାରିଲେ ଦୁନିଆରେ କେଉଁ ଲୋକଙ୍କ ସଂଖ୍ୟା ସବୁଠୁ ବେଶି । ବୀରବଲ ଉତ୍ତର କଲେ "ଚିକିତ୍ସକ" । ବାଦସା ପ୍ରମାଣ ଖୋଜିଲେ । ତହିଁ ଆରଦିନ ସକାଳୁ ବୀରବଲ ମିଛଟାରେ ଦାନ୍ତ ବିନ୍ଧୁଛି କହି ଦରବାର ଦୁଆର ମୁହଁରେ କୁନ୍ଥେଇବାକୁ ଲାଗିଲେ । ବାଦ୍‌ସା ଭିତରୁ ଲକ୍ଷ୍ୟ କରୁଥାଆନ୍ତି । ଯେତେଲୋକ ଆସିଲେ ସମସ୍ତେ ତାଙ୍କୁ ଦେଖି ରୋଗ ବିଷୟରେ ପଚାରୁଥାଆନ୍ତି ଓ କିଛିନା କିଛି ଔଷଧଟାଏ ବତେଇ ଦେଉ ଥାଆନ୍ତି । କିଏ କହୁଥାଏ ଫିଟିକିରି ପାଣି କୂଳି କର, କିଏ ଗରମ ଲୁଣପାଣି, କେହି କେହି ହିଂଗୁଳ ଛେଲି ସିଝା ପାଣି, ବାଇଗବା ଖିର, ଲମ୍ବ ଛେଲି ସିଝା ପାଣି, ଅଙ୍କରାନ୍ତି ମୂଳ ସିଝା ପାଣି, ମୁର୍ଦ୍ଦାଶଙ୍ଖ ପୋଡ଼ା, ବଣଲଙ୍କା କରଣି ଚୂନ ଇତ୍ୟାଦି । ବ୍ୟବସ୍ଥା ପତ୍ର

ନ ହବା ଲୋକ ଜଣେ ହେଲେ ନ ଥିଲେ । ବାଦ୍‌ସା ସଠିକ ପ୍ରମାଣଟା ପାଇଗଲେ । ଗଦେଇବାବୁ, କଥାଟାଯେ ଏକଦମ୍ ଠିକ୍ ତାହା ଅନୁଭବ କଲେ ।

ଘରକୁ ଆସିବା ପରେ ଗଦେଇବାବୁଙ୍କର ଦୁର୍ଦ୍ଦଶା ବଢ଼ିଗଲା । ଅଫିସରେ ଥିଲାବେଳେ ଅଲଣା ସହାନୁଭୂତି ଦେଖେଇଲାବାଲାଙ୍କ ସଂଖ୍ୟା ସେତ୍ତ ଅଫିସ କର୍ମଚାରୀମାନଙ୍କ ଭିତରେ ସୀମାବଦ୍ଧ ଥିଲା । ଏଠି କିନ୍ତୁ ବନ୍ଧୁ, କୁଟୁମ୍ବ, ପଡ଼ଶାଙ୍କ ସଂଖ୍ୟା ତର୍ଦ୍ଧ୍ୱରେ ମିଶିଲା । ଗଦେଇବାବୁ ପ୍ରାଣପଣେ ଚେଷ୍ଟା କରୁ ଥାଆନ୍ତି ମନଟାକୁ ଜବରଦସ୍ତି ବାଁ ପିଠିରୁ କେମିତି ଟାଣିନେଇ ଅନ୍ୟ ଆଡେ ଲଗେଇ ଦେବେ, ସେତକ ସମସ୍ତ ଅନ୍ତତଃ ବେଦନାଟା ଟିକିଏ କମ ଜଣା ପଡ଼ିବ । କିନ୍ତୁ ନଚ୍ଛୋଡ଼ ବନ୍ଧୁ, ସମବେଦନା ଜ୍ଞାପକ ଦଳ ସେତକ କରେଇ ଦେଲେ ନାହିଁ । ଶୋଇବା ସମୟତକ ବାଦ୍‌ଦେଲେ ଆଉ ପ୍ରତ୍ୟେକ ମୁହୂର୍ତ୍ତରେ ସେମାନେ ତାଙ୍କ ମନକୁ ବାଁ ପିଠି ବିଷୟରେ ସଚେତନ କରିଦେଉ ଥାଆନ୍ତି । ସେମାନଙ୍କ ହାତରେ ଗଦେଇବାବୁ ଏକ କୁଣ୍ଢେଇ ବନିଗଲେ । ଜଣେ କହିଲା, 'ଚନ୍ଦନ ଲଦି ଦିଅ ।' ଗଦେଇବାବୁଙ୍କ ଆସ୍ତି ନାସ୍ତି ବାଣୀ ପୂର୍ବରୁ ତାଙ୍କ ବିଶ୍ୱସ୍ତ ଭୃତ୍ୟ ଚନ୍ଦନ ଲଦି ଦେଉଥିଲା । ଆଉ ଜଣେ କହିଲା, "ଗରମ ପାଣି ସେକ ଦିଅ, ସେ ବି ସଙ୍ଗେ ସଙ୍ଗେ କାର୍ଯ୍ୟରେ ପରିଣତ ହେଉଥିଲା । ଫଳରେ ବାଁ ପିଠିଟା ଥଣ୍ଡା, ଗରମରେ କଇଞ୍ଚା ହୋଇଗଲା । ବେଦନା ବି ବଢ଼ି ଲାଗିଲା ।

ଶେଷରେ ସମବେଦନା ଜ୍ଞାପକମାନଙ୍କ ହାତରୁ ରକ୍ଷା ପାଇବା ଲାଗି ଗଦେଇବାବୁ ବଡ ଡ଼ାକ୍ତର ଖାନାକୁ ପଳେଇବାକୁ ମନେ ମନେ ସ୍ଥିର କଲେ । ସେ ଭାବିଲେ ଏଠି ଥିବାରୁ ସିନା ସମସ୍ତେ ହରଦମ 'ବିଥ, ବାଲମୂଳିଆ, ଶିରୁଳିଆ' ରଡ଼ି ଦେଇ ମୋତେ କାଲୁବାଲୁ କରୁଛନ୍ତି, ସେଠି କିନ୍ତୁ ସେତିକ ହବନାହିଁ । ଜଣେ ଡାକ୍ତର ଦେଖିବ, ସେଇ ଏକା ତକରା କରିବ । ଥରେ ମାତ୍ର ମୁଁ ପରେ ଉତ୍ତର ଦେବି । ହଜାରେ ଡାକ୍ତରଙ୍କ ହାତରୁ ମଣିଷ ରକ୍ଷା ପାଇଯିବ । ଜଣେ ବନ୍ଧୁ ଡ଼ାକ୍ତରଙ୍କ ସାହାଯ୍ୟରେ ସେ ସହଜରେ ଖଟିଆଟିଏ ପାଇଗଲେ । କାହାରି ମନା ଶୁଣିଲେ ନାହିଁ । ଖଟିଆରେ ଶୋଇ ପଡ଼ିବା ମାତ୍ରେ ସେ ଗୋଟିଏ ହାଲ୍କା

ନିଶ୍ୱାସ ଛାଡ଼ିଲେ । ଭାବିଲେ ଅଳ୍ପେଇଁ ବଇଦପିଲଙ୍କ ଦାଉରୁ ଏଇଠାରେ ମୁକ୍ତି ମିଳିଲା ।

ଅଧଘଣ୍ଟାଏ ଯାଇଛି କି ନାହିଁ ଜଣେ ଡାକ୍ତର ଜଣେ ଦୁ'ଜଣ ସହାୟିକାଙ୍କୁ ଧରି ସେଇଠି ଆସି ପହଞ୍ଚିଲେ । ଜଣେ ଗଦେଇବାବୁଙ୍କୁ ମୁହଁ ମଡ଼େଇ ଦେଲା, ଆଉଜଣେ ଏକୋଟେଲକେ ଦୁ'ପିଚୁରୁ ଲୁଗା ଟେକିଦେଲା । ଆଖ ପାଖରେ ଅନ୍ୟାନ୍ୟ ରୋଗୀ ଥାଆନ୍ତି । ସିଷ୍ଟର୍ ମାନେ ବି ଏପାଖ ସେପାଖ ହେଉ ଥାଆନ୍ତି । ଗଦେଇବାବୁଙ୍କ ବଡ ଲାଜ ମାଡ଼ିଲା । ସେ ମନକୁ ବୁଝେଇ ଦେଲେ—"ଯାହା ହେଉଛି ସବୁ ଏଇ ଥରକ ପାଇଁ ।"

ସଙ୍ଗେ ସଙ୍ଗେ ବାଁ ପିଚୁ ଡାକ୍ତରବାବୁଙ୍କ ଅଙ୍ଗୁଳି ସ୍ପର୍ଶ ଲାଭ କଲା । ସ୍ପର୍ଶଟା କିନ୍ତୁ ଗଦେଇବାବୁଙ୍କୁ ସୁଖକର ହୋଇ ନଥିଲା । ତାଙ୍କ ବାଁ ପିଚୁଟା ଅତି ସାଙ୍ଘାତିକ ଭାବରେ ଦରଜ ହୋଇଥିବା କଥାଟା ଡାକ୍ତରବାବୁଙ୍କୁ ବିଲ୍‌କୁଲ୍ ଜଣା ନାହିଁ ବୋଲି ସେ ବେଶ୍ ବୁଝି ପାରିଲେ । ସମସ୍ତ ପିଚୁଟାକୁ ଡାକ୍ତରବାବୁ ଚିପିଚୁପି ପକେଇଲେ ଠିକ୍ ଆମ୍ବ ପାଚିଛି କି ନାହିଁ ଜାଣିବା ଲାଗି ଲୋକେ ଯେମିତି ଆମ୍ବଟାକୁ ଚିପି ପକାନ୍ତି । ଅ-ଆ-ଇ-ଉ ଆଦି ସ୍ୱରବର୍ଣ୍ଣ ଯାକ ତାଙ୍କ ପାଟିରୁ ବାହାରି ଗଲା । ଡାକ୍ତରବାବୁ ଓଲଟି ଅଟ୍ଟାକଲେ—"କଅଣ ଛୁଆଙ୍କପରି ହଉଛ ।"

ଗଦେଇବାବୁଙ୍କ କଟାଘାରେ ଚୂନ ଲେଷିଲା ପରି ଜଣାଗଲା । ହେଲେ ସେ ମନକୁ ବୁଝେଇ ଦେଲେ – "ଯେତେ କଷ୍ଟ ହେଉ ପଛକେ ଏଇ ଥରକରେ କାମଫତେ ।" ଡାକ୍ତରବାବୁଙ୍କ ଚିପାଚିପି ଓ ସାହାଯ୍ୟକାରୀଙ୍କୁ କହୁଥିବା କଥାରୁ ସେ ବେଶ୍ ଜାଣି ପାରିଲେ ଯେ ତାଙ୍କ ବାଁ ପିଚୁ ଉପସର୍ଗଟା ମାମୁଲି ଧରଣର ନୁହେଁ । ତାହା ଏକ ଉଲ୍ଲେଖଯୋଗ୍ୟ ଉପସର୍ଗ ।

ଔଷଧପତ୍ର ଖାଇ ସେଦିନ ରାତିରେ ଗଦେଇବାବୁ ବେଶ୍ ଆରାମରେ ନିଦ ଗଲେ । ସକାଳୁ ବେଦନା ଟିକିଏ କମ୍ ଜଣାଗଲା । ବଡ ଡାକ୍ତରଖାନାକୁ ପଳେଇ ଆସି ସେ ଖୁବ୍ ଭଲ କରିଛନ୍ତି ବୋଲି ତାଙ୍କ ମନରେ ଗୋଟାଏ ତୃପ୍ତି ଆସିଲା । ଡାକ୍ତରବାବୁ ଆସି କଅଣ କହିବେ ତାହା ଶୁଣିବାକୁ ସେ ବ୍ୟଗ୍ର ହୋଇ ପଡ଼ିଲେ ।

ଡାକ୍ତରବାବୁ କିନ୍ତୁ ଏକା ଆସିଲେ ନାହିଁ । ସାଙ୍ଗରେ ଡାକ୍ତରି ଗ୍ଲାସ-ଫାଇଲ ଧରି ଆସିଲେ । ଗଦେଇବାବୁ ପ୍ରମାଦ ଗଣିଲେ । ଗ୍ଲାସ ମାନଙ୍କୁ ଦେଖାଇ ବହୁତ କିଛି କହିଲେ ଓ ହୃଦ୍‌ବୋ ହାନ ପରି ଚପିଗୁଡ଼ି ପକାଇଲେ । ସେତିକି କଲବଲରେ ସେ କିନ୍ତୁ ନିସ୍ତାର ପାଇଲେ ନାହିଁ । ଗୋଟିକ ପରେ ଗୋଟିଏ ଗ୍ଲାସ କ୍ରମେ ଚପିବାକୁ ଆରମ୍ଭ କଲେ । ଗଦେଇବାବୁଙ୍କ ଦେହ ଝାଳରେ ବୁଡ଼ିଗଲା । କାନ ଭାଁ ଭାଁ ଡାକିଲା । ମନା ଶୁଣୁଛି କିଏ । ତାଙ୍କର ପରି ଜୀବକୁ ନ ମାରିଲେ ଗ୍ଲାସତକ ଡାକ୍ତର ହେବେ କିପରି ? ଏତେବେଳେ ଯାଇ ଘର କଥା ମନେ ପଡ଼ିଲା । ସେଠି ସମସ୍ତେ ଯିନା ମୁହଁରେ ପଚାରୁ ଥିଲେ । ଏଠି ସମସ୍ତେ ହାତରେ ଦେଖିଲା କାମ କରି ଦେଉଛନ୍ତି । ଉଃ ଆଃ ପାଟି କରି ତାଙ୍କ ତଣ୍ଟି ପଡ଼ି ଗଲାଣି, ସେଥିପ୍ରତି କାହାରି ଲକ୍ଷ୍ୟ ନାହିଁ ।

ସେ ଗ୍ଲାସଦଳକ ଯିବା ପରେ ଲହଡ଼ି ପରି ଆଉ ଦଳେ ଗ୍ଲାସ ଆସିଲେ । ଗଦେଇବାବୁଙ୍କ ହଂସା ଉଡ଼ିଗଲା । ସେ ସେ ମହର୍ଗରୁ ଯାଇ କାନ୍ତାରରେ ପଡ଼ିଛନ୍ତି ତାହା ସେ ଭଲ ଭାବରେ ହୃଦୟଙ୍ଗମ କରି ପାରିଲେ । ପଳାଇଲେ ପଳାଇଲେ . ସେ ସେ ଥାନ ଛାଡ଼ି ପଳେଇବାକୁ ବସିଥିଲେ, କିନ୍ତୁ ପୁଣି ଆଉ ଥରେ ଭୁଲ୍ ନ କରିବାକୁ ବିବେକ ବାରଣ କଲା । ସେ ଭାବିଲେ—ମହର୍ଗରୁ କାନ୍ତାର । କାନ୍ତାରରୁ ପୁଣି ...... ନ ହଉ ।



# ମନ୍ଦପାଞ୍ଚ୍‌ଆ

ଓଃ ଫିଲମ୍ ପରେ ଫିଲମ୍ ଖଣ୍ଡେ ହୋଇଛି ଇନ୍‌ସାନଆର୍ । ହ’ଟଙ୍କିଆରେ ଗଲେ ବ ମନ ପସ୍ତାଉ ନାହିଁ । ମାଙ୍କଡ଼ଟାରେ ପଇସା ଆଦାୟ । ବାକି ଖେଳକୁ ପର୍ଦ୍ଦାରେ କିଏ ! ତାକୁ ମାଙ୍କଡ଼ ବୋଲି କିଏ କହିବ ସେତ ଗୋଟାଏ ମଣିଷ । ମାଙ୍କଡ଼ ପୁଣି ଏମିତି ଆକ୍‌ଟିନ କରେ ! ଧନ୍ୟ ସେ ମାଙ୍କଡ଼ ! ଆଉ ଧନ୍ୟ ଯେ ତାକୁ ଶିଖେଇଲା । ଆଃ ମନଟା ଖୁସ୍ ହୋଇଗଲା ।

ଏକ ପ୍ରକାର ଗ୍ଲେଟକାଟିଆ ଅଭିନୟ ଦେଖାଇ ଲୁଗା ଦୋକାନ ବଜୁ ଦୋକାନ ଭିତରେ ଠିଆ ହୋଇଥିବା ତା ସାଙ୍ଗ କାଲୁ, ସରବର ଓ ହୁରୁଦାକୁ କହିଲା ।

ଶୁଣିବା ମାତ୍ରେ ତିନଜଣ ଯାକ ତା ଆଡ଼କୁ ମିଶି ଆସିଲେ । ହୁରୁଦା କହିଲା—“ଏତେ ସ୍ୱାର୍ଥପର ତୁ ! ଏକୁଟିଆ ଏକୁଟିଆ ଚାଲିଗଲୁଟି । ହଲରେ ଏକୁଟିଆ ଯିବାକୁ ତୋ ମନ ଗଲା କେମିତି ? ସିନେମା ହଲରେ ତୋତେ ବାନ୍ତ ଦେଖାଇଲାନି । ତୋତେ ଲାଜ ଲାଗିଲାନି ? ଏକୁଟିଆ ହୋଇ ଅଢ଼େଇ ଘଣ୍ଟା ବସିଲୁ କେମିତି ?”

କାଲୁ କହିଲା—“ଏକୁଟିଆ ବସିବନି, ତାର ଖୋଇ ସେଇଆ । ଉପରକୁ ଖାଲି ଦୋସ୍ତି ଦେଖେଇ ହୁଏ । ଭିତରେ ଭିତରେ ଆପଣା ହସିଆରରେ ଆପେ ଥାଏ । କାଲେ ଦୋସ୍ତମାନଙ୍କ ପିଛା କିଛି ଖରଚ

ହୋଇଯିବ । ହଁ, ହଁ ଶୁଣୁ। କୋଉଠିକାର । ତୋ ଦୋସ୍ତୀ କଥା ଜଣାଗଲା ।

ସରବର ବ ଯୋଖିଦେଲା—"ଆରେ ମୁଁ ଯଦ ହୋଇଥାଆନ୍ତି, ମୋ କଥା ଦେଖି ଥାଆନ୍ତୁ । ସ୍ୱର୍ଗପୁରକୁ ମୋତେ ଯଦ କଏ ଟାଣି ନଅନ୍ତା ତେବେ ମୁଁ ବାକ ତନ ଜଣକୁ ମୋ' ସାଥିରେ ନେଇ ଯାଇଥାନ୍ତି ଛାଡ଼ନ୍ତି ନାହିଁ ।"

ରାଜୁ ଟିକଏ ଲଜଗ ହୋଇଯାଇ କହିଲା—"ଭାଇ—ସତ କହୁଛି, ମୋର ଯିବାର ନଥିଲା । ବାଟରୁ ବସନ୍ତ ମୋତେ ଭିଡ଼ି ନେଇଗଲା । ସମୟ ପାଇଲିନାହିଁ ତମମାନଙ୍କୁ ଡାକିବା ପାଇଁ ।"

ହରୁଦା କଥାକୁ ଟିକଏ ମାଜ ମୁଜ କହିଲା—"ଆଉ କାହିଁକି ମିଛ କହୁଛୁ । ଖୋଜଥିଲେ ସିନା ସମୟ ପାଇଥାନ୍ତୁ । ଆମେ ଜାଣି ଗଲୁଣି, ତୁ କେମିତି ଟିକଏ କରଛଡ଼ା କରଛଡ଼ା ଧଇଲୁଣି । ଆଉକୁ ନୂଆ ନୂଆ କେତେ ସାଙ୍ଗ ଜୁଟିବେ, ଆମକୁ ପଚ୍ଛରେ କିଏ ?"

ହସି ହସି ରାଜୁ କହିଲା—"ଖୁଣ୍ଟ ଖଲାଆ କଥା ବେଶ୍ କହି ଆସେବେ । ତମେ ସବୁ ଜଗରୁ ଶିଗ କାଢ଼ିବା ଲୋକ ତୁମେମାନେ ଜମାରୁ ଏକୁଟିଆ କୋଉଠି କିଛି କର ନଥିବ !"

ସରବର ମାଡ଼ବସି କହିଲା –"ଆରେ ଏମିତି କେହି ବ କହି ପାରବ ନାହିଁ । ଗୋଟାଏ ଘଟଣା ଦେଖେଇ ଦେଲୁ ଭଲ । ତୋତେ ଓସ୍ତାଦ୍ ବୋଲି ମାନବ । ଦେଖେଇତ ପାରବୁ ନାହିଁ, ଏମିତି ଟାଣ କଥା କହୁଛୁ ।"

"ହଇରେ, ହଇରେ ତୁ ଏତେ ଟାଣରେ କହୁଛୁ କେମିତି । ହଇରେ ତୁ ଏକୁଟିଆ 'ଦୋସ୍ତୀ' ଫିଲମ୍ ଦେଖିନୁ ?"

—"ହଁ ସେଇ ଥରକ । ତୁମେସବୁ କେହି ନଥିଲ ।"

"ଅଚ୍ଛା କଟକ କଲିକତା ଫୁଟବଲ ଖେଳ ଦନେ ତୁ ଏକୁଟିଆ ଯାଇନୁ ?"

"ହଁ—ସେଇ ଥରକ ସୁବଧା ମିଳିଲା ବେଗ୍ର ଟିକଟରେ ଘୁଞ୍ଚିଲି—"

"ଆଚ୍ଛା ତୁ ଏକୁଟିଆ ବାଲସାବା ଦେଖି ଯାଇନଥିଲୁ ?"

"ହଁ ସେଇ ଥରକ । ରଫିକ୍ ଡାକଲା ତା ସାଇକେଲ ପଛରେ ବସି ଚାଲିଗଲି ।"

"ଆଚ୍ଛା ତୁ ସ୍ୱାଧୀନତା ଦିବସ ପ୍ୟାରେଡ୍ ଦେଖିବାକୁ ଏକୁଟିଆ ଯାଇ ନଥିଲୁ ।"

"ହଁ-ହଁ ସେଇ ଥରକ"—

"ହଁ-ହଁ ଥର ଥର ହୋଇ କେଇଥର ହେଲା ? ଆଉଥରେ ଅଣ୍ଡାଳଲେ ଆଉଥରେ ଥର ମିଳିବ । ଚାଲୁଣି ଛୁଞ୍ଚିକୁ କହୁଛି ତୋ'ଠି ଗୋଟାଏ କଣା ।"

ତଥାପି ସରବର ହଟି ନଯାଇ କହି ଲାଗିଲା—"ଆରେ ସେଗୁଡ଼ାକ ମାମୁଲି ବିଷୟ ଥିଲା । ତୋତେ କଣ୍ଟ ଭଲ ଲାଜ ନଥାନ୍ତା । ଅଭଲ ଜିନିଷକୁ ପାଇଁ କେହି ହମ ହମ ହୁଏନି । ଭଲ ଜିନିଷକୁ କିଏ ଛାଡ଼ିବାକୁ ଚାହେଁ ? ଆମେ ଜାଣିଥିଲେ ଏତେ ବଢ଼ିଆ ଫିଲମ୍ଟା ଛାଡ଼ି ଥାଆନ୍ତୁ ନା ! ଏକାଠି ସାଙ୍ଗ ହୋଇ ଦେଖୁଥାନ୍ତେ ତା ସାଙ୍ଗେ ବାରମଜା ଚାଖିବା ଚାଲିଥାଆନ୍ତା । ଅଃ କି ମଜାଟା ପାଣିକରି ଦେଲୁରେ ରାଜୁ ! ବଡ଼ ସ୍ୱାର୍ଥପର ତୁ,—"

ରାଜୁ ପ୍ରବୋଧ ଦେଇ କହିଲା—"କଣ୍ଟ ଚନ୍ତାନାହିଁ । ଫିଲମ୍ ଆଉରି କେତେଦିନ ରହିବ ମୁଁ ତ ଦେଖି ଆସିଛି । ତୁମେ ତିନିଜଣ ଯାଇ ଦେଖି ଆସ । ଆଉକୁ ଯେତେବେଳେ ଯିବା ସାଙ୍ଗହୋଇ ଯିବା ଏତେ ବ୍ୟସ୍ତ କାହିଁକି । ଯାଅ ଜଣେ କିଏ ଯାଇଁ ଆଡ଼ଭାନ୍ସ ଟିକେଟ କିଣିଆଣ । ଏବେଠାରୁ ଗଲେ ମିଳିବ । ମୁଁ ଟଙ୍କା ଦେଉଛି ନିଅ ।"

ଏହାକହି ରାଜୁ ହାତ ବାକ୍ସରୁ ପାଞ୍ଚଟଙ୍କିଆ ନୋଟ୍ଟିଏ କାଢି ବଢ଼େଇ ଦେଲା । ତିନିହେଁ ସନ୍ତୁଷ୍ଟ । କାଲୁ ପେଣ୍ଟ ପକେଟରେ ପାଞ୍ଚଟଙ୍କିଆ ନୋଟ୍ଟି ରଖି ସଙ୍ଗେ ସଙ୍ଗେ ବାହାରି ପଡ଼ିଲା । ତିନିଜଣଯାକ ଏତେ ଖୁସି ଓ ଉତ୍ସାହିତ ହୋଇ ପଡ଼ିଲେ ଯେ ସମସ୍ତେ ରାଜୁକୁ ଅଧା ପନ୍ତରିଆ ପ୍ରଶଂସା କରୁ କରୁ ଟିକେଟ୍ କାଟିବାକୁ ବାହାରି ପଡ଼ିଲେ ।

ଦୋକାନ ବାହାରକୁ ସବା ଶେଷରେ ଗଲାବେଳେ କାଲୁ ପେଣ୍ଟ ପକେଟ୍ରୁ ସାଇକେଲ୍ ଚାବିଟି କାଢ଼ିଲା । ପେଛାଏ କଣ୍ଟ ଗୋଟାଏ

ଗଙ୍ଗରେ ଗୁଞ୍ଜା । ତା ସଙ୍ଗେ ଗୋଟାଏ ଚେନ୍ ଗୁବ ପେଞ୍ଚା ଭିତରେ ଛନ୍ଦହୋଇ ପାଞ୍ଚଟଙ୍କିଆ ନୋଟ୍‌ଟା ବି ପଦାକୁ ପଳେଇ ଆସି ତଳେ ପଡ଼ିଗଲା । କାଲୁ ତାହା ଜାଣି ପାରିଲା ନାହିଁ । ରାଜୁ ବର୍ଣ୍ଣିତ ମାଙ୍କଡ଼ ତା' ମୁଣ୍ଡ ଭିତରେ ନାଚୁଥାଏ । ସାଇକେଲ ଖୋଲି କାଲୁ ଗୁଲିଗଲା । ରାଜୁ କନ୍ତୁ ନୋଟ୍‌ଟି ପଡ଼ି ଯିବାର ଦେଖି ଚୁପ୍ କରି ଉଠେଇ ଆଣିଲା । ମନେ ମନେ ଭାବିଲା—"କେଡ଼େ ଅଣହୁସିଆର୍ ଟା । ନା-ତାକୁ ପଠାଏ ହଇରାଣ କରି ଟଙ୍କା ଦେବ । ଯାଆନ୍ତୁ, ସମସ୍ତେ ମୁହଁ ଶୁଖାଇ ଫେରନ୍ତୁ ।"

ଅଧଘଣ୍ଟାକ ପରେ କାଲୁ ମୁହଁ ତଳକୁପୋତି ରାଜୁ ଦୋକାନ ଆଗରେ ଲୁଙ୍ଗୁ ଲୁଙ୍ଗୁ ହେଲା । ହସକୁ ପେଟରେ ଗୁପିଧରି ରାଜୁ ପଚାରିଲା—"କଅଣ ଖୋଜୁଛୁ କରେ ? ଠିକଟ୍ ଆଣିଲୁ ?

କାଲୁର ମୁହଁରେ ଉତ୍ତର ନାହିଁ । ତଳକୁ ମୁହଁପୋତି ସେ ଖାଲି ଏପାଖ ସେପାଖ ହେଉଥାଏ । ମୁହଁଟି ବିଲ୍‌କୁଲ ଶୁଖି ଯାଇଥାଏ । କନ୍ତୁ ସମସ୍ତ ପରେ ବାକି ଦୁ'ଜଣ ବି ଶୁଖିଲା ମୁହଁ ତଳକୁ କରି ସେଇଠି ଆସି ଏପାଖ ସେପାଖ ହେଲେ । ରାଜୁର ବହୁତ ପଚରା ପଚରି ପରେ ହୁରୁଦା କହିଲା—"ଏଇଟା କାଲୁ ନୁହେଁ ଯେ ଗୋଟାଏ ଭାଲୁ । ପାଞ୍ଚଟଙ୍କିଆ ନୋଟ୍‌ଟା କୋଉଠି ଖସେଇ ପକେଇଲା"—

ସରବର ମୁହଁ ଶୁଖାଇ କହିଲା—"ତୁ ବୋଧହୁଏ ଭଲ ମନରେ ଦେଇ ନଥିଲୁ । କୁଆଡ଼େ ହଜିଗଲା । ଏ ବଣ ଭାଲୁଟା ସବୁ ଭଣ୍ଡୁର କଲା । ଦେଖିବାକୁ ଯୋଗନାହିଁ ।"

ରାଜୁ ମୁରୁକିହସା ଦେଇ କହିଲା—"ତୁମେ କେହି ମୋତେତ ମାଗି ନଥିଲ । ମନ ଡାକିଲା—ମୁଁ ଖୋଲି ନିଜେ ଦେଲି । ତାକୁ ହଜେଇ ଓଲଟି ମୋର ଦୋଷ । ହଉ ହଜେଇଲ ତ ହଜେଇଲ । ନିଅ ଆଉ ପାଞ୍ଚଟଙ୍କା ନିଅ ।"

ଏହା କହି ରାଜୁ ସେଇ ପାଞ୍ଚଟଙ୍କିଆ ନୋଟ୍‌ଟି କାଲୁ ହାତକୁ ପୁଣି ବଢ଼ାଇ ଦେଲା । କାଲୁ ନୋଟ୍‌ଟାକୁ ଏପାଖ ସେପାଖ ପରୀକ୍ଷା କରି କହିଲା—"ହେଃ ! ଏତିକି ହଇରାଣ ଆମକୁ କଲୁଣି । ଇଏତ ସେଇ ନୋଟ ହେଇଛି ଏ କଣରେ କାଳି ଦାଗ ଲାଗିଛି । କୋଉଠି ପକେଇ ଥିଲ ?"

ଏଇଠି କଣ୍ଟ ସାଙ୍ଗରେ ନୋଟ୍‌ଟି ପକେଟରୁ ବାହାରି ଆସି ତଳେ ପଡ଼ିଗଲା । ବାବୁତ ସିନେମାରେ ଭୋଳ, ଜାଣିବ କୁଆଡ଼ୁ ? ଭାବିଲି ଟିକିଏ ହଇରାଣ କରିଦେଲେ କାଲି କାଲିକୁ ଆଉ ଅଣ ହୁସିଆର ହେବୁନି ।”

ଉପଦେଶ ଶୁଣିବାକୁ ଆଉ ତର ନଥାଏ । ହୁରୁଦା, ସରବର ଚିଲେଇ ଉଠିଲେ ଆରେ ଯା ଚଞ୍ଚଳ ଯା । ବୁକିଂ ବନ୍ଦ ହୋଇଯିବ ।”

କାଲୁ ଝଡ଼ପରି ଚାଲିଗଲା । ପର ଦିନର ବିଦାୟ ପ୍ରଦର୍ଶନୀ ପାଇଁ ତିନିଖଣ୍ଡ ଟିକଟ କିଣି ସାରିବା ପରେ ତିନିହେଁ ଦମ୍ ନେଲେ । ସେମାନଙ୍କର କେତେ ମନକଷ୍ଟ ହୋଇଥିଲା, ସେମାନେ କପରି ହଲପଟା ହୋଇ ଖୋଜି ଲାଗିଲେ, ସେ ସବୁ ଗୋଟି ଗୋଟି ହୋଇ ମନେ ପଡ଼ିଲା, ତିନିହେଁ କୁହା କୋହି ହେଲେ—“ହେଃ ରାଜୁଟା କି ହଲପଟା ନକଲା !”

ସରବର ମୁଣ୍ଡରେ ଗୋଟାଏ ପାଞ୍ଚ ଢୁକିଲା । ସେ କହିଲା— “ହେ ! ରାଜୁର କିଛି ଅଣ ହୁସିଆରପଣ ଦେଖିଲେ ତାକୁ ଦିନେ ଏମିତି ହଲପଟା କରିଦେବା”—

ହୁରୁଦା କହିଲା—“ସେ ଆମକୁ ହଇରାଣ କଲା କଅଣ ? ବରଂ ଅଣ ହୁସିଆର ନ ହବାକୁ ଚେତେଇ ଦେଲା ତାକୁ ହଇରାଣ କରିବା ଠିକ୍ ହବନି ।”

ସରବର କହିଲା—“ଆରେ ଦୁନିଆରେ ସମସ୍ତେ ବେଳେ ବେଳେ ଅଣ ହୁସିଆର ହୋଇ ଯାଆନ୍ତି । ରାଜୁ କିଛି ଦୁନିଆରୁ ବାହାର ନୁହେଁ ତାର ଅଣହୁସିଆର ପଣକୁ ଯେମିତି ଟିକିଏ ହଲପଟା ଦ୍ୱାରା ଚେତେଇ ଦେବା, ଠିକ୍ ସେ ଆମକୁ ଯେପରି ଚେତେଇ ଦେଲା ତାକୁ କଣ ବେଶି ହଲପଟା କରିବାକୁ କହୁଛି । ଏମିତି କାମ କରିବା ଯେମିତି ତାର କିଛି କ୍ଷତି ହବନି ।”

ପ୍ରସ୍ତାବଟା ସବୁ ସମ୍ମତି କ୍ରମେ ଗୃହୀତ ହୋଇଗଲା । ସେମାନଙ୍କୁ ବି ଗୋଟାଏ ମଜକା ଚଟାପଟ୍ ମିଳିଗଲା । ପର ଦିନ ଦି’ପହରରେ ରାଜୁ ଦୋକାନ ଭିତରେ ଥାଇ କବାଟକୁ ଭିତରୁ କିଳିଦେଲା । ଦି’ପହରରେ ଘଣ୍ଟାଏ ବିଶ୍ରାମ ପାଇଁ ସେ ନିତି ଏମିତି କବାଟ ବନ୍ଦ କରେ । ଗୁଣ୍ଡି ଲାଗିଥିବା ଖୋଲା କୋଳପଟା ଯେ ପଦାରେ ଝୁଲୁଥିଲା ସେତେକ ତାର ଖିଆଲ ନଥିଲା । ସରବର ନଜରରେ ଏଇଟା ଯେମିତି ପଡ଼ିଛି ସେ ଥିର୍ କରି ଗୁଣ୍ଡିସହ କୋଳପଟାକୁ କାଢ଼ିଆଣି ନିଜ ପାଖରେ ରଖିଲା ।

ହୁରୁଦା ଓ କାଲୁ ଏହା କେତେକ ମିନଟ ଭିତରେ ଜାଣିଗଲେ । ସମସ୍ତେ ମନେ ମନେ ଭାରି ଖୁସିଟାଏ ହୋଇଗଲେ । କୋଉଠି ଗୁଡ଼ ଖୋଜେଇ ଖୋଜେଇ ତାକୁ ପଟାଏ ଆଚ୍ଛା କରି ହାଲିପଟା କରିବେ । ମଜାଟା ଦେଖି-ବାକୁ ତିନିହେଁ ବି ସାମନା ଦୋକାନରେ ବସି ରହିଲେ ।

ସମସ୍ତ ହେଲରୁ ରାଜୁ କବାଟ ଖୋଲିଲା । ସାମନା ଦୋକାନରେ ବସିଥିବା ତିନିଜଣ ଯାକ ଗମ୍ଭୀର ହୋଇଗଲେ । ରାଜୁ ନିଜ ଗଦି ଉପରେ ବସିଲା । ମଜା ଦେଖିବାକୁ ତିନିହେଁ ସେଠୁ ହୁଙ୍କୁ ନଥାନ୍ତି । କୁରୁକୁରିଆ ହସରେ ଲୋଟି ଯାଉଥାଆନ୍ତି । ବାଲୁଆ ବିଗୃର ବି ଗୃଲିଥାଏ । ଜଣେ କହିଲା—"ଗୁଡ଼ଟା ଯେତେବେଳେ ଦରକାର ପଡ଼ିବ, ପୁଅ ମନ ସେତେ-ବେଳେ ଯାଇ ଘର ଧରିବ । ବିଗୃରି ଦୋକାନ ଗୋଟାକ ଯାକ ଘାଣ୍ଟିବ, ତା ମୁଣ୍ଡରେ ଖାଲି ତେନ୍ତୁଳିଆ ବିଛା କାମୁଡ଼ିବ ।"

ଆଉ ଜଣେ କହିଲା—"ଆଲମାରି ଘୂଞ୍ଚା, ଟେବୁଲ ଘୂଞ୍ଚା, ବାକ୍ସ ଘୂଞ୍ଚା ଓ ଉଠା ପକାରେ ଗଣ୍ଡି ଦୋହଲି ଯିବ । ଖାଇବା ଦରବ ତକ ପେଟରେ ପାଉଁଶ ହୋଇଯିବ ।"

ଆଉ ଜଣେ କହିଲା—"ପଦାରେ ଆସି ଯଦି ଖୋଜନ୍ତା ତେବେ ଆହୁରି ବେଶି ମଜା ହୁଅନ୍ତା । ସମସ୍ତେ ପଗୃରନ୍ତେ—କରେ କଅଣ ଖୋଜୁଛୁ କରେ ? ସେ ବି—ଗୁଡ଼ ହଜିଛି, ଗୁଡ଼ ହଜିଛି କହି ଥକି ଯାଆନ୍ତା । ତା ପାଟିରୁ ବଡ ବାହାରି ପଡ଼ନ୍ତା ।"

ଏଣେ ଏମିତିଆ ବାଲୁଆ ବିଗୃରକୁ ତେଣେ ରାଜୁର ତନାଘନା ବେପାର ଗୃଲିଥାଏ । ଗରାଖ ପରେ ଗରାଖ ଆସୁ ଥାଆନ୍ତି ଯାଉ ଥାଆନ୍ତି । ସେ ଏକାବେଳେକେ ବେପାରରେ ବୁଡ଼ି ଯାଇଥାଏ । ଘଣ୍ଟାଏ ଗଲା, ଦି' ଘଣ୍ଟା ଗଲା । ରାଜୁ ଗୁଡ଼ ଖୋଜିବାର ଲକ୍ଷଣ ଦେଖାଗଲା ନାହିଁ । ଏମାନେ ଭାବିଲେ ଗରାଖ ଛାଡ଼ିଗଲେ ରାଜୁର ଗୁଡ଼କଥା ମନେ ପଡ଼ିବ । ଆଲମାରି ଗୁଡ଼ାକରେ ଯଦି ଗୁଡ଼ ପଡ଼ିଥାଆନ୍ତା ତେବେ ଏତେବେଳକୁ କାମ ବଢ଼ି ଯାଆନ୍ତାଣି । ଦୁର୍ଭାଗ୍ୟକୁ ସବୁ ଆଲମାରି ଖୋଲା । କ୍ରମେ ଅନ୍ଧାର ହେଲା । ଆଲୁଅ ଲାଗିଲା ତଥାପି ଗୁଡ଼ ଖୋଜା ହେଲାନାହିଁ । ତିନିହେଁ ଅଥୟ ହୋଇ ପଡ଼ିଲେ । ଏଣେ ରାଜୁର ଛଟପଟ ଦେଖିବାର ଲୋଭ । ତେଣେ ହିଁ ଶସ୍ତ୍ର ପ୍ରଦର୍ଶନ ଦେଖିବାର ସମସ୍ତ । ତିନିହେଁ ଏଇ ଦୁଇ ଚକ ଭିତରେ ପେଷି ହୋଇଗଲେ । ଅଥୟ ହୋଇପଡ଼ି କାଲୁ

ଶେଷରେ ନତେଲା ଦେଖି ଦୋକାନରେ ପଶିଲା । ଆଲମାରି ଗୁଡ଼ାକୁ ଚାହିଁ, ମୁରବି ପଣିଆ ଦେଖାଇ କହିଲା—"ବାରଲୋକ ଦୋକାନ ଭିତରେ ପଶୁଛନ୍ତି, ଏଗୁଡ଼ାକ ଚାବି ପକାଇ ଦଉନୁ । ସବୁବେଳେ ଏମିତିଆ ବେଙ୍ଗା ଫୁଲିଆ ହେବା ଠିକ୍ ନୁହେଁ । ଆଣିବୁଟି ଶୀଘ୍ର ତାଲା ସବୁ ପକାଇ ଦେ ।"

ଟିକିଏ ହସି ଦେଇ ରାଜୁ କହିଲା—"ଆରେ ଦଶଟା ଆଖି ନ ହେଲେ କେହି ଦୋକାନଦାର ହୁଏନି । ମୋର ବି ଦଶଟା ଆଖି, ଚାବି ପକାଇବା ଦରକାର ନାହିଁ ।"

ତଥାପି ଆଶା ନଛାଡ଼ି କାଲୁ କହିଲା—"ଉଁଃ ବଂଶଲୋଚନଙ୍କ ନାତି ଦଶ ଲୋଚନ ଆସିଲେ କେଉଁଠୁ ! ବତେଇଲୁ ତୋ ଦଶଟା ଆଖି ।"

ରାଜୁ ବତେଇ ଦେଲା । "ଆରେ ଦି'ଟା ଗରାଖ ଉପରେ ଦି'ଟା ଗରାଖ ପକେଟରେ, ଦି'ଟା ସାରା ଦୋକାନ ସାକ, ଆଉ ଦି'ଟା ଗଲି ଆଇଲାଙ୍କ ଉପରେ । ଏ ଦଶଟାରୁ ବର୍ତ୍ତିଲେ ଯାଇ କଏ ଦୋକାନରେ ଚୋରି ହାତ ଲଗେଇବ । ଚାବି ପକାଇବା ଦରକାର ନାହିଁ ।"

କାଲୁ କୁ ଆଉ କିଛି ପଇଠିଲା ନାହିଁ ସେ ଖସିଲା । ସରବର ଯାଇ କହିଲା—"ରାଜୁ ! ଟିକିଏ ତୋ ଚାବି ଦେଲୁ ମୋ' ବାକ୍ସ ଚାବିଟା ହଜି ଯାଇଛି ।"

"ମୁଁ ଥରେ ଠେକି ବାପାଗଣ୍ଡ ଖାଇଛି କାହା ବାକ୍ସ ଖୋଲିବାକୁ ମୋ ଚାବି ଦେବିନି । ଥରେ ମୋତେ ଜଣେ ସନ୍ଦେହ କରି କହିଲା— "ତୋର ଚାବିରେ ମୋ ବାକ୍ସ ଖୋଲୁଥିଲୁ, ତୁ ବୋଧହୁଏ ମୋ ବାକ୍ସ ଫିଟେଇଛୁ ।" ସେଇ ଦିନଠୁ କାନ ମୋଡ଼ି ହେଇଛି ଆଉ କାହାକୁ ଚାବି ଦେବିନି । ସରବର ବି ହଟିଲା ।

ହୁରୁଦା ଚେଷ୍ଟା କଲା । ବହୁତ ନେହୁରା ହୋଇ କହିଲା—"ଭାଇ ତୁ ନଗଲେ ଆମକୁ ଭଲ ଲାଗିବନି । ଦୋକାନ ବନ୍ଦ କରି, ଚାଲ ଯିବା ଆଉଥରେ ଦେଖି ଆସିବୁ ।"

"ଗୋଟାଏ ଖେଲ ଦି'ଥର ଦେଖିବା ରାଜୁ ଜାତକରେ ନାହିଁ । ମୋ ବାପା କହିଲେ ବି ମୁଁ ଶୁଣି ଯିବିନି ।"

ହୁରୁଦାକୁ ଆଉ କଥା ଅଣ୍ଟିଲା ନାହିଁ ସେ ବି ଖସିଲା । ତିନିହେଁ ପୁଣି ପଦାରେ ବିଚାର ଲଗେଇଲେ ।

ଜଣେ କହିଲା—ଦ୍ୱିତୀୟ ପ୍ରଦର୍ଶନର ବେଳ ହୋଇ ଆସିଲା, ଏବଂ କରିବା କଅଣ ? ଚାଲ ସିନେମା ଚାଲିଯିବା । ରାତି ସାଢ଼େ ବାର ବେଳକୁ ଫେରିଲେ ଚାବି କୋଲପକୁ ଦବା । ସେତେବେଳ ଯାଏ ସେ ଛଟପଟ ହେଉଥାଉ । ଆଉଜଣେ ପ୍ରତିବାଦ କରି କହିଲା—"ହେଃ ସେମିତି କରିବା ଠିକ୍ ହବନି, ହଠାତ୍ କେଉଁ ଚାବିଟା ଯଦି ତାର ଦରକାର ପଡ଼େ ? ନ ପାଇ ଯଦି ଆଉ କୋଲପ କଞ୍ଚି କାଣି ପକାଏ ତେବେ କଥାଟା ବଡ଼ ଖରାପ ହେବ । ଆମଲାଗି ତାର ଲୋକସାନ ହେବ ଏଇଟା ଠିକ୍ ନୁହେ । ଆଉ ଟିକଏ ସବୁର୍ କର ।

ତିନହେଁ ଏହିପରି ଛଟର ପଟର ହେଉ ହେଉ ଦ୍ୱିତୀୟ ପ୍ରଦର୍ଶନର ସମୟ ହୋଇଗଲା । ଆଉ କେହି ସମ୍ଭାଳ ହୋଇ ରହି ପାରିଲେ ନାହିଁ । ଶେଷରେ ବିରକ୍ତ ହୋଇ କାଲୁ କହିଲା—"ତାକୁ ହଇରାଣ କରିବାକୁ ଯାଇ ଆମେ ବେଶ୍ ପଟାଏ ପଟାଏ ହଇରାଣ ହେଲୁଣି । ମଣିଷ ଜଳଖିଆ ବି ଟିକଏ କରି ପାରିଲାନି । ଯାହା ହେବାର ହେଲାଣି—ଯା ତାକୁ ଚାବି କୋଲପ ଦେଇଦେ । ତେଣେ ସମାଚାର ଫିଲମ୍ ଆରମ୍ଭ ହୋଇ ଯିବଣି ।"

ଶେଷରେ ରାଜୁ ପାଖରେ କୋଲପ, ଚାବିକୁ ଥୋଇଦେଇ ଓ ଅଢ଼େଇ ପଦ ଆକଟ କରି ତିନହେ ଗୁଟିପଟି ହୋଇ ପଳେଇଲେ ।

ସିନେମା ହଲରେ ବି ହଇରାଣ ହେବାକୁ ବାକିଥିଲା । ଅସଲ ପ୍ରଦର୍ଶନ ଆରମ୍ଭ ହୋଇ ଯାଇଥାଏ । ଅନ୍ଧାରରେ ବାଟ ଅଣ୍ଡାଳି ଅଣ୍ଡାଳି ଦର୍ଶକମାନଙ୍କ ଆଗରେ ଗଲାବେଳେ ନାନା କଟୁକ୍ତି ସେମାନଙ୍କ କାନରେ ପଶୁଥାଏ ।

କିଏ କହୁଥାଏ—"ଆଜିକାଲି ସିନେମା ଅଧାରେ ଘରେ ପଶିବା ଗୋଟାଏ ନୂଆ ଫେସନ ।"

କିଏ କହିଲା—"ଏ ଗୋଟାଏ ବାହାଦୁରୀ । ଆମେ ଏମିତିଆ କାମିକା ଲୋକ । କାମ କରୁ କରୁ ସମୟ ଅଣ୍ଟୁନି ।"

କେହିବା ସିଧା ସଳଖ କହିଲା—"ଯେଉଁ ଗୁଡ଼ାଙ୍କର ଏତେ ଟିକଏ ବି ସମୟ ଜ୍ଞାନ ନାହିଁ ସେଗୁଡ଼ାଙ୍କୁ ମଣିଷ କହିବା ଉଚିତ ନୁହେଁ ।"

କାଲୁ ନିଜ ଥାନରେ ବସି ପଡି ଚୁପ୍ ଚୁପ୍ କରି କହିଲା—"ଯେତୁ ପାଞ୍ଚଇ ପର ମନ୍ଦ, ତା ମନ୍ଦ ଚିନ୍ତନ୍ତି ଗୋବିନ୍ଦ"—

# ଅଦାନ ରଜ

ଧରମ ପେଟୃଚକ ଠାକୁରାଣୀ ଘର ଭିତରେ ବସି ପିଠାମାନଙ୍କର ସ୍ୱାଦୁ ଓ ଉପାଦେୟ ବିଷୟରେ ଚର୍ଚ୍ଚା ଚଳେଇ ଥା'ନ୍ତି । ଜଣେ କହିଲା, ପିଠା ଭିତରେ ଢି'ପିଠାଠୁଁ ଆଉ ପିଠା ନାହିଁ । ଗୁଜୁଳ ଚୂନାକୁ ଗୁଡ଼ରେ ପାଗ କରି ଖାଣ୍ଟି ଗୁଆ ଘିଅରେ ଛାଣି ଦେବ । ପାଗ ଯୋଗଟା ଯଦି ଭଲ ହୋଇଥିବନା ତେବେ ତା' କଥା ଛାଡ଼ । ମଣିଷ ରସଗୋଲ୍ଲକୁ ଥୁ କରି ଦେବ । ଆହା ସେ ଯେଉଁ ଟେସ୍ ( ଟେଷ୍ଟ ) ତା' ଆଉ କହିବା କଅଣ, ଆହା ପୂଳାଏ କାମୁଡ଼ି ନେଇ ଦାନ୍ତରେ ଗୁପି ଦେଲେ ସ୍ୱର୍ଗ ଦ'ହାତ । ଜିଭ ଲଗେଇ ଚୁକୁଲେଇ ଦେଲେ ସ୍ୱର୍ଗ ହାତେ । ତୋଣ୍ଟିପର୍ଯ୍ୟନ୍ତ ନେଇଗଲେ ସିଧା ସରପଟ ସ୍ୱର୍ଗରେ ହାଜର ।

ତାକୁ ଅଟେଇ ଆଉ ଜଣେ କହିଲା "ଆଚ୍ଛା ଗୋବର ଖାଇ ତଣ୍ଟି ସେପାଖକୁ କେଉଁଠି ଗଲେ ?"

ଆଉ ଜଣେ ଉପରେ ପଡ଼ି କହି ଦେଲା—"ସ୍ୱର୍ଗରୁ ଧପାସ୍ କରି ଏକାବେଳେକେ ନର୍କରେ, ନା କଅଣ ଗୋବର ଖାଇ ?"

"ଆରେ ହଟ୍ ହଟ୍, ସ୍ୱର୍ଗରୁ ନର୍କ ନୁହେଁ, ସ୍ୱର୍ଗରୁ ସିଧା ଗୋଲକଧାମ । ଏ ପିଠାରେ କେଉଁ ଗୁଣ ନାହିଁ । ଖୁସ୍‌ବୁରେ ମନ ମଜଗୁଲ ହୋଇଯିବ । ଖାଇବାକୁ ଯେମିତି, ରଖିବାକୁ ବି ସେମିତି, ପାଗେ ତିଆରି କରି ଦେଲେ ମାସକଯାଏ ଖାଉଥା—"

ଆଉ କେତେ ଗୁଣ ବଖାଣି ଥାଆନ୍ତା କିନ୍ତୁ ଲୋକ ପାଟିଯାକ କକେଇଯାଇ ପାଟିଟା ବନ୍ଦ କରିଦେଲା ।

ଆଉ ଜଣେ ମାଡ଼ି ବସି କହିଲା—ସେ ଘି'ପିଠାର ଯୁଗ ଗଲାଣି । ଆଜି କାଲି ଯେଉଁ ଧୋକଟେବୁଲଘିଅର ରାଜୁତି ଚାଲିଛି ସେଥିରେ ଏ ପିଠାରୁ ଗୋଟିଏ ପେଟରେ ପଡ଼ିବା ମାନେ ଡାକ୍ତରକୁ ନ'ଶ ବାର ଟଙ୍କା ଦେବା ତା'ପରେ ଯେତକ ପେଟଯନ୍ତ୍ରଣା । ଆଉ ସେ ପିଠା ନାଁ ଧରନା । ପ୍ରକୃତରେ ପିଠାଭିତରେ ମଣ୍ଡା ରାଜା । ବାମ୍ଫରେ ସିଝିବ, ଭେଜିଟେବୁଲ ଘିଅର ଧାସର ବାଜିବ ନାହିଁ । ଦେଖିବାକୁ ଧଳା ଫରଫର କି ସୁନ୍ଦର । ସବୁ ଭିଟାମିଣିଯାକ ବାନ୍ଧି ହୋଇ ତା'ର ହୃଦରେ ରହେ । କାହିଁକନା ପଳେଇ ଯିବାକୁ ବାଟ ନଥାଏ । ହଣ୍ଡାରେ ଅଧାର ଉପରେ ରହିଲା । ତା'ପରେ ତେଲଉଣି ଘୋଡ଼ା ହେଲା । ଭିତରେ ଭିତରେ ବାମ୍ଫରେ ସିଝିଲା । ଆଉ ବାଟ କାହିଁ ଯେ ଭିଟାମିଣି ବାହାରିଯିବ । ହ' ଗୁଟିଏ ପକେଇ ଦେଲେ ପୁଣି ଦୁଇ ବକତ ଟେର ହୋଇଯିବ—”

ଜଣେ ନାପସନ୍ଦ କରି କହିଲା ତୁମେ ଯାହା କୁହ ଗନ୍ଧିଆ ଭାଇ, ମଣ୍ଡାଠୁଁ ବଳି ବଦମାସ ପିଠା ଆଉ ଜଗତରେ ନାହିଁ । ସେଇଥିଲାଗି କଥାରେ କହନ୍ତି ପିଠା ଭିତରେ ମଣ୍ଡା ବଟୋଳ । ଆଉବି ଚାରି ପିଠାଟା ହନକୁ ଲଗେଇ ଯିବ, ପାଟିରେ ଦେଇ ହବନ । ଲୋଭେଇ ହ'ଗୁଟା ବେଶି ଖାଇ ଦେଲେ କଥା ଶେଷ । ପେଟ ଫମ୍ପେଇ ହଲପଟା କରିଦେବ । ଗନ୍ଧିଆ ଭାଇ ମଣ୍ଡା ନା ଧର ନାହିଁ ।”

ଆଉ ଜଣେ କହିଲା—'ଠିକ୍ କହୁଛ, ମଣ୍ଡା ରାଜା ହେବାର ପାତ୍ର ନୁହେଁ । ରଜା ହେଲେ ହେବ ପୋଡ଼ ପିଠା । ଅଉଲ ନମ୍ବର ଟେସ । ଡିଆରି ବେଳେ ଗୁରିଆଡ଼ୁ ବନ୍ଦ ସବୁ ଭିଟାମିଣି ବାନ୍ଧି ହୋଇ ରୁହେ । ଥରେ ହେଲେ ବଜସ ୩ଦନ ଖାଇପାରିବ । ମିଶା ଖରାପ ତେଲ ଘିଅର ଲୋଡ଼ା ନାହିଁ । ରଜା ଲାଏକ ପିଠା ହେଉଛି ପୋଡ଼ପିଠା । ବର୍ଷକେ ଥରେ ରଜକୁ ହୁଏ । ହେଲେ ବର୍ଷ ସାରା ମନରେ ରହିଥାଏ ।

ଅଧିକାଂଶ ସମ୍ମତି ସୂଚକ ଧ୍ୱନି ଦେଲେ—'ଠିକ୍ ଠିକ୍ ଗନ୍ଧିଆ କହିଲା ।' ଠିକ ସତ ହେଲେ ଡିଆରି କରିବା ବଡ଼ କଷ୍ଟ । ରାଧା ନାଚିବା ସଙ୍ଗେ ସମାନ । ଯେ ଯାହା ଚ୍ଚହେଉ ଭାରି ବଢ଼ିଆ ପିଠାଟାଏ ଏକା, ଭାରି

ମନହେଉଛି ଖାଇବାକୁ କାଲ ପଅରଦିନ ଭିତରେ କୁଆଡ଼ୁ ମିଳି ଯାଆନ୍ତା କି ମନ ଅରମାନ ମେଣ୍ଟି ଯାଆନ୍ତା ।

ଆଉ ଜଣେ କହିଲା—ସତେ ପୋଡ଼ ପିଠା କଥା ପଡ଼ିଲାରୁ ମନଟା ଭାରି କନ କନ ହଉଛି ଖାଇବାକୁ । ଏଇଠି ସମସ୍ତେ ମିଶି ଗୁଲି କରିବା, ପେଟେ ପେଟେ ଖାଇଦେବା ।

ଜଣେ ଉପହାସ କରି କଥାଟାକୁ ନାକଚ କରିଦେଲା—'ଆରେ ଏ ଅଣ୍ଡିରା ପାଠ ନୁହେଁ । କଅଣ ବରା, ଗୁଲୁଗୁଲା ହୋଇଛି ଯେ ଗୋଳେଇ ଦେବ ଚୂଲି ଲଗେଇ ଛାଣି ଦେବ । କହନ୍ତିପରା ଏହାର ଛଅମାଣ ଘିଅ ହେଲେ ରାଧା ନାଚିବା ସଙ୍ଗେ ସମାନ । ଚାଉଳ ଚୂନା କର, ଗୁଡ଼ ସଙ୍ଗେ ପାଗ କର । କିସମିସ ବାଦାମ ପେସ୍ତା, ଛେନା ଦେଇ ଘାଣ୍ଟ । କରେଇ ଆଣ, ତା' ଭିତରେ ଭର୍ତ୍ତିକର, ପତର ଦେଇ ଘୋଡ଼, ଉପର ନିଆଁ ତଳ ନିଆଁ ଦେଇ ରାତିଯାକ ବସା । ଏତେ କଥା ପରେ କାଟ, ଖାଅ । ଏଡ଼େ ସହଜିଆ କଥା ଭାବନା ।'

ଜଣେ କହିଲା—ଏମିତିରେ ଯଦି ନ ହଉଛି ତେବେ ଗୁଲି ଚାନ୍ଦାକରି ଜଣକ ଘରେ କରେଇ ଦେବା । ଏଇଠିକୁ ଆଣି ଖାଇଦେବା ।

ଆଉ ଜଣେ କଥାଟାକୁ ନା ପସନ୍ଦ କରି କହିଲା—"ହେଃ, ଏ ପିଠା ହେଲେ ତହିଁରେ ସମସ୍ତଙ୍କ ନଜର ପଡ଼େ । ସମସ୍ତଙ୍କର ଆଶାଥାଏ ଖାଇବାକୁ । ଗୋଟାଏ ପିଠା କରି ଆମେ ଏଠି ଖାଇ ଦେବାତ ପେଟରେ ସମସ୍ତେ ପଶିଯିବେ । ପେଟ ଟାଣିବାକୁ ଯାଉ ହେବ । ଏମିତି କିଛି କରିବା ଯେମିତିକି ସମସ୍ତେ ଖାଆନ୍ତେ ସମସ୍ତେ ଆପଣା ଘରେ ବସିବ କଲେ କାମ ଖତମ୍ ହୋଇଯାଆନ୍ତା ।

ଗନ୍ଧିଆ କହିଲା—"କି କଥା କହୁଛ । ଆମ କଥା ଶୁଣିବାକୁ ଘରେ ଆମ ବାପ ମା' ଖାଲି କାନ ଟେକି ବସିଛନ୍ତି । ଶୁଣିଲେ ଓଲଟା ମାରି ଗୋଡ଼େଇବେ । ଭୁଛାକୁତ ଆମକୁ ସମସ୍ତେ ଧରମ ପେଣ୍ଡୁ ଦଳ ବୋଲି ଡାକୁଛନ୍ତି । ଏ ବାଟରେ କାମ ହେବନି । ଆଉ କିଛି ବାଟ ଖୋଜ ।"

ବହୁତ ବାଟ ଖୋଜା ହେଲା । ସବୁଥିରେ କଣ୍ଟା ଖାଲ, ଢ଼ିମା ଆବିଷ୍କାର କରି ଧାଇ ପରିତ୍ୟାଗ କରାଗଲା । ନିରାଶ ଦରିଆରେ ସମସ୍ତେ

ବୁଢ଼ ଯିବା ଉପରେ, ଠିକ ଏମିତି ବେଳକୁ ଗୋବର୍ଦ୍ଧ କାଳଟାଏ ମାରି ଦେଇ ପାଟି କଲା—"ପାଇଗଲି ବାଟଟାଏ ପାଇଗଲି ।"

ସମସ୍ତେ କଅଣ ପଚାରି ତାକୁ ଘେରି ଗଲେ । ସେ ଚୁପୁ ଚୁପୁ କରି କହିଲା—"ଚାଲ ଗୁପଚୁରେ ହଗୁରା ବାଉଶୀର ସାହାଯ୍ୟ ନେବା । ତାକୁ ଚାରିଅଣା ପଇସା ଧରେଇ ଦେଲେ କାମ ଖତମ୍ ।

ହଗୁରା ବାଉଶୀକୁ ହାତ କରି ସବୁ କାମ ହାସଲ କରିବାର ଖଣ୍ଡିନାଣ୍ଡି ଯୋଜନା ଗୋବର୍ଦ୍ଧ ସମସ୍ତଙ୍କ ଆଗରେ ପେଶ୍ କଲା ଓ କଥାଟାକୁ ଖୁବ୍ ଗୁପ୍ତ ରଖିବାକୁ ସମସ୍ତଙ୍କୁ ଉପଦେଶ ଦେଲା । ସମସ୍ତଙ୍କ ମନକୁ ଯୋଜନାଟା ପାଇଲା ଓ ସମସ୍ତେ ଏହାକୁ କାର୍ଯ୍ୟକାରୀ କରିବାକୁ ଓ କଥାଟାକୁ ଖୁବ୍ ଗୁପ୍ତ ରଖିବାକୁ ପ୍ରତିଜ୍ଞା କଲେ ।

ତହିଁ ଆର ଦିନ ସକାଳୁ ଗାଁ ଠାକୁରାଣୀଙ୍କ ମଣ୍ଡପସାମନାରେ ଅବତାର ବାଜା କର୍ଣ୍ଣ ଉଠିଲା । ହଗୁରା ବାଉଶୀ ବେକରେ ମନ୍ଦାର ଫୁଲ ହାରଟାଏ ପକେଇ ଓ କଳା ଖଦଟାଏ ପିନ୍ଧି କଂପିଲା ଓ ବେତ ଦୁଇଟା ନଚେଇ ନଚେଇ ମଝିରେ ମଝିରେ କୁହାଟ ଛାଡ଼ିବାରେ ଲାଗିଲା । ଧରମ ପେଟଦୁଲ ପାଖରେ ଅତି ଭକ୍ତି ଦେଖାଇ ବସି ଥାଆନ୍ତି । କିଏ ଘିଅ ବଳତା ଦେଉଥାଏ, କିଏ ବା ଧୂପଦାନରେ ଝୁଣା ଦେଇ ବଢ଼େଇ ଦେଉଥାଏ, କ୍ଷଣକ ଭିତରେ କଥାଟା ସାରା ଗାଆଁରେ ଠ ହୋଇ ବୁଲି-ଗଲା । ଗାଁ'ବାଲାଏ କଥାବାର୍ତ୍ତା ହେଲେ—'ହଗୁରା ବାଉଶୀକୁ ଆଜ ଜବର କାଳଶୀ ପରସନ ହୋଇଛନ୍ତି । କ୍ରମେ ଆବାଳବୃଦ୍ଧବନିତା ଧାଇଁଲେ । କାଳଶୀ ମଝିରେ ମଝିରେ ଧୂପଦାନୀ ଉପରେ ମୁହଁ ରଖି ଓ ହ'ପାଖରେ ପାପୁଲି ଯୋଡ଼ାଇ ଫୁସ୍ ଫୁସ୍ କରି ଝୁଣା ଧୂଆଁ ତକ ପିଇ ଯାଉଥାଏ । ଝୁଣା ଧୂଆଁ ତକ ତା' ପେଟକୁ ଯାଉଥାଏ କି ଫସ୍ ଫସ୍ ହୋଇ ପଦାକୁ ବାହାରି ଯାଉଥାଏ ତାହା ପ୍ରତି କାହାରି ନଜର ନଥାଏ । ବାତ ମାଇଲା ପରି ଥରି ଥରି କାଳଶୀ କୁହାଟ ଦେଲା—"ଆରେ କେଉଁ ଶରଧାରେ ମୁଁ ଏ ଗାଆଁକୁ ବଜେ କରିଥିଲି, ମୋତେ କେହି ପଚାରିଲେ ନାହିଁରେ, ମୋତେ କେହି ପଚାରିଲ ନାହିଁ । ହଉ ନ ପଚାରି ମୁଁ ଯାଉଛି ଚାଲିଯିବି, ।ତେ ଆଜି ଦୋଷ ଦେବନି, ମୁଁ ଯାଉଛି ।

ବୁଢ଼ୀମାନେ ଭୟରେ କଂପିଲେ । ବୁଢ଼ାମାନେ ପ୍ରମାଦ ଗଣିଲେ । ମାମଲତକାରମାନେ ନଉଛାଳ ହୋଇ କହିଲେ 'ନାହିଁ ମା' ଆମେ

ପଚାରିବୁ ନାହିଁ କାହିଁକି ? ତୁମେ ଜଣେ ହବା ଜାଣି ଆମେ ସଭିଏଁ ଆସୁଛୁ । ତୁମେ ଯାହା କହିବ ଆମେ ତାହା କରିବାକୁ ତିଆର । ମା' କଥା ପୁଅ କ'ଣ ଏଡ଼ି ଦେବ ।'

ଅତି ଭକ୍ତିର ସହ ଗନ୍ଧିଆ ମୁଣ୍ଡି ଆଠାଏ ମାରି ଦେଇ ପଚାରିଲା— 'ମା' ଆମେତ ଅଜ୍ଞାନ ମୂରୁଖ ଲୋକ, ଆମକୁ ବାଟ ନଦେଲେ, ଆମେ ଜାଣିବୁ କପରି ? ଯାହା କିଛି ଲୋଡ଼ା କହନ୍ତୁ, ପୁଅମାନଙ୍କୁ କ୍ଷମା ଦିଅନ୍ତୁ ।"

ଆହୁରି ବେଶି ଜୋରରେ ଥରି ଥରି ହଗୁରୁ ବାଉଳା ଆରମ୍ଭ କଲା, "ଆରେ ମୁଁ ସପନପୁରର ଭଗବତୀ ସପନେଇଶୋଣୀ । ରଜ ପୋଡ଼ପିଠାରେ ମୋର ଭାରି ଶରଧା । ସପନପୁରିଆଏ ଏସନ ଭଲ ପୋଡ଼ପିଠା କଲେ ନାହିଁ । ମୋତେ ବେଖାତର କଲେ । ମୁଁ ରାଗି ପଳେଇ ଆସିଲି । ମୋ ଆସିବା ପଛେ ସେ ଗାଁର ବୁଢ଼ା ହରି ମଳିକ ଠୋ କରି ମରି ଗଲା । ମୋ ଦୟାରୁ ଗଲା ଅଶୀ ବର୍ଷ ହେଲା ମାମଲତଗିରି କରୁଥିଲା । ତା' ପଛେ ଠୋ ଠୋ ହୋଇ ଆଉ ଚାରି ପାଞ୍ଚଟା ବୁଢ଼ା ଓ ଗୋଟାଏ ଗଜା ଭେଣ୍ଡିଆ ମକର ଟଳି ପଡ଼ିଲେ । ସପନ ପୁରିଆଙ୍କ ଚେତା ପଶିଲା ମୋ'ଆସ୍ଥାନରେ ମାଜଣା ଆରମ୍ଭ କରିଦେଲେ, ମୋ ମନରେ ଦୟା ହେଲାଆଉ କାହାରି ଉପରେ ଆଖି ଦେଲି ନାହିଁ । ହେଲେ ଆଉ ସେଠାକୁ ଫେରି ଯିବାକୁ ମନ ଡାକିଲା ନାହିଁ । ସେଇ ରଜଦିନଠାରୁ ମୁଁ ଉପାସ । ରଜ ପୋଡ଼ପିଠା ନ ଖାଇଲେ ମୁଁ ଆଉ କିଛି ଖାଇବି ନାହିଁ । ସନା ବାଉରୀ ତେନ୍ତୁଳି ଗଛ ମୂଳରେ ମୁଁ ଅଖିଆ ଅପିଆ ପଡ଼ିଛି । ପଚାରି ଗୋବରାକୁ ମୁଁ ହଥର ସପନେଇଲିଣି ।'

ସମସ୍ତେ ଗୋବରାକୁ ବେଢ଼ିଗଲେ । ଗୋବରା ଗାଲରେ ହାତ ଦେଇ କାଠ ପାଲଟି ଗଲା ପରି ହୋଇ କହିଲା— "ସତ କଥା—ହ ମାସ ତଳେ ଥରେ ଆଉ ୪।୫ ଦିନ ତଳେ ଥରେ ମୁଁ ଏମିତିଆ ସପନ ଦେଖିଛି । ମୁଁ କଅଣ ତାକୁ ସତ ବୋଲି ମଣିଥିଲି । ସେଇଥିଲାଗି କାହାକୁ କହିନି—

ଜଣେ ବ୍ୟସ୍ତ ହୋଇ ପଡ଼ି ପଚାରିଲା—"ଆରେ କଅଣ ଦେଖିଲୁ କହ ।"

ଓହୋ କଥା ମନେପଡ଼ିଲାରୁ ତୁମ ଠାକୁରେଇ ଉଠୁଛି । ମୁଁ ଶୋଇଛି, ହଠାତ୍ ଜଣେ ସ୍ତ୍ରୀଲୋକ ଆସିଲେ । ହଳଦୀ ଗୁଳୁ ଗୁଳୁ ଦିହ । ନାକରେ ବସଣି, ନୋଥ, ଗୁଣା, ଦଣ୍ଡି, ବେସର, କାନରେ ଗଣ୍ଡିଆ, ବାଉଳି, ମଲକଡ଼ି, ମୁଣ୍ଡରେ ଅଳକା, ଚନ୍ଦ୍ରଝୁମ୍ପି, ଗଗେଡ଼ି ଚନ୍ଦ୍ର, ମଥାରେ ଟିକିଲି, ହାତରେ ବଟଫଳ, କଙ୍କଣୀ, ଚୁଡ଼ି, ବାହାରେ ବାଜୁ, ବନ୍ଦ, ତାଡ଼, ଆଙ୍ଗୁଠିରେ ହାତପଦ୍ମ, ଅଣ୍ଟାରେ ଚନ୍ଦ୍ରହାର, ବେକରେ ଗୁପସରି, କୁରୁଯାଠକ, ଧାନୁଆ ମାଳି, ହରଡ଼ଫାଳି, ମସୁରଫାଳି, ସୋରଷିଆ କଣ୍ଠି, ଗୋଡ଼ରେ ପାଦପଦ୍ମ ପଞ୍ଚମ ନୂପୁର, ଡଲ, ବଳା, ପାଉଞ୍ଜି, ପୁନାରେ ଗୁଞ୍ଜଣି ହୋଇଛନ୍ତି କହିଲେ ଚାଲ । କଳାଶାଢ଼ୀଟାଏ ପିନ୍ଧି ଥାଆନ୍ତି । ମୋତେ ଡାକି କହିଲେ ଦେ ଗୋବରୀ । ମୋତେ ପୋଡ଼-ପିଠା କରି ଦେ । ତୁମ ଗାଁ ପୋଡ଼ପିଠା ଖାଇବାକୁ ମୋର ଭାରି ମନ । ଆଜି କଅଣ କହି ଥାଆନ୍ତେ କେଜାଣି ଅଳପେଇସ ବିରାଡ଼ିଟା ଅଧା କାନ୍ଥି ଉପରୁ ମୋର ଉପରକୁ ଡେଇଁଲା ନିଦ ଭାଙ୍ଗିଗଲା । ସ୍ତ୍ରୀଲୋକଟି କୁଆଡ଼େ ଉଭେଇ ଗଲେ । ପୁଣି ୪।୫ ଦିନ ତଳେ ଠିକ ସେଇ ସ୍ତ୍ରୀଲୋକ ପୁଣି ସପନରେ ଦେଖାଦେଇ କହିଲେ—କରେ ଗୋବରୀ ପୋଡପିଠା ଦେଲୁନି, ହଉ ମୁଁ ଯାଉଛି ପରେ ଭାବିବୁ—ଏତିକିବେଳେ କବାଟଟା ପବନରେ ଧାଡ଼ୁକରି ପଡ଼ିଲା । ମୋ ନିଦ ଭାଙ୍ଗିଗଲା । ଚାରିଆଡ଼କୁ ଚାହିଁ ଦେଖିଲି କେହି କୁଆଡ଼େ ନାହିଁ । ପୁଣି ଶୋଇ ପଡ଼ିଲି । ମୁଁ କାହିଁକି ଜାଣିବି ଠାକୁରାଣୀ କହୁଛନ୍ତି ବୋଲି । ମୋର ବି ମନେ ନଥିଲା କହିବାକୁ । କାଳଶୀ କହିବାରୁ ସିନା ମନେପଡ଼ିଲା"—

କାଳଶୀ ପୁଣି କୁହାଟିଲେ—"ଆରେ ଯଦି ଭଲ ଗତି ଅଛି ତେବେ ଆସନ୍ତା ମଙ୍ଗଳବାର ଦିନ ସମସ୍ତେ ଅଦିନ ରଜ ପାଳିବ, ପୋଡପିଠା କରିବ । ସନା ବାଉରୀ ତେନ୍ତୁଳିଗଛ ମୂଳେ ମୁଁ ଓପାସରେ ପଡ଼ିଛି ସେଠି ମୋତେ ଭୋଗ କରିବ । ଆଜି ସମସ୍ତେ ପ୍ରସାଦ ପାଇବ । ଯାହା ଘରେ ପିଠା ନ ହେବ ତାରି ଘରୁ ବଡ଼ମୁଣ୍ଡିଆକୁ କଞ୍ଚା ଖାଇଯିବ । ମଙ୍ଗଳବାର ଯାଏ ସନା ବାଉରୀ ତେନ୍ତୁଳି ଗଛ ଠେଇଁ ରହିବି । ଯଦି କିଏ ଜଣେବି ମୋ ଆଜ୍ଞା ଅମାନ୍ୟ କରିବ ତେବେ ଏ ଗାଁ ଗୁଡ଼ା ବୁଡ଼ିଯିବ ଓ ଏ ଗାଁଟାକୁ ଉଚ୍ଛନ କରିଦେବି । ସବୁ ଘରୁ ମୁଣ୍ଡେ ମୁଣ୍ଡେ ନେଇ ଗୁଡ଼ିବି । ଯେତକ ମାଇପି ଲୋକେ ସେଠି ଥିଲେ ସମସ୍ତେ ଭୟରେ କାକୁସ୍ଥ ହୋଇଗଲେ ।

ବୁଢୀମାନେ ପାଟି କରି ଉଠିଲେ—"ତୁମ ଆଜ୍ଞା କିଏ ଅମାନ୍ୟ କରିବ ମା ! କ୍ରୋଧ ଶାନ୍ତ କର ମା, ଆମେ ସବୁ କରିବୁ ।"

ଧରମପେଟୁ ଦଳର ସମସ୍ତେ 'ମା'ଙ୍କୁ ନିର୍ଭର ପ୍ରତିଶ୍ରୁତି ଦେଲେ ତା'ପରେ କାଳଶୀ ବାହୁଡ଼ା ବଜେଇ କଲେ । ଗୋଟାଏ ପାଣି ଗରାକୁ କାମୁଡ଼ି ଧରି ନାଚି ନାଚିକା ସନାବାଉଣ୍ଠ ତେନ୍ତୁଳିଗଛ ଆଡ଼କୁ ଗଲେ । ବାଜାବାଲାଏ ଓ ଲୋକମାନେ ପଛେ ପଛେ ଧାଇଁଲେ । ତେନ୍ତୁଳି ଗଛ ମୂଳରେ କାଳଶୀ କଟାଗଛ ପରି ଭୁସ୍ କରି ପଡ଼ିଯାଇ ଛୋବ ଖାଇଗଲେ । ସମସ୍ତେ ଗଛମୂଳ ଅଣ୍ଡାଳି ଦେଖିଲେ ସତକୁ ସତ ଗୋଟାଏ ପଥର, ତାକୁ ଓଲଟେଇ ଦେଖନ୍ତି ତ ସେଥିରେ ଲାଗିଛି ସିନ୍ଦୂର । ଅବାକ୍ ହୋଇ-ଲୋକେ କଥାବାର୍ତ୍ତା ହେଲେ ପଥରଟାକୁ ସିନା ଅବିଶ୍ୱାସ କରିବା, ସିନ୍ଦୂର ଆସିଲା କୁଆଡ଼ୁ । ଏ ନିଶ୍ଚୟ ମା ସପନେଶ୍ୱରୀ । ଏଥିରେ ସନ୍ଦେହ ନାହିଁ ।

× × × ×

ମଙ୍ଗଳବାର ଦିନ ଯେପରି ଅଦିନ ରଜ ପାଳିତ ହେବ ସେଥିପାଇଁ ଖୁବ୍ ଜୋର ସୋରରେ ଯୋଗାଡ଼ଯନ୍ତ୍ର ଚାଲିଲା । ଅସଲ ରଜରେ ବରଂ ଅନେକେ ପଇସା ଅଭାବରୁ ପିଠା କରୁ ନ ଥିଲେ, କିନ୍ତୁ ଏ ଅଦିନ ରଜରେ ସମସ୍ତେ ଯୋଗାଡ଼ଯନ୍ତ୍ରରେ ଲାଗିଗଲେ । ପଇସା ଯୋଗାଡ଼ କରିବାକୁ ଅନେକ କଂସା, ପିତଳ ଧରି ମହାଜନ ଘରକୁ ଧାଇଁଲେ ।

ଏସବୁ କାଣ୍ଡ ଦେଖି ସହି ପାରିଲେନି ଆଉ ଗୋଟିଏ ଟୋକାଦଳ । ଏ ଦଳରେ ଥାଆନ୍ତି କେତେଟା ସ୍କୁଲ କଲେଜ ଟୋକା ଓ ତାଙ୍କର କେତେକ ଗୋଡ଼ାଣିଆ । ତୁଚ୍ଛାଟାରେ ଏ ମହରଗ ସମୟରେ ସମସ୍ତେ ଖର୍ଚ୍ଚାନ୍ତ ହେବେ । କେତେଜଣ ତଳ ତଳାନ୍ତ ହେବେ, ଏ ସବୁ କଥା ତାଙ୍କ ହୃଦରେ ଗଲା ନାହିଁ । ସେମାନେ ଘର ଘର ବୁଲି ଅଦିନ ରଜ ବିରୁଦ୍ଧରେ ସମସ୍ତଙ୍କୁ ବୁଝେଇବାକୁ ଲାଗିଲେ କିନ୍ତୁ ଫଳ ହେଲା ଠିକ୍ ଓଲଟା । ମାଇପେ ସେ କଥାକୁ ତ ଶୁଣିଲେ ନାହିଁ, ବରଂ ନାନାପ୍ରକାର ଗାଳି ଗୁଲଜ କଲେ । ଘରଦୁଆର ମଡ଼େଇଦେଲେ ନାହିଁ । ପିଠାଟିଏ ପାଇଁ ସେମାନେ ନିଜ ନିଜ ସ୍ୱାମୀ ହରେଇବାକୁ ପ୍ରସ୍ତୁତ ନ ଥିଲେ । ଏପରି

ମନ୍ତଗତି ଦେଖି ପାଠୁଆ ଦଳ ବଡ଼ ଚିନ୍ତିତ ହୋଇ ପଡ଼ିଲେ । ଏସବୁ ଜାଣି ଯେ ଧରମ ପେଣ୍ଟଦଳଙ୍କ ଦ୍ୱାରା ହୋଇଛି ସେ ବିଷୟରେ ସେମାନେ ଏକାବେଳେକେ ନିଃସନ୍ଦେହ ହୋଇଗଲେ । ଯେକୌଣସି ମତେ ଅଦ୍ଭନରଜକୁ ବନ୍ଦ କରିବାକୁ ସମସ୍ତେ ଦୃଢ଼ ସଂକଳ୍ପ ହୋଇଗଲେ । କିନ୍ତୁ ଉପାୟ କଅଣ । କାଳଶୀ ଏମିତିଆ ଭେଲିକି ଲଗେଇ ଦେଇଛି ଯେ ବନ୍ଦ କରିବା ନାଁ ଶୁଣିଲେ ମାଇପେ ଘୁଙ୍କୁଟି ଭିଆଁ ମାରୁଛନ୍ତି । ବିଲ୍‌କୁଲ୍ କୌଣସି କଥା ବି ଶୁଣିବାକୁ ପ୍ରସ୍ତୁତ ହେଉ ନାହାନ୍ତି । ସେମାନଙ୍କ ମନରେ ହତାଶ ଭାବ ଦେଖାଗଲା । ଶେଷରେ ଜଣେ କଲେଜ ଟୋକା ଅନ୍ୟମାନଙ୍କ କାନରେ ଫୁସ୍ ଫୁସ୍ କରି କହିଲା—"ଏ ରୋଗକୁ ହୋମିଓପାଥି ଔଷଧ ଦରକାର, କାଳଶୀର ବଦମାସିକୁ କାଳଶୀ ଲଗେଇ ଛଡ଼େଇବାକୁ ହେବ । ଅନ୍ୟକୌଣସି ଉପାୟ ଏଠି ଖଟିବ ନାହିଁ ।

× × × ×

ତହିଁଆରଦିନ ସକାଳୁ ଦେଖାଗଲା ଉଦିଆ ବାଉଶ ଠାକୁରାଣୀ ମଣ୍ଡପ ନିକଟରେ ଥରୁଛି । ଅବତାର ବାଜା ବି ତା ଥରା ସଙ୍ଗେ ତାଳ ଦେଉଛି । ପାଠୁଆ ଦଳରୁ ଜଣେ ଦିଜଣ ବି ନସର ପସର ହେଉଥାଆନ୍ତି । କାଳଶୀ ବିଚରାକିଆ କୁହାଟ ଉପରେ କୁହାଟ ଛାଡ଼ି ଗୁରୁଆଡ଼ ଥରେଇ ଦେଲା । ସଙ୍ଗେ ସଙ୍ଗେ ଗାଁରେ ରାଷ୍ଟ୍ର ହୋଇଗଲା ଯେ ଖୋଦ ଗାଁ ଠାକୁରାଣୀ ଉଦିଆ ବାଉଶ ଠେଇଁ ବିଜେ କରିଛନ୍ତି । ଯେତେହେଲେ ଗାଁ ଠାକୁରାଣୀ, ତାଙ୍କୁ ବେଶି ଖାତିର । ସମସ୍ତେ କାମ ଦାମ ଛାଡ଼ି ଧାଇଁଲେ ତାଙ୍କ ପାଖକୁ । ଗହଳି ଗହଳି ଥାନଟି ଲୋକାରଣ୍ୟ ହୋଇଗଲା । ଠାକୁରାଣୀଙ୍କ ସେବକ ବେହୁଆ ମାଳୁ କାଳଶୀଙ୍କ ପାଖକୁ ଯାଇ ଅତି ନମ୍ରତାର ସହ ପଚାରିଲା "ମା ! କଅଣ କହୁଛ ?" କାଳଶୀ ଏକାବେଳେକେ ମାରନ୍ତି କି ମରନ୍ତି । ଖୁଣି ହୋଇ ପାଟିକଲେ—"ହଇରେ ମୋତେ ଅବଜ୍ଞା କଲ । ମୋତେ ଭୁଲିଗଲ । ଆଜଯାଏ ଏ ଗାଁକୁ କେତେ ବିପଦ କେତେ ଧାଉଡ଼ୁ ରଖିଲି । ସତରେ ସମସ୍ତେ ଶୁଣ । ମୁଁ ସତ ଯାଗା ବେଡ ଧରି ଗାଁଯାକ ବୁଲି ପହରା ଦିଏ । କାନ୍ତାମା, ପେଡମା, ରୁଦମା, ଭଦମା ଆଦି ଯେତେ ପିଶାଚୁଣୀ ଅଛନ୍ତି ସମସ୍ତଙ୍କୁ ମୁଁ ଅଟକେଇ ରଖିଛି ।

ନ ହେଲେ ଏତେବେଳକୁ ଗାଁ ସାରା ସେମାନେ ଘୃଣି ହଅନ୍ତେଣି । ଏ ଉପକାରର ଫଳ କଅଣ ଏଇଆ । ଗୋଟାଏ ବାହାର ଭୂତଆଣୀ କଥାରେ ପଡ଼ି ସମସ୍ତେ ଅଦିନ ରଜ ପାଳିବାକୁ ଯାଉଛ । ମୋ ଇଲାକାରେ ସେ ବଳେ ପଣି ମଙ୍ଗଳବାର କରିବ, ଆଉ ତେମେ ସଭିଏଁ ତାକୁ ସାହାଯ୍ୟ କରିବ । ମୁଁ କଅଣ ମରିଗଲିଣିକିରେ । ତା କଥା ମାନି, କିଏ ପୋଡ଼ପିଠା କରିବ ମୁଁ ଦେଖିବି । ଯିଏ ପିଠା କରିବ ତା ବଡ଼ ପୁଅକୁ ମୁଁ ଗ୍ରେବେଇ ଖାଇବି । ଏ ଗାଁରେ ଯଦି ମୋତେ ଅମାନ୍ୟ କରି ଅଦିନ ରଜ ପାଳିବ ତେବେ ଏ ଗାଁଟାକୁ ପୋଛି ଦେଇ ଏଠୁ ଚାଲିଯିବି ।

ଲୋକଙ୍କ ବିକଳ ଆଉ ଦେଖେ କିଏ । ବେକରେ ପାଳ ଦଉଡ଼ି ପକେଇ ଲମ୍ବ ଲମ୍ବ ପଡ଼ିଗଲେ । ଅପରାଧୀ ଦୋଷ ସ୍ୱୀକାର କଲାପରି କାତର ପ୍ରାର୍ଥନା କରିବାକୁ ଲାଗିଲେ—"ମା । ଆମ ଅପରାଧ କ୍ଷମା କର । ଆମେ ନ ଜାଣି ପରକଥାରେ ପଡ଼ି ଅଦିନ ରଜ ପାଳିବାକୁ ଯାଉଥିଲୁ । ତୁମେ ଯଦି ଭଲ ନ ପାଇବ ଆମେ କାହିଁକି କରିବୁ । ତୁମେ ଆମର ରକ୍ଷାକର୍ତ୍ତା । ଆମେ ଆଉ କଥା ଆଉ ଶୁଣିବୁନି । ଏଥର ଥରକ କ୍ଷମା ଦିଅ ମା ! ଆମେ ତୋର ଶରଣ ପଶିଲୁ । ଆମମାନଙ୍କୁ ରଖ ।"

ଧରମ ପେଟୁ ଦଳ ସେତେବେଳକୁ ରାଗରେ ପାଚି ଲାଲ ହୋଇଗଲେଣି । ଗନ୍ଧିଆ ଗୋବରାକୁ ଫୁସ୍ ଫୁସ୍ କରି କହିଲା—"କହୁ ଥିବାକ ଶଳାଟା ଅସଲ ଠକ, ମିଛଟାରେ ସେମିତି ହାଉଛି ।" ଗୋବରା ଦାବି ଦେଇ କହିଲା—"ନାହିଁବେ ଯାହା ହେବାର ହେଲାଣି, ଚୁପ୍ ରହିବା ଭଲ । ନ ହେଲେ ଲୋକେ ଆମକୁ ବି ଠକ ବୋଲି ଜାଣି ଯାହା ତାହା କହିବେ । ଓଃ, କି ମଉକାଟା ହାତରୁ ଖସିଗଲା !



# ମଉସୁମୀ ବେଉସା

ବାଞ୍ଛାସାହୁ, ବଗାଙ୍କ ଭଳି ଗୁହ୍ନିଁରହିଥିବା ଘୁଅଟା ଉପରକୁ ଖିଙ୍କାରି ହୋଇ ଉଠି କହିଲା— "କେମିତିଆ ଗୋବା ଛୁଆଟାରେ। ମୋ ଛୁଆ ହୋଇଥିଲେ ଉପରକୁ ଗୁହ୍ନିଁ ବସିଥାଆନ୍ତି ନା ? କୋଉ ଖୋବା ଗୋଷ୍ଠିଆର ଛୁଆ କେଜାଣି । ଖାଲି ଉପରକୁ ଗୁହ୍ନିଁଥା ଉଡାଜାହାଜରୁ କିଏ ସୁନାମୁଣ୍ଡା ଗଳେଇ ପକେଇବ ତୁ ତାକୁ ନେଇ ବଡ଼ ବେପାରି ବନିଯିବୁ । ହଇରେ, ଠକେଇ ପଇସାରେ କେଇଦିନ ବେପାର କରିବୁ ? ଲୋକଙ୍କ ଆଖିରେ କେତେଦିନ ଧୂଳି ପକାଇବୁ ? ଚୋରମାଲ ମିଳିଲେ ବେପାର କରିବୁ, ନ ମିଳିଲେ ଉପରକୁ ହାଁ-କରି ଗୁହ୍ନିଁଥିବୁ । ଆରେ ବୋକଡ଼, ଏସବୁ ବେପାର କଂଗ୍ରେସିଆଙ୍କୁ ପାଏ । ଡ଼ାକୁଗୁଡାଙ୍କ ହାତରେ କ୍ଷମତା ପଡ଼ିଛି, ତେଣୁ ଅଳପେଇସା ଦିହାତିଆ ଖଜଣାଖାନା ଲୁଟୁଛନ୍ତି । ଅମୁକ ଇଣ୍ଡ୍ରଷ୍ଟ୍ରି, ଫଲଣା ଏଜେନ୍ସି ଗୋଟାକୁ ଗୋଟା ଚଢ଼ି ପକଉଛନ୍ତି । ବେଶ୍ ପଟିମାରି ଖାଉଛନ୍ତି । ସେ ବେନ୍ଦିଆଙ୍କୁ ସେଗୁଡ଼ାକ ପୋଷାଏ । ହାତରେ ଫଟା ପାହୁଲାଏ ନ ଥିଲା । ମନ୍ତ୍ରୀ ହୋଇ କୋଠାପରେ କୋଠା ପିଟିଲେ । ବେଉସା କଲେ । ଲୋକଙ୍କ ଆଖି ଖୋଲିଗଲେ—ପୁଣି ଯୋଉ ଫକଡ଼ରାମକୁ ସେଇ ଫକଡ଼ରାମ । ଲାଜ ମୁହଁରୁ ପୋଛି ହୋଇଯିବ । ସେଗୁଡ଼ାକ ସେମାନଙ୍କୁ ପୋଷାଏ । ଖାଣ୍ଟି ବେପାରୀ ପିଲା ହେଲେ ସାଙ୍ଗେ ସାଙ୍ଗେ ଦଉଡ଼ିରେ ଲଟକି ପଡ଼ବ । ଆରେ

ଭଗବାନ ଦୁଇଟା ହାତ ଗୋଟାଏ ମଗଜ ଆଉ ଗୋଟାଏ କଲିଜା ଦେଇଛନ୍ତି । ତାକୁଇ ଖଟେଇଲେ ତ ଖାଇବାକୁ ପେଟ ନାହିଁ, ଭୁଛାଟାରେ କାହିଁକି ନେଣ୍ଡଗ କାମରେ ପଶୁଛୁ ? ଆରେ ତୁ ତାଙ୍କ ପଛେ ଗୋଡ଼ାଉଛୁ କାହିଁକି ? ଲୋକେ ଗୃହଲଖ ହେଲେ ତାଙ୍କ ଦେଶସେବା ବେଉସାରେ ନାଲବତି ଜଳିବ । ତୁ କଅଣ କରିବୁ ! ସେମାନେ ଇଆଡୁ ଯାହାହବୁ ସଞ୍ଚୁଛନ୍ତି ସେଥିରେ ଦିନାକେତେ ଚଳିଯିବେ । ତୁ ବଣଭୁଆ ଓଧଙ୍କ ସଙ୍ଗେ ବାଇ ହେଉଛୁ, କ'ଣ କରିବୁଟି କହିଲୁ ? ମୋ ଛୁଆ ହୋଇଥିନେ ତୁ ବେପାର ବଖତରେ ଉପରକୁ ଗୃହିଁ ବସନ୍ତୁ । ଛି ! ଛି !

!! ଏତେବେଳୁଡ଼ାଏ ଖୋଁଚାପ୍ତ ଜନ୍ଧନକୁ ବାଞ୍ଛାପୁଅ ହଜମ କରି ପାରିଲା ନାହିଁ । ସେ ପ୍ରତିବାଦ କରିକରି ଉଠିଲା—"ମୁଁ ଆଉ କ'ଣ କରିଥାଆନ୍ତି ଯେ, ଭୋଟ ବେଳ ଲାଗି କଂଗ୍ରେସିଆ ଏ ଘର ହୁସିଆର ହୋଇଗଲେଣି । ଭୋଟ ଶେଷ ଯାଏ ଆଉ କଳାଟପାଚେଇ, କଳାବଜାର, ଘୁସ୍‌ନିଆ ବନ୍ଦ କରି ଦେଇଛନ୍ତି, ତାଙ୍କ ପାଇଁ ସିନା ମୁଁ ଦି ପଇସା ଭିଆଉ ଥିଲି । ଡାକୁଅ ଲାଗି ସିନା କଳସରି ପାଣି ପାଉଥିଲା । ଡାକୁଅ ପାଇଁ ତ ଏବେ ପାଣି ନାହିଁ; ମୋ କଥା ପଗୃରେ କିଏ ? ମୋତେ ବ ସେମାନେ ଭରସା ଦେଇ କହିଛନ୍ତି ଯେ ଭୋଟ ପରେ ସେମାନେ ଆସିଲେ ପୁଣି କାରବାର ଆରମ୍ଭ କରିବେ । ଯେତେବେଳେ ମୋର ବେପାର ପୁଣି ଆରମ୍ଭ ହେବ । ଏତକ ସମୟ ବସିବା ଛଡ଼ା ଆଉ ମୁଁ କ'ଣ କରିବି । ମୋତେ ତ ଆଉ କିଛି ବୁଦ୍ଧି ପଶୁନି ନାହିଁ ।"

ବାଞ୍ଛାସାହୁ ପୁଣି ଖିଙ୍କାରି ହୋଇ ଉଠି କହିଲା—"ସେଇଥି ଲାଗି ତ କହୁଛି ତୁଟା ମୋ ଛୁଆ ନୋହୁ, ଆଉ କାହା ଛୁଆ ହୋଇଥିବୁ । ଏକ୍ଷଣି ସେମାନେ ଦେଶସେବା ବେଉସା ବନ୍ଦ କରି ଦେଲେ ଲୁଟ୍‌ପାଟ କରି ଯେଉଁ ଟଙ୍କା ଜମେଇଛନ୍ତି ସେଥିରେ ଚଳିଯିବେ । ତୁ ଚଳିବୁ କେମିତି ବତା ? ପବନ ପିଇ ବଞ୍ଚିବୁ ?"

ବାଞ୍ଛାପୁଅ ବଦ୍ରୋହୀ ଢ଼ଙ୍ଗରେ କହିଲା—"କଅଣ କରିବି କହୁନ । ମୋତେ ତ କିଛି ବୁଦ୍ଧି ଦିଶୁନ ! ମୋଟା ବେପାରୀଙ୍କଠୁଁ ତ ସେମାନେ ମୋଟା ଟଙ୍କା ନେଇ ତା'ର ଗୃରିଗୁଣ ଲାଭ ଉଠେଇବାକୁ ବାଟ ଛାଡ଼ିଦେଲେ । ମୋଟା ବେପାରୀ ତ ଘର ବଢ଼େଇବାକୁ ଜିନିଷ ପତର

ଲୁଚେଇ ଦେଲେ । କଳାପୋତା ଜିନିଷ ସବୁ ତ ଉଭାନ ହୋଇଗଲା । କୋଉ ଜିନିଷଟା ମିଳିଲା ଯେ ମୁଁ ବେପାର କରିଥାନ୍ତି । କାଦୁଅ ପାଣି ଥିଲେ ସିନା ମୁଁ ଗଡ଼ଣା ଖେଳନ୍ତି । ଶୁଖିଲା ଧୂ-ଧୂ ବାଲିଟାରେ ଖେଳିବ କିଏ ? କଅଣ ବୁଦ୍ଧି ଅଛି ସଦ୍ଦ ବତାଅ; ନାହିଁ ତ ଚୁପ୍ ହୋଇ ଆଉ ମାସେ ରହିଯାଅ । ସବୁବେଳେ କଟର କଟର ହେବତ ଘର ଛାଡ଼ି ପଳେଇବ ।”

ବାଞ୍ଛା ଦେଖିଲା ଆଉ ଗାଳିକଲେ ଚଳିବ ନାହିଁ । ଆଉକୁ ଟିକେ ଆଉଁସା ଦରକାର । ଟିକିଏ ନରମ ଗଳାରେ ଆରମ୍ଭ କଲା—“ବୁଦ୍ଧି ନ ପଇଠୁଛି ତ ଏମିତି ପଗ୍ଗର, ମୁଁ ବତେଇବାକୁ କ’ଣ ନାହିଁ କରୁଛି । ଆଗୁ ତୁ ତ ଜାଣୁ, ସବୁ ବେପାରର ଗୋଟାଏ ଗୋଟାଏ ମଉସମ ଅଛି । ଯୋଉ ମଉସମକୁ ଯୋଉ ବେପାର ! ଯୋଉ ଜିନିଷଟାର ଚାହିଦା ଯେତେବେଳେ ବେଶି ଠିକ୍ ସେତିକି ବେଳେ ସେଇ ବେପାରଟା ସୁରୁ କରିଦେବ ।”

“ହୁଁ”—

“ମଉସମର ଟିକିଏ ପୂର୍ବରୁ ସେ ଜିନିଷଗୁଡ଼ାକ ଜୁଟ୍‌ପାଟ୍‌କରି ରଖିଦେବା ଦରକାର ।”

“ହଁ—ଏତକ କଅଣ ମୁଁ ଜାଣିନି । ଜୁଟ୍‌ପାଟ୍ କରିବାକୁ ମାଲ କାହିଁ ? ମୁଁ ଏତକ କ’ଣ ଧୂର୍ତ୍ତି ନାହିଁ”—

“ଆରେ ଥୟ ଧର, କହୁଛି ଲୋକଙ୍କପାଇଁ ଖାଲି କଅଣ ଚାଉଳ, ଗହମ, ଡାଲି, ଦରକାର ? ଆଉ କିଛି ଦରକାର ନାହିଁ ”?

“ଅଛି ଯେ, ହେଲେ ବେପାର କରିହେଲା ପରି ଚିଜ୍ କଅଣ ଅଛି” ?

“ଅଛି, ଅଛି, ବତଉଛି, ଥୟଧର, ତୁ’ତ ଜାଣୁ ଏଇଟା ଭୋଟ୍ ମଉସମ” ?

“ହୁଁ”—

“ଲୋକେ କାହା ଉପରେ ବେଶି ଚଗିଉଛନ୍ତି ?”

“କଂଗ୍ରେସିଆଙ୍କ ଉପରେ । ଶଳେ ପାଞ୍ଚ ଆଙ୍ଗୁଠି ଯାକ ପାଟିରେ ପୁରେଇ ଦେଲେ, ଲୋକେ ଚଗିଉନ୍ତେ ନାହିଁ ତ ଆଉ କ’ଣ କରନ୍ତେ ?”

"ତେବେ କାହା ଉପରେ ଲୋକେ ବେଶି ନଜର ଦେବେ ?"

"ହଁ ସେହି ଦଗଲ୍‌ବାଜ୍ କଂଗ୍ରେସିଆଙ୍କ ଉପରେ ।"

"ତେବେ କଂଗ୍ରେସିଆଙ୍କ ପାଇଁ ଯାହା ଯାହା ଦରକାର ସେଗୁଡ଼ାକ ଆଗରୁ ଜୁଟ୍‌ପାଟ୍ କରାଇ ନେ ।"

"ହଉବୋଲ, ସେ ସବୁଗିଳାଙ୍କ ପାଇଁ ମଦ, ମାଛ, ମାଛ, ମାଂସ, ମୁରଗୀ ଡ଼ିମ୍ବ ସବୁ କିଛି ଦରକାର, ହେଲେ ସେ ଗୁଡ଼ାକ ପାଇବ କୁଆଡ଼ୁ ?

"ହେଉ ଓଲୁ ! ସେମାନେ ସିନା ଏ ଗୁଡ଼ାକ ଖୁହାନ୍ତି, ହେଲେ ଲୋକେ ତାଙ୍କୁ ଦେବେ କଅଣ ?"

"କଅଣ ?"

"ଯାହା ଯାହା ଦରକାର ପଡ଼ିବ ଓ ତାକୁ କେଉଁଠୁ କେମିତି ଯୋଗାଡ଼ କରିବୁ ତାହା ବତାଇ ଦେଉଛି, ମନେ ରଖିନେ । ଆଜ ଆଜଠୁଁ ଯୋଗାଡ଼ରେ ଲାଗିଯା ।"

"ହଁ"...

"ହ, ଗୁରୁଟା ମୋଟା ପିଲା ଯୋଗାଡ଼ କରନେ, ତା'ଙ୍କୁ ଦଶ ପଇସି ଗୋଟାଏ ଲେଖାଏଁ ଧରେଇଦେ, ଆଉ ସହର ତମାମ୍ ଖେଦେଇ ଦେ । ଫି ଘର ବୁଲି ସେମାନେ ଯେମିତି ଖଣ୍ଡିଆ ଛୁଣ୍ଡା ଚଟି, ଯୋତା ଆଉ ଗୁଞ୍ଜୁଣି ମୂଠା ଯୋଗାଡ଼ କରିବେ । ବେଶୀ ନୁହେଁ, ଶହେଟା ଖଣ୍ଡିଆ ଯୋତା ବା ଚପଲପାଇଁ ପଚିଶ ପଇସା ଆଉ ଗୁଞ୍ଜୁଣିପାଇଁ ପଚଶି ପଇସା ଧରେଇ ଦେବୁ । ଛତା ମରାମତି ବାଲାଙ୍କଠୁଁ ଛୁଣ୍ଡା କଳା କନାତକ ଯୋଗାଡ଼ କରିବୁ । ନ ଅଣ୍ଟିଲେ ବାଣୀ ବିହାର ତପସ୍ୱିଙ୍କୁ ହାତ କରି ଛୁଣ୍ଡା ଆଉ ଚିରା ଗାଉନ୍ ତକ ନେଇ ଆସିବୁ । ଗୋଟାଏ ମେହେନ୍ତରଙ୍କୁ କହିଲେ ସେ ଗୋବର, ଗୁହ ହାଣ୍ଡିରେ ଗୋଳେଇ ରଖିଦେବ । ଭଙ୍ଗାହାଣ୍ଡି, ଖପରକାତି ସବୁ ମଶାଣି ଚଣ୍ଡୀରୁ ଯୋଗାଡ଼ କରିବା ଦରକାର ନାହିଁ । ସେଗୁଡ଼ାକ ସବୁ ରାସ୍ତା କଡ଼ରେ ଗଦା ହୋଇଛି । କଂଗ୍ରେସିଆଏ ନିର୍ବାଚନପାଇଁ ରାସ୍ତା ମରାମତି କରୁଛନ୍ତି ବୋଲି ଦେଖାଇବାକୁ ରାସ୍ତା କଡ଼ରେ ଗୋଟି ଗଦେଇ ଦେଇଛନ୍ତି ।

ନିର୍ବାଚନ ପରେ ଦଙ୍ଗଲ୍‌ବାଜ୍‌ଗୁଡ଼ାକ ପୁଣି ସବୁ ଉଠେଇ ନେଇଯିବେ । ଲୋକଙ୍କୁ ଠକିବା ହେଲା ତାଙ୍କର ବେଉସା । ଏ ଗୁଡ଼ାକ ଚଟାପଟ୍ ଯୋଗାଡ଼ କରିନେଇ ଆମ ବାଡ଼ ଆଡ଼େ ଗଦେଇ ରଖିଦେ । ଭୋଟ ବେଳେ କଂଗ୍ରେସିଆଙ୍କ ପାଇଁ ଏ ଗୁଡ଼ା ବହୁତ ଦରକାର ପଡ଼ିବ । ଖବର କାଗଜରୁ ତ ଆମେ ସବୁ ଶୁଣୁଚୁ ଆଉ ଆଉ ମୁଲକରେ ଏଇସବୁ ଜିନିଷ କଂଗ୍ରେସିଆଙ୍କ ପାଇଁ ବହୁ ଖର୍ଚ୍ଚ ହେଉଛି । ଆମ ମୁଲକରେ ତ ସବୁଠୁଁ ବେଶୀ ଖର୍ଚ୍ଚ ହେବ । ଜିନିଷ ନ ପାଇଲେ ଲୋକେ ପଇସାଏ ଜାଗାରେ ଦଶ ପଇସା ଦେଇ ଖରିଦ କରିନେବେ । ଯା•••ଆଉ ହାଁ କରି ଚାହାଁନା । ଚଞ୍ଚଳ କାମରେ ଲାଗିଯା ।



# ଲୁହାକ ପାଣି

ମେସ୍ ମ୍ୟାନେଜର ସୁଦର୍ଶନ, ସୁରକୁ ଧାପ୍ ସାପ୍ ଶୁଣେଇ ଦେଲା—"ଦେଖ, ତୋ ଉପରେ ମୁଁସ ଗଲା ମାସ ବାକି, ତା ଉପରେ ଏ ମାସ ଆସି ପନ୍ଦର ତାରିଖ ଡେଇଁଲା । ହଁ ଦଉଛୁ, ହେଇ ଦଉଛୁ, କହି ଆଜଯାଏ ଧରିଚୁଆଁ ଦେଲୁନ, ଆଜି ବାକିଆ ତକ ନ ଛୁଡ଼େଇଲେ ମିଲ୍ ବନ୍ଦ ।

ସୁର ଥକା ହୋଇ ବସିଗଲା । ପହିଲେ ତା ମୁହଁରୁ କଥା ବାହାରିଲା ନାହିଁ । ଅତି ନଉନ ଓ କରୁଣ ଭାବରେ କହିଲା—"ହଇରେ, ମୋତେ ପ୍ରାଣରେ ମାରିଦେବୁ, ମୋ ମିଲ ବନ୍ଦ କରିଦେବାକୁ ତୋ ହାତ ଯିବ, ଖାଇବି କଅଣ ?"

"ଚଳାଖା ପାଉଁଶ ଖା, ତୋ ମିଲ୍ ବନ୍ଦ କରିବନ ତ; କିଛିଦିନ ପରେ ସମସ୍ତଙ୍କ ମିଲ୍ ଗ୍ରୁଏଁ ଗ୍ରୁଏଁ ବନ୍ଦ ହୋଇଯିବ । ଜଣକଲାଗି ପନ୍ଦର ଜଣ ମରିବେ । ମିଲ୍ ବନ୍ଦକୁ ଯଦି ଏତେ ଡର, ଚୁପ୍ ଚାପ୍ ବାକି ଟଙ୍କାତକ ଦେଇଦେ । ସିଗାରେଟ୍ ସିନେମା ବେଳକୁ ଟଙ୍କା ଫସ୍ ଫାସ୍ ବାହାରୁଚ ଗେର୍ଫେଲା ବେଳକୁ ଟଙ୍କା ଯାଉଛି କୁଆଡ଼େ ? ଧରମ ପେଟ୍, ତିନଟା ମଣିଷର ଖୋରାକ ଏକୁଟିଆ ଖତମ୍ କରିବୁ, ଟଙ୍କା ନାଁ ଧରିଲା ବେଳକୁ ଜୀବନ ଗୁଡ଼ ଯାଉଛି । ଗଲା ମାସର ବାକିଆ ବତିଶି ଟଙ୍କା ଆଜି ଦବୁ ତ ମିଲ ପଡ଼ିବ, ନହେଲେ ନାହିଁ ।"

"ବତିଶି ଟଙ୍କା ମୁଁ ଏବ୍ଷଣି ପାଇବ କୁଆଡୁ ? ଦୁଇ ମାସର ଦରମା ପାଇନ । ମେସ୍‌ର ବାକି ଗୋଟାଏ ମାସର । ଏଥର ଟଙ୍କା ପାଇଲେ ବାକିଆ ସବୁ ଛୁଣ୍ଡେଇ ଦେଇ ଆଗିଲା ବ କିଛୁ ଦେଇ ଦେବ ।"

"ରଖ ରଖ ତୋ ଆଗିଲା । ହଇରେ, ଦୁ ମାସର ଦରମା ପାଇନୁ, ହରଦମ୍ ସିନେମା ଦେଖା ହେଉଛି କେମିତି ? ସହରର ଗୃହଟାଯାକ ସିନେମାରେ ଗୋଟାଏ ହେଲେ ଛବି ତ ବାଦ ଯାଉନି ! ସେଗୁଡ଼ାକ କଅଣ କାଳି ବାକିରେ ଦେଖୁଛୁ ! ସିଗାରେଟ୍ ଦାନକୁ ଦୁ ପ୍ୟାକେଟ୍ ଟଣା ହେଉଛି କପର ?"

"ଭାଇ ଟିକିଏ—"

"ଟିକିଏ ଫିକିଏ ମୁଁ କିଛି ଶୁଣିବିନି । ଆଜି ଟଙ୍କା ନ ଦେଲେ ମିଲ୍ ବନ୍ଦ । ଗୋଟିଏ କଥାରୁ ଦୁ କଥା ହେବନି ।"

"ଜଣେ ଉପାସରେ ଘୁଙ୍ଗା ବସିଥିବ, ଆଉ ସମସ୍ତେ ପାଟି ଚଲଉଥିବେ, ତୁମ ସମସ୍ତଙ୍କୁ ଭଲ ଲାଗବଟି !"

"ଆମେ ସମସ୍ତେତ ସିଗାରେଟ୍ ନ ଖାଇ ସିନେମା ନଯାଇ ରହିଥିଲୁ, ତୋତେ ଏଗୁଡ଼ାକ କେମିତି ଲାଗିଲାସ ?"

"ତୁ ଯଦି ଏକ ଜିଦ୍ ଧରିବୁ, ମୁଁ ନାଗୁର, ତୋର ହାତରେ ଯଦି ଭୋକରେ ମରିବାର ଥିବ, ତେବେ ମରିବ ।"

ସୁରଉ ନରମ ଓ କରୁଣ କଥା ଶୁଣି ସୁଦର୍ଶନର ମନ ଟିକିଏ ନରମିଗଲା । ଟିକିଏ କଅଁଳେଇ ସେ କହିଲା—"ବତିଶି ଟଙ୍କା ନାହିଁ ତ କିଛି ହେଲେ ଦେ ।"

"ହଇ, ବାନ୍ଧି ବାଡ଼େଇଲେ ବ ଫଟା ପଇସାଟାଏ ବାହାରିବନି ।"

"ଫେର୍ ମିଛ କହୁଛୁ !"

"ଓହୋ ! ହଁ, ସେ ଦୁଇଟା ଟଙ୍କା କଥା କହୁଛୁ ? ଆଚ୍ଛା ହଉ, ସେ ଦୁଇଟା କାଢ଼ିକି, ମୁଁ ଯାଉଛି ଏଇକ୍ଷଣି ବଜାରକୁ । ଫେରିଲା ବେଳକୁ ଜଣକଠାରୁ କୋଡ଼ିଏ ଟଙ୍କା ପାଇବ । ଏକାବେଳେକେ ବାଇଶି ଟଙ୍କା ଦେଇଦେବ ।"

ସୁଦର୍ଶନ ଏପରି ଥାଙ୍କବଆ କଥା. ଆଗରୁ ଢେର ଢେର ଥର ଶୁଣିଛି । ତେଣୁ ତାର ଆଉ ଅଧିକା ଶୁଣିବାକୁ ଇଚ୍ଛା ନଥିଲା । ସେ ସେଇ ଦୁଇଟି ଟଙ୍କା ଦେଇ ଦେବାକୁ ଜିଗର କଲା । ସୁର କିନ୍ତୁ ହାତ, ଓଠ ଧରି ଆଖିରେ ଲୁହ ଜକେଇ ସେଥିରୁ ଖସି ଗଲା । ଗଲାବେଳେ କହିଗଲା—"ହେଇ ଦେଖ୍ ଭାଇ, ୫ଟା ବାଜିଲା, ସାଢ଼େ ପାଞ୍ଚଟା ବେଳକୁ ଫେରି ଆସି ଟଙ୍କା ଦେବି । ସୁଦର୍ଶନ ଚୁପ୍ ରହିଲା ।

ନସର ପସର ହୋଇ ପ୍ରଭାତ ସିନେମା ଆଡ଼େ ମାଡ଼ି ଯାଇଥିବା ବେଳେ ସୁର ମନେ ମନେ ଭାବୁଥାଏ—"ଅଲକ୍ଷଣାଟା ଆଜି ଯାଉଥିଲା ତ ! ତା'ଚଲା ଆଖି ଦଟା କେମିତି ସେ ଦୁ'ଟା ଟଙ୍କା ଉପରେ ପଡ଼ିଗଲା 'ଆମ୍ବା ତୁଫାନ'ଫିଲ୍ମଟା ଆଜି ଜାଣ ହରେଇଥିଲି । ପେଟ ଭୋକକୁ ସିନା ପାଣି ଗିଲିସକରେ ମାରିଦେବି; କିନ୍ତୁ ଫିଲ୍ମ ଭୋକ କ ସହଜରେ ମାରିହୁଏ ! ଆଗ ଫିଲ୍ମ, ପଛେ ମିଲ୍ ବଗୁର ।"

ଏମିତି କଳ୍ପନା ଜଳ୍ପନା କରି ପ୍ରଭାତ ସିନେମାରେ ପହଞ୍ଚି ଦେଖେ ତ ଆଉ ଟିକେଟ୍ ନାହିଁ । ମନେ ମନେ ସୁଦର୍ଶନର ସାତ ପୁରୁଷଙ୍କ ଉଦ୍ଦେଶ୍ୟରେ ଗାଳି ବର୍ଷଣ କରି ଲାଗିଲା । ଭାବୁଥାଏ— "ଅଲକ୍ଷଣା, ଛତରଖିଆଟା ଢେରି କରି ଦେଲାରୁ ସିନା ଏ ଅବସ୍ଥା ହେଲା । ଶଳାଟା ନର୍କକୁ ଯା ।"

ସବୁ କ୍ଲାସ୍‌ର ଟିକଟ ବନ୍ଦ । ମନଟା ତାର ଖାଲି ଗମ୍ଭୀର ହୋଇ ଯାଉଥାଏ । ପାଗଳା କୁକୁରଙ୍କ ପରି ସେ ଖାଲି ଏପାଖ ସେ ପାଖ ଧାଉଁ ଥାଏ । ଗୁରିଆଡ଼ ତାକୁ ବଟକଟିଆ ଅନ୍ଧାରୁଆ ଜଣା ଯାଉଥାଏ । ଗୁଣ୍ଡଟା ଯେମିତି ଫାଟି ପଡ଼ୁଥାଏ । ଭଗ୍ନମନ ଓ ହୃଦୟରେ ଚଳେ ଲଥୁକରି ବସି ପଡ଼ିବାକୁ ଯାଉଛି, ଠିକ୍ ଏତିକିବେଳେ ତାକୁ ଗୁରିଆଡ଼ ହଠାତ୍ ଆଲୋକମୟ ଦେଖାଗଲା । ତାକୁ ଜଣାଗଲା ଯେମିତି ଏକ ସ୍ୱର୍ଗର ପରୀ ତାର ଦୁଃଖରେ ବ୍ୟଥିତ ହୋଇ ଓହ୍ଲାଇ ଆସିଛି । ମନ ତାର କୁଳୁକି ଉଠିଲା । ଆନନ୍ଦର ହାବୁକା ଭିତରୁ ମୁଣ୍ଡ ଟେକି ସେ ଗୁହିଁଲା । ତା ଆଖିରେ ଯୋଡ଼ାଏ ମହମ ଦିଆ ନଶ ପଡ଼ିଲା । "ଓହୋ, ଇଏ ତେବେ ପରୀ ନୁହେଁ, ଏ ହେଉଛି ଜଣେ ଦେବଦୂତ ।" ନଶୁଆ ଦେବଦୂତଟି ମୁକୁନ୍ଦହସା ଦେଇ ପଚାରିଲା—"ବାବୁ ଟିକଟ୍ ଲବ ?"

"ଏଁ, ଏଁ, କଅଣ କହିଲ, କଅଣ କହିଲ ?"

"ଆଃ, ଟିକଟକ ଜରୁରତ୍ ଅଛି ?"

"ଏଁ, ଏଁ, ପଚାରୁଛ ? ଓହୋ, ଭଗବାନ ମୋ ଦୁଃଖ ଜାଣିଲେ । ଦିଅ, ଦିଅ, ଟିକଟଟା ମୋତେ ଦେଇ ପକାଅ ତ, ମୁଁ ଆଗ ତାକୁ ପକେଟରେ ପୁରାଇ ଦିଏ, ମୋ ପ୍ରାଣ ଟିକିଏ ଶୀତଳ ହୋଇଯାଉ !"

"କେଉଁଟା ଲବ ବାବୁ ?"

"ଏଁ କେଉଁଟା ? ସବୁ କ୍ଲାସର ଟିକଟ ତ ସରି ଯାଇଛି ବୋଲି ବୋର୍ଡ଼ରେ ଲେଖା ହୋଇଛି—"

"ଆରେ ତମେ ଲବ ତ ନିଅ, ବକର ବକର ହେଉଛ କାହିଁକି ?"

"ହିଁ, ହିଁ, ଦିଅ, ଗୋଟାଏ ଦିଅ ।"

"ହ ଟଙ୍କିଆ ଟିକଟ ଅଛି ।"

"କମ୍‌ରେ ନାହିଁ ?"

"ନା" ।

ସୁରର ମୁଣ୍ଡ ବୁଲେଇ ଦେଲା । ଭାବିଥିଲା—ସତର ଅଣାରେ ଟିକଟଟାଏ କରି ବାକି ପଦର ଅଣାରେ ଜଳଖିଆ ଓ ସିଗାରେଟ୍‌ଟା ଚଳେଇ ଦେଇ ଥାଆନ୍ତା । ବିଶେଷ କରି ମେସ୍‌ରେ ମିଲ୍ ପଡ଼ିବ କି ନାହିଁ ତାର କିଛି ସ୍ଥିରତା ନାହିଁ । ସବୁ ଯୋଜନା କିନ୍ତୁ ଓଲଟ ପାଲଟ ହୋଇଗଲା ଯେ ।

"ଆରେ ଭାବୁଛ କଅଣ ଆଉ ଟିକକରେ ସେତକ ବି ମିଳିବନି । ପଛକୁ ଆଲ୍ଲା, ବିସମିଲ୍ଲା ଭଜୁଥିବ ।"

ସୁରର ହୋସ୍ ପଶିଲା । କଥାଗୁଡ଼ାକ ନିଘଟ ସତ୍ୟ ପରି ତାକୁ ଜଣାଗଲା । ତରତର ହୋଇ ଦୁଇଟାଯାକ ଟଙ୍କା ପକେଇ ଦେଇ ଟିକଟଟା ତା ହାତରୁ ଝାମ୍ପି ନେଇ ଦେଖେ ତ, ଟଙ୍କେ ଛଅ ପଇସାର ଟିକଟ । ଆଶ୍ଚର୍ଯ୍ୟ ହୋଇ କହିଲା—"ଏଁ ଏତ ଟଙ୍କେ ଛ ପଇସା, ଦୁଇ ଟଙ୍କା ନଉଛ ଯେ ?"

"ଆମେ କଣ ତମ ବାବାର ନୌକର ଯେ ତମପାଇଁ ମୋଫତ୍ ଟିକଟ ନେଇ ଆସିବୁ ।"

ବାବା ନାଁ ଶୁଣି ସୁର ଅଧିକ କଥାବାର୍ତ୍ତା କରିବାକୁ ଇଚ୍ଛା କଲେନି । ଟିକେଟଟା ଧରି ସେ ନିଜ ବାଟ କାଟିଲା ।

× × × ×

ଘରରେ ଅଚର୍ଚ୍ଚା ଝାଡ଼ା ତଲବ ଦେଖାଇଲା ବେଳେ ଭୂତ, ପ୍ରେତ, ତସ୍କର, ଲମ୍ବଲଞ୍ଜିଆ ଆଦିର ଡ଼ର କୁଆଡ଼େ ଛୁଡ଼ ପଳାଏ । ଶୌଚ ନିସ୍ତାଟା ସାରି ଦେବା ମାତ୍ରେ ଏମାନେ କେଉଁଠି ଲୁଚି ରହିଥାଆନ୍ତି, ଆସି ସଙ୍ଗେ ସଙ୍ଗେ ମୁଣ୍ଡରେ ସବାର ହୋଇଯାନ୍ତି । ସୁରକୁ ଠିକ୍ ସେମିତି ପ୍ରବଳ ସିନେମା-ତଲବ ଦେଖାଇଲା ବେଳେ ହୋଟେଲ ବା ମିଲ୍ ବନ୍ଦର ଡ଼ର ଛୁଇଁ ନଥିଲା । ସିନେମା ଯେମିତି ସରିଛି, ଏସବୁ ଡର ଗୁହ୍ମୁଁ ଗୁହ୍ମୁଁ ହୋଇ ଆସିଲା । ତାର ଗୋଟାଏ ହେମତ ଥିଲା ଯେ, ଟିକେଟରୁ ବଳିବା ପଇସାରେ ପେଟେ ଜଳଖିଆ କରି ଦେଇଯିବ । ତେଣେ ଯଦି ମିଲ୍ ବନ୍ଦ ହୋଇଥିବ, ତେବେ ମୁହଁ ଶୁଖାଇ ପାଣି ପିଇ ଶୋଇ ପଡ଼ିବ । ଏଥିରେ କେତେଜଣଙ୍କର ମଧ୍ୟ ଦୟା ବି ହୋଇପାରେ । କଲା ବଜାରିଏ କିନ୍ତୁ ସେତେକ କରାଇ ଦେଲେନି । ଠେକୁଆ ଆଉ ସାଙ୍ଗୁ ଭାବଚନ୍ଦ୍ର ସିଂହ ପାଖକୁ ଗଲାପରି ସେ ମେସ୍‌କୁ ଗଲା । ସୁଦର୍ଶନର ବିକୃତ ମୁଖ ଓ ଅନ୍ୟ କେତେ ଜଣଙ୍କ କଡ଼ାଛଡ଼ା ବ୍ୟବହାର ଦେଖି ସେ ଠିକ୍ ଧରିନେଲା ଯେ ତାର ମିଲ୍‌ଟା ନିଃସନ୍ଦେହରେ ସୁଦର୍ଶନ ଓ ଅନ୍ୟ କେତେଜଣଙ୍କ କୋପାନଳରେ ଭସ୍ମୀଭୂତ ହୋଇ ଯାଇଛି । ବିଶ୍ୱସ୍ତ ବନ୍ଧୁ ଧଡ଼ିକୁ ଏକାନ୍ତକୁ ଡାକି ନେଇ ହାଲ ହକୀକତ ପଚାରିଲା । ଧଡ଼ି ତା ପାଇଁ ବେଶି ଓକିଲାତି କରିଥିବାରୁ ତାର ମଧ୍ୟ ମିଲ୍ ବନ୍ଦ ହୋଇଛି ଶୁଣି ସେ ରାଗିଗଲା । କିନ୍ତୁ ଧଡ଼ିର ବି ମେସ୍ ଦେୟ ବାକି ଥିବାର ଜାଣି ରାଗ କମି ଆସିଲା । ସମବିପଦାପନ୍ନ ଦୁଇଟି ସାଥୀ ଏକାଠି ହେଲେ ମନ ବଳ ବଢ଼େ, ଦୁଃଖ ଭୟ କମିଯାଏ । ଧଡ଼ି ଓ ସୁରର ଦୁଃଖ କମି ଆସିଲା । ସମସ୍ତଙ୍କ ପ୍ରତି ଏକ ବେଖାତର ଭାବ ଆସିଲା । ସୁର ଧଡ଼ିକୁ ଡାକ କହିଲା—ଚାଲ ହୋଟେଲ୍‌ରେ ଖାଇ ଆସିବା—

ଧଡ଼ି ପଚାରିଲା—"ପଇସା" ?

"ସେ ଚିନ୍ତା ଖାଇ ସାରିଲେ କରିବା । ଆଗ ଚିନ୍ତା ଆଗେ ।"

"ଅଣ୍ଟାରେ ପଇସା ନରଖି ମୁଁ ହୋଟେଲକୁ ଯିବନି । ଭୁ ଯା ।"

"ଚାଲ ଚାଲ, ମୋ ପାଖରେ ପଇସା ଅଛି" କହି ସୁର, ଧଡ଼କୁ ଟାଣି ନେଇଗଲା ।

ହୋଟେଲରେ ସୁରର ଚୋଡ଼ ଦେଖି ଧଡ଼ ଭାବିଲା—ସୁର ହାତରେ ବୋଧହୁଏ ଚାଡ଼ାଏ ନୋଟ୍ ପଡ଼ ଯାଇଛି । ଏ ଚୋଡ଼ ତ ଦ ତିନ ଟଙ୍କାର ଚୋଡ଼ ନୁହେଁ ।

ଖିଆପିଆ ସରିଲା । ରୁମାଲରେ ପୁରା ସାହେବ ଠାଣିରେ ମୁହଁ ପୋଛୁ ପୋଛୁ ମ୍ୟାନେଜରକୁ ପଚାରିଲା—"କେତେ ହେଲା ।"

ମ୍ୟାନେଜର "ଛ'ଟଙ୍କା ପଚାଶ ପଇସା" କହି ସୁର ମୁହଁକୁ ଚାହିଁଲା । ସୁର ପକେଟ୍ ଭିତରେ ହାତ ଭର୍ତ୍ତି କରି ପାଟି କରି ଉଠିଲା — "ଏଁ, ମୋ ମନିବ୍ୟାଗ୍, କିଏ ନେଲା, ଏଁ ଖସି ପଡ଼ିଲାକି ?" ଅସ୍ତବ୍ୟସ୍ତ ହୋଇ ଖାଇବା ଥାଳୀକୁ ଦଉଡ଼ ଗଲା । ଟେବୁଲ୍ ତଳକୁ, କଡ଼କୁ, ଆଉ ତାକୁ ମନିବ୍ୟାଗ ଦେଖିଛନ୍ତି କି ନା ପଚାରି ପକେଇଲା । ମହା ବ୍ୟସ୍ତ ହୋଇପଡ଼ି ପୁଣି ବକି ବକେଇ ଉଠିଲା—"ଏଁ, କିଏ ପକେଟ୍ ମାରି କଲା ! ଦୁଇଶହ ପଚସ୍ତରି ଟଙ୍କା ସତର ପଇସା ସେଥିରେ ଥିଲା । ଏବେ ମୁଁ କଅଣ କରିବି ? ଓଃ, କିଏ ମୋର ଏ ସର୍ବନାଶ କଲା !"

"ଜଣେ ଦ'ଜଣ ସହାନୁଭୂତି ଦେଖାଇ ପଚାରିଲେ—ଆପଣ ଏଇଠି ହଜେଇଲେ ନା ବାହାରେ କୁଆଡ଼େ ହଜେଇଲେ ?"

"ଏଠି ବସିଲା ବେଳେ ପରା ମୁଁ ମନିବ୍ୟାଗ କାଢ଼ି ଦେଖିଛି । ଘୁଞ୍ଚ ପକେଟରେ ଥିଲା, କାଢ଼ି କଡ଼ ପକେଟରେ ରଖିଲି । ଏଇଠୁ ନିଶ୍ଚୟ କିଏ ପକେଟ ମାରି କରିଦେଲା । ଏଇଠି—"

ହୋଟେଲ ଚାକର ଜଣେ କଥାଟାକୁ ସହଜକୁ ଟାଣି ନେଇ ପଚାରିଲା—"ଆପଣ ଆସିଲାବେଳେ ତ ପକେଟରେ କିଛି ନଥିଲା ।"

ମୁଁ ପରା କଡ଼ ପକେଟରେ ରଖିଥିଲି ।

ମେନେଜର ମୁହଁ ଖୋଲି ପଚାରିଲେ—"କେତେ ଟଙ୍କା ରଖିଥିଲେ ଯେ ?"

"ଦୁଇଶହ ବାଷଠି ଟଙ୍କା ଅଠେଇଶି ପଇସା ?"

ମ୍ୟାନେଜରଟି ଉଞ୍ଚା ଗଳାରେ କହିଲା—"ହଉ ହଉ ବାବୁ ଯାହା ହେବାର ହେଲଣି—ଚୁପ୍ କରି ଛ'ଟଙ୍କା ପଚିଶ ପଇସା ପକେଇ ଦେଇ ଆପଣା ବାଟ ଦେଖ ।"

"ଏଠି ତ ମୋର ପକେଟ୍ ମାରୁ ହୋଇଗଲା, ମୁଁ ଦେବି କେମିତି ? ମୋ ନାଁ, ଠିକଣା ଲେଖିରଖ, ମୁଁ ବି ତଳିରେ ଦସ୍ତଖତ୍ କରି ଦେଉଛି । ବସାକୁ ଯାଇ ଟଙ୍କା ଆଣିଲେ ସଙ୍ଗେ ସଙ୍ଗେ ଦେଇଦେବି ।"

ମ୍ୟାନେଜର ଚଢ଼ା ଗଳାରେ କହିଲା—"ବାବୁ, ଖୁବ୍ ଭେଲକି ଦେଖେଇଲଣି, ଖୁବ୍ ଅଭିନୟ ବି ଦେଖେଇଲଣି । ଭଦ୍ରଲୋକ ହୋଇ-ଥିବ ତ ଟଙ୍କା ଥୋଇ ଦେଇ ରାସ୍ତା ଦେଖିବ । ବେଶି ଛଇ ଦେଖେଇବ ତ ପୁରା ବେଇଜତ୍ କରି ଛାଡ଼ିବନ ।"

"ଯାହା କରିବ କର, ସର୍ବସ୍ୱ ମୋର ଗଲା । ମୁଁ ବସାକୁ ଗଲେ ତ କାହାଠୁ ଧାର ଉଧାର କରି ଆଣି ଦେଇଯିବି ।"

"ଫେର୍ ଛଇ ? ଅଣ୍ଟାରେ ଜୋର ନଥିଲା ତ ହୋଟେଲ୍ ଭିତରକୁ ପଶିଲ କାହିଁକି ? ଭିକ ମାଗି ଖାଉନ ! ପାଖରେ ନାହିଁ ତ ସେ ବାବୁଙ୍କୁ ପଠେଇ ଟଙ୍କା ମଗେଇ ଆଣ ।"

ଅନ୍ୟାନ୍ୟ ଖାଇଲା ଲୋକେ ମଧ୍ୟ ପଦେ ପଦେ ଯୋଖି ଦେବାକୁ ଛାଡ଼ିଲେ ନାହିଁ । ସୁର ନିର୍ବିକାର ଭାବରେ ସବୁ ସହ୍ୟ କଲା ଓ ଧଡ଼ିକୁ ଯିବାକୁ କହିଲା । ମନ ଦୁଃଖରେ ଧଡ଼ି ଯାଇ ଚରି ପାଞ୍ଚ ଯାଗା ବୁଲି ଟଙ୍କା ଯୋଗାଡ଼ କରି ଆଣି ଦେଲା ।

× × ×

ବେଇଜତିର ହାବୁକା ଏତେ ଜୋର ଥିଲା ଯେ ସେଥିରୁ ଝାଡ଼ ଝୁଡ଼ ହୋଇ ଉଠିବାକୁ ସୁରକୁ ପୁରା ଦୁଇଦିନ ଲଗିଗଲା । ମନ ସୁସ୍ଥ ହେବା ମାତ୍ରେ ସେ ଧଡ଼ି ପାଖରେ କମ୍ୟୁନିଷ୍ଟ-ମୁଠା ଦେଖାଇ ପ୍ରତିଜ୍ଞା କଲା। ଶଳା, ନାଗ ସାପ ଲାଙ୍ଗୁଡ଼ରେ ହାତ ମାରିଛି ଏଥର, ଚୈଟ ପାଇବ । ଏହାର ବଦଳା ନନେଲେ ମୁଁ ବାପର ପୁଅ ନୁହେଁ ।

ଧଡ଼ି କହିଲା—"ଆରେ ତୁ କି ବଦଳା ନେବୁ ? ସେ ତ ଦଗାବାଜ ବଡ଼ ଗୁଣ୍ଡା, ପଇସା ଜୋର ବି ଖୁବ୍ ବେଶି । ଲୋକ ବଳ

ବ ତାର କିଛି କମ୍ ନାହିଁ । ହୋଟେଲ୍‌ରେ ତ ତାର ଦଶବାର ଜଣ ଚାକର । ତାର ତୁ କଅଣ କରିବୁ ?”

“ଦେଖିବୁ ରହ କଅଣ କରିବ ! ଦେହର ତାକତ ଠାରୁ ମନର ତାକତ ଢେର ବେଶି । ଏକା ପଟକଣରେ ତାକୁ ଆଣ୍ଠେଇ ପକାଇବ । ଖାଲି ତୁ ଟିକିଏ ମୋତେ ସାହାଯ୍ୟ କଲେ ହେଲା ।”

“ଅଃ ! ପଇସା ପତ୍ର ଛାଡ଼ ସବୁ ସାହାଯ୍ୟ ଦେବାକୁ ମୁଁ ତିଆର ।”

ସାଗଦ୍ୱୀପ ଯୋଜନାକୁ ଚିତା କାଟିଲା ଭଳି ଯୋଜନାଟା ତିଆରି କରିବାକୁ ସୁରକୁ ହପ୍ତାଏ ସମୟ ଲାଗିଲା ।

ନିର୍ଦ୍ଦିଷ୍ଟ ଦିନ ସୁର ଓ ଧଡ଼ ଗମ୍ଭୀର ଭାବରେ ସେହି ହୋଟେଲରେ ପଦାର୍ପଣ କଲେ । ପହିଲେ ମ୍ୟାନେଜର ଖୁବ୍ ଗାର୍‌ଡ଼େଇ ଗାର୍‌ଡ଼େଇ ଚାହିଁଲା । ସୁର କିନ୍ତୁ ବେଖାତିର ଭାବରେ ଧଡ଼ ସହ ଯାଇ ଖାଇବା ଥାନରେ ବସିଲା ଓ ଯୋଡ଼ାଏ ଆଇଁଶ ମିଲ୍‌ର ବରାଦ ଦେଇ ଦେଲା । ଦୁହେଁ ଲଗାଲଗି ଗୋଟାଏ କଡ଼ ପଟିଆ ହୋଇ ବସିଥିଲେ । ମିଲ୍ ଥୁଆ ହେବା ମାତ୍ରେ ଦୁହେଁ ହାତ ଚଳେଇଲେ । ମଝିରେ ମଝିରେ ସୁର ପାଟି କରୁଥାଏ “ଏଃ, ଏଗୁଡ଼ାକ ଆଜି ଏମିତି କାହିଁକି ଲାଗୁଛି ! ଉଁଃ, ତଣ୍ଟିଟା କାହିଁକି ଗତ ଗତ ହେଉଛି !” ମିଲ୍ ଅଧା ଅଧି ସରିଯିବା ପରେ ସୁର ଅତି ସନ୍ତର୍ପଣରେ ଭାତ ଓ ଡାଲିରେ ଗୋଟିଏ ପୁଡ଼ିଆରୁ ଗୁଣ୍ଡି କାଢ଼ି ଗୋଳେଇ ଦେଲା ଓ କାଗଜଟା ଧଡ଼କୁ ବଢ଼ାଇ ଦେଲା । ଧଡ଼ ପୁଡ଼ିଆ କାଗଜଟାକୁ ଅଣ୍ଟାରେ ଖୋସିଦେଲା । କିଛି ସମୟ ପରେ ସୁର ତଣ୍ଟିରେ ଅଙ୍ଗୁଠିଟା ଭର୍ତ୍ତି କରି ଦେଇ—ଅ, ଅଅ, ଅଅଅ କହି ଖାଇଲା ଥାଳି ଉପରେ ବାନ୍ତି କରି ପକେଇଲା ଓ ସେଇଠି “ମରିଗଲିରେ ମରିଗଲିରେ, ମୋ ଦେହ କାହିଁକି ଝୋଲା ମାରି ଯାଉଛିରେ, ଆରେ ମୋର କଅଣ ହେଲାରେ” ରଡ଼ି ଦେଇ ଗଡ଼ିବାକୁ ଲାଗିଲା । ଧଡ଼ ସଙ୍ଗେ ସଙ୍ଗେ ଦଉଡ଼ପୋଡ଼ ଡାକ ପରି କୁହାଟ ଛାଡ଼ିଲା—“ଆରେ ଧାଇଁ ଆସ ହୋ, ମାରି ପକେଇଲା । ଭାତରେ ଜହର ଗୋଳେଇଛି ହୋ, ଜହର ଗୋଳେଇଛି, ମାରି ପକେଇଲା ଧାଇଁ ଆସ ।” କେବଳ ପାଟିରେ ନ ଅଟକି ସେ ସେଇ ଅଇଁଠା ହାତରେ ଦଉଡ଼ିଲା ପୁଲିଶ୍ ପାଖକୁ । ଥାନଟି ଗହଳି ଚହଳି ଲୋକାରଣ୍ୟେ ହୋଇଗଲା । ହୋଟେଲ୍ ମ୍ୟାନେଜର ବରଡ଼ା

ପଚର ପର ଥିବୁଥାଏ । ତା ପାଖିରୁ କଥା ବାହାରୁ ନଥାଏ । ଟିକକ ଆଗରୁ ଟିକଏ ତରକାରୀ ପାଇଁ ଗୋଳ ଲଗେଇଥିବା ହ'ଗ୍ଲର ଜଣ ଖାଇଲାବାଲା ବେଳ ଉଣ୍ଡି ମ୍ୟାନେଜରର ବୋର୍ଡ ଉପରେ ନାଳତା ବଡ଼ା ଥୋଇଲା ପର କହୁ ଦେଉଥାନ୍ତ—"ଶୋଷା କେଉଁଠିକାର, ଛପି ଗୁପି ପଇସାଏ ଥାନରେ ଗୁଚ୍ଚ ପଇସା ନେବ, ଖାଇବା ଜନଷରେ ବିଷ ମିଶେଇବ । ସ୍ବାକୁ ଆଉ ଦୟା ମାୟା ନାହିଁ । ସିଧା ସରପଟ ପୁଲିଶ୍ ହାତରେ ଦେଇ ଦେବା ଉଚତ ।"

ଭୂହୁଁ ଭୂହୁଁ ପୁଲିଶ୍ ଆସି ପହଞ୍ଚିଗଲା ବାନ୍ତ ହୋଇଥିବା ଖାଦ୍ୟ ଓ ବାକିଆ ଥାଳରେ ଥିବା ଖାଦ୍ୟ, ଡାଲି, ତିଅଣ ସବୁ ଏକାଠି କରି ଗୋଟାଏ ଡେକ୍‌ଚିରେ ସମସ୍ତଙ୍କ ସାମନାରେ ସିଲ୍ କରିଗଲା । ଆମ୍ବୁଲାନ୍‌ସ ବି ସଙ୍ଗେ ସଙ୍ଗେ ଆସିଲା । ଜବତ ଖାଦ୍ୟ ସହ ସୁର ହାସପାତାଳକୁ ଗଲା । ପୋଲିଶ୍ ଏତିକରେ ସନ୍ତୁଷ୍ଟ ନ ହୋଇ ହୋଟେଲରେ ତାଲା ପକାଇଦେଲା ଓ ମ୍ୟାନେଜରଙ୍କୁ ଗିରଫ କରି ଥାନାକୁ ନେଇଗଲା । ଲୋକଙ୍କ ଆଉ ଧ୍ୱନି ଉପରେ ଧ୍ୱନି ଉଠୁଥାଏ ଶଳାକୁ ଠିକ୍ ହୋଇଛି ।

ଧଡ଼ .ଓ ସୁରର ମନ ମଧ୍ୟ ଡାକ ପକାଉଥାଏ—ଶଳା, ପା' ଚେଙ୍ଗେ । ନଆଁ ସାଙ୍ଗରେ ଖେଳୁଥିଲୁ—ପାଉଥା' ଏବେ ମଜା ।



# ଜାହାଙ୍ଗୀରଙ୍କ ହଲାପଟା

ସେଦିନ ରାତିରେ ବେଶ ଅଜଗଣ୍ଡିଆ ଠୁଙ୍କି ଦେଇଥାଏ । ପେଟଟି ଟମ୍‌ଟମ୍ । ଭାବିଥିଲି ବଢ଼ିଆ ନିଦଟାଏ ହୋଇଯିବ । କିନ୍ତୁ ହାୟ ! ଛଟରପଟର ହେବା ହିଁ ସାର ହେଲା । ଯେତେ କଡ଼ ମୋଡ଼ିଲି, ଯେତେ ଭିଡ଼ାମୋଡ଼ା ହେଲି, ଯେତେ ଗୁଟିପିଟି ହେଲି କାହିଁରେ କିଛି ହେଲାନାହିଁ । ନିଦ୍ରାଦେବୀ ଆଖିଦିଟାଙ୍କୁ ଗୁଡ଼ପନ ଦେଇ ଯେମିତି କୁଆଡ଼େ ପଳେଇଲେ । ଭାରି ବିରକ୍ତ ଲାଗୁଥାଏ । ଓଳିଆ ଗାଣ୍ଡି କଆଁରେ ବାଡ଼ ମାଡ଼ ପଶିଗଲା ପରି ନାନାଚିନ୍ତା ମୁଣ୍ଡରେ ଜବରଦସ୍ତି ପଶିଯାଉଥାଆନ୍ତି । କେମିତି ନିଦ ହେବ ସେଇ ବିଷୟ ଭାବୁ ଭାବୁ ଗୋଟାଏ ଉପାୟ ହଠାତ୍ ମୁଣ୍ଡରେ ଢୁକିଗଲା । ମୋର ଗୋଟାଏ ଦୁନିଆଛଡ଼ା ପ୍ରକୃତି ଥାଏ ଯେ କେହି ଯଦି ମୋ ପାଖରେ ବସି ଉପନ୍ୟାସଟାଏ ବା ଖବରକାଗଜଟାଏ ବସି ପଢ଼େ ତେବେ ମୋତେ ନିଦ ଗୁହୁଁ ଗୁହୁଁ ଘୋଟି ଆସେ । ତାର ଦୁଇଟା ପୃଷ୍ଠା ବା ଦୁଇଟା ସ୍ତମ୍ଭ ସରିଥିବ କି ନାହିଁ ମୁଁ ଘୁଙ୍ଗୁଡ଼ି ମାରେ । ପୁଅକୁ ବଡ଼ ପାଟିକରି ଡାକିଲି—"ହେ ଗୋପାଳିଆ ! ଗୋପାଳିଆ !"

ସେ ବିଚରା ସେତେବେଳକୁ ବେଶ ଆରାମରେ ବହି ଉପରେ ନିଘୋଡ଼ ନିଦରେ ଶୋଇ ପଡ଼ିଥିଲା । ମୋ କର୍କଶ ଡାକରା ଶୁଣି ଧଡ଼ପଡ଼ ହୋଇ ଉଠିପଡ଼ି ବଳବଳେଇବାକୁ ଲାଗିଲା—'ନରେଣ, ନରଭ୍ୟାମ୍, ନରୈଃ, ନରେଣ, ନରଭ୍ୟାମ୍, ନରୈଃ"—

ମୁଁ ଆଉ ଟିକଏ ଜୋରରେ ପାଟିକଲି—"ଆରେ ରଖ୍ ତୋ ନଟେଇ, ଆଡ଼େ ଆ ।" ସେ ଡର ଡର ମୋ ପାଖରେ ଆସି ଠିଆହେଲା । ମୁଁ ପଚାରିଲି "ହାଇରେ କଣ ପଢ଼ୁଛୁ ?"

"ସଂସ୍କୃତ" ।

ଆରେ ଉପନ୍ୟାସ ଫୁପନ୍ୟାସ କିଛି ପଢ଼ୁନୁ ?"

"ନାହିଁ ବାପା, 'ଚଡ଼ଆ ଉଡ଼୍‌ଗଯୁ' ଉପନ୍ୟାସ ଖଣ୍ଡିକ ପଢ଼ିଲା ଦିନ ତୁମେ ମୋତେ ଯୋଉ ବେତରେ ପିଟିଲ ସେଇଦିନୁ ମୁଁ ଉପନ୍ୟାସ ପଢ଼ିବା ଏକାବେଳକେ ଛାଡ଼ି ଦେଇଛି ।"

"ସାବାସ୍ ପୁଅ, ମୋ ମନଟାକୁ ଖୁସି କରିଦେଲୁ । ତୋ ମଙ୍ଗଳ ପାଇଁ ବାଡ଼େଇ ଥିଲି, ଦେଖିଲୁ ତୋର କେମିତି ଭଲ ହେଲା । ଖରାପ କଥାଗୁଡ଼ାକ ତୋ ମୁଣ୍ଡରେ ପଶି ତୋ ମୁଣ୍ଡକୁ ଖରାପ କରି ଦେଇଥାନ୍ତା ।"

ପୁଅ ମୋର ଖୁବ୍ ଉତ୍ସାହିତ ହୋଇ କହିପକେଇଲା—"ବାପା ! ସେ କି ବହି, ଆଜିକାଲି ଯେମିତିଆ ବହିସବୁ ବାହାରିଲାଣି ତାକୁ ଯଦି ମୋତେ ପଢ଼ିବାର ଦେଖିଥାନ୍ତ ତେବେ ମୋତେ ଜୀବନରୁ ମାରିଦେଇଥାନ୍ତ—ଇସ୍ କି ନାସ୍ନା ବହିସବୁ ।"

'ସାବାସ୍ ପୁଅ'—

ଏତକ କହିଦେଲି ସିନା । ପର ମୁହୂର୍ତ୍ତରେ ଯେତେବେଳେ ତା କଥାଟାକୁ ଭଲକରି ମନରେ ଚଳେଇ ନେଲି ସେତେବେଳେ ଯାଇ ଜାଣିଲି ଯେ ଯେଉଁ ବେତରେ ତାକୁ ବାଡ଼େଇଥିଲି ସେଇଟା ବୋଧହୁଏ ଭେଜାଲ ବେତ । ଖାଣ୍ଟି ବେତ ନୁହେଁ ।

ଫଁ କରି ଗୋଟିଏ ନିଃଶ୍ୱାସ ଛାଡ଼ି କହିଲି, 'ଆଜି ଖବର କାଗଜଟା ଆଣ ତ ।'

ସେ ଯାଇ କାଗଜଟା ନେଇ ଆସିଲା । ତାକୁ ସେଇଠି ବସି ପଢ଼ିବାକୁ କହିଲି । ସେ ଆଲୁଅଟା ଆଣି ପଢ଼ି ବସିଲା ।

'ବାରିପଦା ୩-୦ ଗୋଲରେ ଖଲ୍ଲିକୋଟକୁ ପରାସ୍ତ କରି ସେମିଫାଇନାଲକୁ ଗଲା ।'

'ଦୂର୍‌ର—ସେଗୁଡ଼ାକ କଣ ପଢ଼ୁଛୁ । ପୃଥିବୀ ଭିତରେ ଏତେ ଏତେ ବଡ଼ ବଡ଼ ଖବର ଥାଉ ଥାଉ ଛୋଟିଆ ଆଗ ଫୁଟବଲଟା ଦିଶିଲା ? ଆଉ ଗୋଟାଏ ପଢ଼—'

ସେ କାଗଜଟା ଲେଉଟାଇ ପୁଣି ପଢ଼ିଲା—'ମେଡ଼ିକଲ କଲେଜରେ ଧର୍ମଘଟ । ଗତକାଲିଠାରୁ ମେଡ଼ିକେଲ କଲେଜର ଛାତ୍ରମାନେ ଅଧ୍ୟକ୍ଷଙ୍କଠାରେ ଏକ ଦାବୀପତ୍ର ଦାଖଲ କରି ଜଣାଇ ଦେଇଛନ୍ତି ଯେ, ତାହା ଗ୍ରହଣ ନ ହେବାଯାଏ ସେମାନେ କ୍ଲାସ୍‌ରେ ଯୋଗ ଦେବେ ନାହିଁ । ଖବରରୁ ପ୍ରକାଶ ଯେ ଅଧ୍ୟକ୍ଷଙ୍କର ପୌରୋହିତ୍ୟରେ ଏକ ସାଧାରଣ ସଭା ହେଉଥିବା ବେଳେ ଦୁଇଜଣ ଛାତ୍ର ଅତି ଅଶୋଭନୀୟ ଭାବରେ ବକ୍ତାମାନଙ୍କୁ ବାଡ଼େଇ ବାଣୀବର୍ଦ୍ଧକ (ମାଇକ୍) କୁ ଛଡ଼ାଇ ନେଇଥିଲେ ଓ ପରେ ହଷ୍ଟେଲର କୋଠରୀମାନଙ୍କରେ ପଶି ଅନ୍ୟାନ୍ୟ ଛାତ୍ରମାନଙ୍କୁ ନିର୍ମମ ଭାବରେ ବାଡ଼େଇଥିଲେ । ଶୁଣାଯାଏ ଏ ଛାତ୍ର ଦୁହେଁ ନନ୍ଦନ କାନନରେ ଛାତ୍ରୀମାନଙ୍କ ଉପରେ ହୋଇଥିବା ଅତ୍ୟାଚାରର ସହିତ ସଂପୃକ୍ତ । ଏମାନେ ପ୍ରଭାବଶାଳୀ ବ୍ୟକ୍ତିମାନଙ୍କର ପୁତ୍ର ହୋଇଥିବାରୁ କେହି ତାଙ୍କ ବିରୁଦ୍ଧରେ କୌଣସି କାର୍ଯ୍ୟାନୁଷ୍ଠାନ କରିବାକୁ ସାହସ କରୁନାହାନ୍ତି ।'

ଏତିକିରେ ମୁଁ ଧୁଙ୍ଗୁଡ଼ି ମାରିଲି । ପୁଅ ବୋଧହୁଏ ଆଉ ହ'ଷ୍ଟେଲଧାଡ଼ ପଡ଼ି ସେ ସ୍ଥାନ ପରିତ୍ୟାଗ କରିଥିବ । ବାପାଙ୍କର ନିଦ ଭାଙ୍ଗିଯିବା ଉପରେ ହେଉ କି ନିଜ ଭୁଣ୍ଡି ଧୋଳେଇହେବା ଡରକୁ ହେଉ ତାହା ତାଙ୍କୁ ଜଣା ।

ଅନେକ କହନ୍ତି ଯେ ଗୁରୁପାକ ଖାଦ୍ୟ ପେଟରେ ଭର୍ତ୍ତି ହୋଇଥିଲେ, ମଣିଷ ଖୁବ୍ ଅଖାଡୁଆ ସ୍ୱପ୍ନ ସବୁ ଦେଖେ । ମୋର ବୋଧହୁଏ ସେଇଆ ହେଲା କି କଅଣ ! ସ୍ୱପ୍ନରେ ମୁଁ ଏକାବେଳକେ ଯାଇ ଦିଲ୍ଲୀରେ ହାଜର ।

ଦିଲ୍ଲୀରେ ଭାରି ହଲ୍ଲା । ମନ୍ତ୍ରୀପୁଅ ଓ କୋଟୁଆଲ ପୁଅ ଦୁହେଁ ମିଶି ଭାରି କାଣ୍ଡ ଅତ୍ୟାଚାର କରି ପକେଇଛନ୍ତି । ଏ ଦୁଇଜଣ ଏଡ଼େ ଜବରଦସ୍ତ ଯେ ରାମଲୀଳା ମଇଦାନରେ ଗୋଟାଏ ସଭା ହେଉଥିଲା ବେଳେ ଏମାନେ ଦୁଇଟା ଠେଙ୍ଗାରେ ସଭାର ସମସ୍ତ ଶ୍ରୋତା, ବକ୍ତା ଓ ସଭାପତିଙ୍କୁ ବାଡ଼େଇ ଛତ୍ରଖତର କରି ଦେଇଛନ୍ତି । ଆଉ ଗୋଟାଏ ଦଫା

ହେଉଛି—ଏ ଦୁଇଜଣ ନେକ୍‌ଡ଼ା ବାଘ ପରି । ଦଳେ ଝିଅପିଲା ବଣଭୋଜି କରୁଥିଲା ବେଳେ ସେମାନଙ୍କ ଉପରକୁ କୁଦପଡ଼ି ବହୁତ କଷ୍ଟ ଖରାପ କାମ କରି ପକେଇଛନ୍ତି । ଲାଲକିଲ୍ଲାରେ ସେମାନଙ୍କ ବିଚାର ହେବ । ଏ ବିଚାର ବିଷୟରେ ଏତେ ଜୋରରେ ଡେଙ୍ଗୁରା ପିଟାହେଲା ଯେ କବର ଭିତରେ ଶୋଇଥିବା ଜାହାଙ୍ଗୀର ସମ୍ରାଟଙ୍କ ନିଦ ମଧ୍ୟ ଭାଙ୍ଗିଗଲା । ନ୍ୟାୟ ବିଚାର ବିଷୟରେ ତାଙ୍କର ଭାରି ଝୁଙ୍କୁଥିଲା, ବହୁ ଶତାବ୍ଦୀ ପରେ ତାଙ୍କ ରାଇଜରେ କେମିତିଆ ନ୍ୟାୟ ବିଚାର ହେଉଛି, ତାହା ଦେଖିବାର ଲୋଭ ସେ ଏଡ଼ାଇ ପାରିଲେ ନାହିଁ, ସେ ନିଜ କବରରୁ ବାହାରି ଉଜୀରଙ୍କ କବର ପାଖରେ ପହଞ୍ଚିଲେ ଓ ତାଙ୍କୁ ବାହାରକୁ ଡକାଇ ନିଜ ଅଭିପ୍ରାୟ ଜଣାଇଲେ । ଉଜୀର ତାଙ୍କୁ ସେଠାକୁ ନ ଯିବାକୁ ବହୁତ ବୁଝାଇଲେ । କହିଲେ—"ଦେଖନ୍ତୁ ଆଜ୍ଞା, ଆମ କାଳ ଆଉ ନାହିଁ । ଦଳେ ଉକେଇତ ଗଣତନ୍ତ୍ର ନାମକ ଏକ କୁରୁତା ପିନ୍ଧି ଯାବତ ଭଣ୍ଡାମି ଚଳେଇଛନ୍ତି । ଅଲ୍ଲାଦିନ ପାପରୁ ଦୁର୍ମତି ଦୈତ୍ୟକୁ କାଢ଼ି ତାରି ବଳରେ ଦେଶଟାକୁ ଉଚ୍ଛନ୍ନ କରି ସାରିଲେଣି । ଅଳପେଇସେ ଏହି ଦୈତ୍ୟକୁ ସବୁଠେଇଁ କାମରେ ଲଗେଇ ଦେଲେଣି । ଆଉ ଶାସନ, ନ୍ୟାୟ, ବିବେକ ବୋଲି କିଛି ଜିନିଷ ନାହିଁ ! ଦୈତ୍ୟ ଗର୍ଭରେ ସବୁ ସ୍ୱାହା ହୋଇ ଗଲାଣି । ଆଉ ସେ ଦୁର୍ଜନ ଗୁଡ଼ାଙ୍କର ପାଖ ମାଡ଼ିବା ଉଚିତ୍ ନୁହେଁ ।"

ଏକଜିଦିଆ ଜାହାଙ୍ଗୀର କି ଛାଡ଼ିବା ଲୋକ । ଉଜୀରଙ୍କୁ ଓଲଟି ଘୋଷାଡ଼ି ଘୋଷାଡ଼ି ଲାଲକିଲ୍ଲା ଆଡ଼େ ନେଇଗଲେ ।

ଲାଲକିଲ୍ଲା ଫାଟକ ପାଖରେ ପହଞ୍ଚିବା ମାତ୍ରେ ଚପରାଶି ଫାଟକ ବନ୍ଦକରି ଦେଇ କହିଲା—"ହେ ! ହୁକୁମ ନେହିଁ" ।

ଉଜୀର ଚଟାପଟ୍ ନିଜ ହାତରୁ ସୁନା ମୁଦିଟା କାଢ଼ି ତା ହାତରେ ଗୁଞ୍ଜିଦେବା ମାତ୍ରେ ସେ ସଲାମ ବଜାଇ ଫାଟକ ଖୋଲିଦେଲା ।

ଭିତରକୁ ଯାଇ ଦେଖନ୍ତିତ ଅଧିକା ଚଉକି ନାହିଁ । ପେଶ୍‌କାର ଦୁହିଁଙ୍କୁ ଦେଖି ନାକ ଟେକିଲେ । ଉଜୀର ତାଙ୍କ ପାଖକୁ ଯାଇ କାନରେ କଅଣ ଫୁସ୍‌ଫୁସ୍ କରି କହିଲେ ଓ ହାତରେ ଆଉ ଗୋଟିଏ ସୁନା ମୁଦି ଗୁଞ୍ଜିଦେଲେ । ପେଶ୍‌କାର ନିଃସଙ୍କୋଚରେ ତାକୁ ପରୀକ୍ଷା କରି ପଚାରିଲେ "ଅଠର କ୍ୟାରେଟ୍ ନୁହେଁ ?"

ସେ ସବୁ ଆମ ଅମଳରେ ଜନିଷ ମିଶାମିଶି କଲେ ମୁଣ୍ଡକାଟ ହେଉଥିଲା । ଏବେତ ଖାଇବା ଜିନିଷରେ ଲୋକେ ମିଶାମିଶି କଲେଣି ।”

“ଆମ ନେହୁରୁ ବି ମୁଣ୍ଡ କାଟିବେ ବୋଲି କହୁଥିଲେ ।”

“ହୁଁ, ଖଣ୍ଡାଦାଢ଼ ବହୁତ୍ତା ହୋଇ ଯିବାରୁ ନ କାଟି ନିଜ ମୁଣ୍ଡରେ ବସେଇଲେ ।”

ପେଶ୍‌କାର ଆଉ କିଛି ନକହି ପିଅନକୁ ଯୋଡ଼ାଏ ଚଉକି ପକାଇ ଦେବାକୁ କହିଲା । ଚଉକି ଆସିଲା । ଦୁହେଁ ବସିଲେ । ବିଚାର ଆରମ୍ଭ ହେଲା । ହେଲେ ଆସାମୀ ଦୁହେଁ ନଥାନ୍ତି ।

ଆଗ ପହିଲା ଦଫା ବିଚାର ଚାଲିଲା । ଜଣେ କହିଲା, “ବିଚାର କରିବା ପୂର୍ବରୁ ମନେ ରଖିବାକୁ ହେବ ଜଣେ ହେଉଛି ମନ୍ତ୍ରୀ ପୁଅ, ଆଉ ଜଣେ ହେଉଛି କଟୁଆଳ ପୁଅ । ମନ୍ତ୍ରୀ ଓ କଟୁଆଳ ଦେଶର ଯେଉଁ ବିରାଟ ବୋଝ ବୋହୁଛନ୍ତି ସେଥିରେ ସେମାନଙ୍କୁ ସାତଖୁଣ୍ଟୀ ମାଫ୍‌ଦେବା ନହାତି ଦରକାର । ତାଙ୍କ ପୁଅ କେଉଁଠି କଅଣ କଲେ ସେଇଟା ବିଲ୍‌କୁଲ୍ ନଜରକୁ ଅଣାଯିବା ଦରକାର ନୁହେଁ । ମନୁସଂହିତାରେ ବି ଲେଖାଅଛି ପଣ୍ଡିତ ପୁଅ ମାଙ୍କଡ଼ ମାଇଲେ ମାଙ୍କଡ଼ ଧାକଡ଼ । ମନ୍ତ୍ରୀ ପୁଅ କଟୁଆଳ ପୁଅଙ୍କ କଥା ଗୁଡ଼ ।”

ଆଉ ଜଣେ କହିଲେ, “ମାତ୍ର ଦୁଇଜଣ ପିଲା ମଇଦାନରେ ଥିବା ଏତେ ଲୋକଙ୍କୁ ବାଡ଼େଇ ତଡ଼ିଦେଲେ । ଏ ଦୁଇଜଣ ତ ନିଶ୍ଚେ ଦୁଇଟା ଦାରସିଂ । ସେମାନଙ୍କୁ ବଧେଇ ଦେବାର କଥା । ଆମର ଦରକାର ଏମିତିଆ ପାରିଲା ପିଲା । ଯେଉଁମାନେ ମାଡ଼ଖାଇ ପଳେଇ ଗଲେ ସେମାନଙ୍କର କୌଣସି କଥା ଶୁଣାଯିବ ନାହିଁ । ଏମାନେ ଦେଶର ଶତ୍ରୁ । ଚୀଇନା ଓ ପାକିସ୍ଥାନ ଏମାନଙ୍କ କଥା ଶୁଣିଲେ ପୁଣି ଭାରତ ଆକ୍ରମଣ କରିବେ । ଦୁଇ ଦାରସିଂଙ୍କୁ ସୁନାପଦକ, ଫୁଲମାଳ ଓ ପ୍ରଶଂସାପତ୍ର ଦିଆଯାଉ । ସମସ୍ତେ ସାଧୁ ସାଧୁ ବୋଲି ଚିଲେଇ ଉଠିଲେ ।

ଜାହାଙ୍ଗୀର ଏହି ସମୟରେ ଅନିଚ୍ଛାତ କହି ପକେଇଲେ— “ହେଃ ! ଏ ନ୍ୟାୟ ଠିକ୍ ହେଲା ନାହିଁ”—

ଆଉ ଜଣେ ରାଗିଯାଇ କହିଲା, “ତୁମେ କମିତିଆ ନ୍ୟାୟ କରୁଥିଲ ହୋ”—

"ଏଁ ! ମୁଁ ? ଶୁଣ ତେବେ । ଥରେ ମୋ ବେଗମ ଶର ମାରୁ ମାରୁ ଭୁଲରେ ଗୋଟାଏ ପ୍ରଜାକୁ ମାରିଦେଲା । ତା ମାଇପ ମୋ ଆଗରେ ସିଧାସଳଖ ଆସି ଫେରାଦ ହେଲା । ସବୁ କଥା ବୁଝି ମୁଁ ଅର୍ଡର ଦେଲି । ସେ ସ୍ତ୍ରୀ ଧନୁଶର ଧରି ମୋ ବେଗମ ଆଗରେ ମୋତେ ମାରିଦେବ । ମୋ ବେଗମ ଯେପରି ଜଣକୁ ହତ୍ୟାକରି ତା ସ୍ତ୍ରୀକୁ କଷ୍ଟ ଦେଇଛି, ତା ସ୍ତ୍ରୀ ସେହିପରି ବେଗମ୍‌ର ସ୍ୱାମୀକୁ ହତ୍ୟାକରି ବେଗମ୍ ମନରେ କଷ୍ଟଦେଉ—"

ଅଧିକାଂଶ ଲୋକ ଚିଲେଇ ଉଠିଲେ—ହଟାଅ ସେ ମାନ୍ଧାତା ଅମଳର ନ୍ୟାୟ । କାହିଁ ରାଣୀ କାହିଁ ଚନ୍ଦ୍ରକାଣୀ, କାହିଁ ରଜା କାହିଁ କୁଜା । ଗୋଟାଏ ମାମୁଲି ପ୍ରଜା ପାଇଁ ଗୋଟାଏ ରଜାର ଜୀବନ । ଦୂର୍, ଦୂର୍ । ଆଉ କାହାଆଗେ ଏପରି ମୂର୍ଖ କଥା କହିବ ନାହିଁ ।"

ଜାହାଙ୍ଗୀର ଆଉ କଅଣ କହିବାକୁ ଯାଉଥିଲେ କିନ୍ତୁ ଉଜୀର ବାରଣ କରି ଚୁପ୍ ଚୁପ୍ କରି କାନରେ କହିଲେ—"ଆଜ୍ଞା, ଶାସ୍ତ୍ର କହୁଛି—ଦୁର୍ଜନେନ ସମଂବୈରଂ ପ୍ରୀତିଞ୍ଚାପି ନ କାରୟେତ୍ । ଆମ ଅମଳ ଆଉ ନାହିଁ । ଉକେଇତ ଦଳଙ୍କ ହାତରେ କ୍ଷମତା ପଡ଼ୁଛି । ଆପଣ ତୁନି ରହନ୍ତୁ । ସବୁ ଶୁଣି ଆମେ ପୁଣି କବର ଭିତରେ କଥାବାର୍ତ୍ତା ହେବା"—

ବିଶିଷ୍ଟ ଦଫାର ବିଚାର ହେଲା । ଜଣେ କହିଲା—'ସେ ମାଙ୍କଡ଼ୀ ଟୋକାଙ୍କ ବନା ପଢ଼ାରେ କାହିଁକି ବଣକୁ ଯାଇଥିଲେ ? ଘଇତାମାନଙ୍କୁ ସାଙ୍ଗରେ ନେଇ ଗଲେନି ? ଦେଖେଇ ହଉଥିଲେ ଆମେ ମାଇପେ ଅଣ୍ଡିରାଙ୍କ ସଙ୍ଗେ ସମାନ । ସେ ଅଣ୍ଡିରିଚଣ୍ଡୀମାନଙ୍କୁ ଠିକ୍ ହୋଇଛି । ସେ ଘୋଡ଼ୀଗୁଡ଼ାଙ୍କର ଗୁଣ କଅଣ କମ୍ । ନାଇଲନ ଜାଲର ଶାଢ଼ି ପିନ୍ଧି ପିଠି ପେଟ ଗୁଡ଼ି ଦେଖେଇ ହୋଇ ଟୋକାଙ୍କ ଆଗରେ ଫଡ଼ର ଫଡ଼ର ହେବେ । ଆଜକାଲି ଟୋକାଏ ଯେମିତି ହାଉଆଁ ଓ ରଙ୍କୁଣା ହୋଇଛନ୍ତି ସେଥିରେ ସେମାନେ ଦେଖିଲା କାମ କରିନେଲେ । ବିରାଡ଼ି ଆଗରେ ମାଛ ଢାଳେଇବ, ବିରାଡ଼ି ଝାମ୍ପିନେଲେ ତାକୁ ଦୋଷ ଦେବ—ଇଏ କୋଉଠିକା ନ୍ୟାୟ ? ଟୋକା ଦୁହେଁ ମାଙ୍କଡ଼ୀ ଟୋକୀଙ୍କ ଉଚିତ୍ ଶିକ୍ଷା ଦେଇଛନ୍ତି । ଆଉ ଦିନେ ଫେର୍‌କାମୀ ଦେଖେଇବେ ନାହିଁ । ପିଲା ଦୁହିଁଙ୍କୁ ସତ୍ ଚରିତ୍ର ପ୍ରଶଂସା ପତ୍ର ଦିଆଯାଉ ।"

ଗୁରୁଆଡ଼ୁ ଗୋଳ ଉଠିଲା— "ସାବାସ୍ ସାବାସ୍ ବଢିଆ ନ୍ୟାୟ । ଖୋଦ୍ ଗୌତମ ମହର୍ଷି କହିଲେ ଚଳେ—"

ଉଜୀରଙ୍କ ବାରଣ ସତ୍ତ୍ୱେ ଜାହାଙ୍ଗୀର ପାଟି କରି ଉଠିଲେ— "ଘୋର ଅନ୍ୟାୟ, ଘୋର ଅନ୍ୟାୟ । ମାତୃଜାତି ଉପରେ ଏପରି କାପୁରୁଷୋଚିତ ଆକ୍ରମଣକୁ ମୁଁ କେବେ ହେଲେ ବରଦାସ୍ତ କରି ନଥାନ୍ତି । ଦୁରାତ୍ମା ଦୁହିଁଙ୍କର ଗଣ୍ଡିରୁ ମୁଣ୍ଡ ଅଲଗା କରି ଦେଇ ଥାଆନ୍ତି ।"

ଜଣେ ହଠାତ୍ ପାଟିକରି ଉଠିଲା—ଆରେ ଏତ, ପାକସ୍ଥାନ ଗୁପ୍ତଚର । ବାନ୍ଧ ଏହାକୁ । ନେଇଯାଅ ଥାନାକୁ ! ସାଙ୍ଗେ ସାଙ୍ଗେ ସେଇଆ ହୋଇଗଲା । ଉଜୀର ବଶୁରୁ, ହାତରେ ପୋଷାକରେ ଥିବା ସବୁ ସୁନା, ମଣି ମୁକ୍ତା, ହୀରା ମୁଦ୍ରା ସମସ୍ତଙ୍କୁ ଘୁଷ୍ ଦେଇ ଜାହାଙ୍ଗୀରଙ୍କୁ ମୁକୁଳେଇ ଆଣିଲେ । ଦୁହେଁ ନସର ପସର ହୋଇ କବର ଭିତରକୁ ପଶିଗଲେ ।

ଏତେବେଳ ଯାଏ ମୁଁ ଚୁପ୍ ହୋଇ ସବୁ ଦେଖୁଥିଲି । ପାଟି ଖୋଲି ରାଗରେ କହି ଲାଗିଲି—"ଘୋର ଅନ୍ୟାୟ, ଘୋର ଅନ୍ୟାୟ—"

ଗୋପାଳଆ ଆସି ହଲେଇ ଦେଇ ପାଟି କଲା—'ବାପା, ବାପା, ବାପା, ଏମିତି ବକବକଉଛ କାହିଁକି ?—



# ବନ୍ୟା ସାହାଯ୍ୟ ପାର୍ଟି

ଇନ୍ଦ୍ର ରାଜାଟା ମରିଗଲାକି କିଅସ ? ମେଘମାନେ ଯେ ଯାହା ହାତରେ ଚଉଦ ପାଆ ହୋଇଗଲେ ଯେମିତି । ବର୍ଷା, ବର୍ଷା, ବର୍ଷା । ମୁରବିହୀନ ହୋଇଗଲେ ଅମାନିଆ ଟୋକାଏ ଯେମିତି କାଣ୍ଡଜ୍ଞାନହୀନ କାମ କରିବସନ୍ତି । ଚଇତ ଶେଷ ବେଳକୁ ଶ୍ରାବଣ ଆରମ୍ଭ । କୃଷୀକୁଳଙ୍କ ହାଲକ ଶୁଖିଲା । ବିଲଆଡ଼େ ପାଣି ଦରକାର । ହଳ ପକେଇବେ କେଉଁଠି, ଧାନ ବୁଣିବେ କେଉଁଠି ! ମୁହିଁଟି ମାନ ଶୁଖେଇ ଗାଲରେ ହାତ ଦେଇ ଘରେ ବସି ରହିବାହିଁ ସାର ହେଲା । ଘରେ ବ କୋଉଠି ବସି ହେଉଛି ! ବିଲଆଡ଼େ ଚୂଲ 'ଫୁଟେଇ ପାଣି ଟପ ଟପ ଗଳୁଛି । କୋଉଠି କୋଉଠି ମାଟି କାନ୍ଥ ବତୁରି ଯାଇ ଅକାଡ଼ ହୋଇ ପଡ଼ୁଛି । କୃଷୀକୁଳ ଉପରେ ହାହା ହାହା ଡାକ ଛୁଡ଼ିଲେ ।

କୃଷୀଙ୍କର ସିନା ସର୍ବନାଶ, ହେଲେ କେଉଟଙ୍କ ପୁଷମାସ । ନାନାଜାତିର ଜାଲ ଖଣ୍ଡେ ଖଣ୍ଡେ ଧରି ଘାଟି ଥାନମାନଙ୍କରେ ହାଜର ହୋଇଗଲେ । ଯେଉଁମାନେ ନିଜ ନିଜ ଗାଡ଼ିଆରେ ମାଛ ଜିଆଇ ରଖିଥିଲେ ତାଙ୍କ କଥା ସରିଗଲା । ଗାଡ଼ିଆ ସବୁ ପୂରି ବିଲପାଖର ପାଣି ସାଙ୍ଗରେ ସମାନ ହୋଇଗଲା । ସବୁ ପୋଖରୀ ଗାଡ଼ିଆ ମିଶି ଏକ ବିରାଟ ହ୍ରଦ ହୋଇଗଲା । ମାଛମାନେ ନିଜକୁ ସ୍ୱାଧୀନ ଘୋଷଣା କରି ସ୍ୱାଧୀନତା ଉତ୍ସବ ପାଳିଲେ । ଠିକ ଜାବନିଆ ନିଷାଦ ଜୀବମାନଙ୍କର ସ୍ୱାଧୀନତା

ଗୋଟାଏ କଅଣ ! ଜଣକ ହାବୁଡ଼ରୁ ମୁକ୍ତି ପାଇଲେ ଆଉ ଜଣଙ୍କ ହାବୁଡ଼ରେ ପଡ଼ନ୍ତି । ଗାଡ଼ଆରୁ ବାହାରି ସେମାନେ କେଉଁଠି ଖାଲେଇରେ ପଶିଲେ । ଠିକ୍ ଯେମିତି ଅଳସୁଆ, ପରମୁଖାପେକ୍ଷୀ ଟିକି ରାଷ୍ଟ୍ରମାନେ ଗୋଟିଏ ବୃହତ ଶକ୍ତି କବଳରୁ ମୁକ୍ତିଲଭ କରି ଆଉ ଗୋଟିଏ ବୃହତ ଶକ୍ତିଦ୍ୱାରା କବଳିତ ହୁଅନ୍ତି ।

ଏଣେ ମଫସଲରେ ଏମିତିଆ ଅବସ୍ଥା ଥିଲାବେଳେ ତେଣେ ସହରରେ ଆଉ ପ୍ରକାରେ ଅବସ୍ଥା । ଉଚ୍ଚଳଚଳିଆ ଥାନରେ ଥିବା କେତେଜଣ ବସ୍ତିବାଲାଙ୍କୁ ଛାଡ଼ି ଦେଲେ ଅନ୍ୟ ସମସ୍ତେ ବର୍ଷାକୁ ଉପଭୋଗ କରୁଥାନ୍ତି । ଘରେ ଘରେ ରୁଟି, ମାଉଁସ ତରକାରି । କେଉଁଠି ବରା, ପକୁଡ଼ି, ଆଳୁଚପ୍‌ର ଧୂମ୍ । ଠାକୁରଘର ମାନଙ୍କରେ ଗଞ୍ଜେଇ ଚିଲମ ଆଉ ଖଞ୍ଜଣୀ ମାଡ଼, ବଡ ବଡ କ୍ଲବ୍ ମାନଙ୍କରେ କ୍ଲୁମ୍ପା, କକ୍‌ଟେଲ୍ ଆଉ ବିଲାତି ବୋତଲର ଠନ୍ ଠାନ୍ ଶବ୍ଦ—ମୋଟ ଉପରେ ବର୍ଷା ଉପଭୋଗର ଚିହ୍ନ ।

ଏକ ବସ୍ତି ଭିତରେ ଥିବା 'ନିକମା କ୍ଲବ୍'ର ଅବସ୍ଥା କିନ୍ତୁ ଅଲଗା ପ୍ରକାରର । ଏତାଦୃଶ ନାମକରଣ ସ୍ୱଦତ୍ତ ନୁହେଁ । ଆଖପାଖର ଲୋକେ ଏହାର ମେମ୍ବରମାନଙ୍କ ଚାଲିଚଳନ, ତାଆସ ଓ ପଶା ଖେଳରେ କାଳ କ୍ଷେପଣ, କାୟିକ-ପରିଶ୍ରମ-ବିମୁଖତା ଦେଖି ସେମାନଙ୍କ କ୍ଲବ୍‌ର ଶ୍ରଦ୍ଧା ନାମ ଦେଇଥିଲେ—'ନିକମା କ୍ଲବ୍ ।' ଘରଟି ଠିକ୍ ଠିକ୍ ଭଡ଼ାରେ ନିଆଯାଇଥିବା କ୍ଲବ୍ ଘର ନୁହେଁ । ତାହା ବସ୍ତିର ସବୁଠାରୁ ବଡ଼ ନିକମା ଓଥଡ଼ା ଦାସର ଘର । ତାଙ୍କର ନିକମା ପଣରେ ଆତଙ୍କିତ ହୋଇ କେହି ତାଙ୍କୁ ଜ୍ୱାଇଁ ପଦରେ ବରଣ ନ କରିବାରୁ ସେ ସଂସାରର ଅନିତ୍ୟତା ହୃଦୟଙ୍ଗମ କରି ଏବଂ ତାର ମାୟାଜାଲରେ ଛନ୍ଦି ନହେବାକୁ ବ'ହାତ ହେଲେ ନାହିଁ । କଥାରେ ଅଛି, ଏକପ୍ରକାର ଚଢ଼େଇ ଏକାଠି ରୁଣ୍ଡହୁଅନ୍ତି । ଓଥଡ଼ା ଦାସଙ୍କ ନିକମାପଣରେ ଆକୃଷ୍ଟ ହୋଇ କ୍ରମେ ଆହୁରି ଅନେକ ନିକମା ଆସି ତାଙ୍କର ଶିଷ୍ୟତ୍ୱ ଗ୍ରହଣ କଲେ । ଘରଟି ସବୁବେଳେ ପୂରି ଉଠି କ୍ଲବ୍ ଆକାର ଧାରଣ କଲା ଓ ଜନସାଧାରଣଙ୍କଠାରୁ ଶ୍ରଦ୍ଧା ନାମ 'ନିକମା କ୍ଲବ୍' ଲଭକଲା ।

ସେଦିନ ତା'ସ ଖେଳର ଧୂମ୍ ଉଠିଥାଏ । ଚାରିଜଣ ଖେଳୁଥାନ୍ତି, ସେମାନଙ୍କୁ ଆବୋରି ବସିଥାଆନ୍ତି ଆଉ ୫।୬ ଜଣ । ଥରେ ଖେଳ ଧରିବା

ମାନେ କୁଆବସାରେ ଭ୍ରମଣା ପ୍ରବେଶକାଳୀନ ଗୋଲଗୋଲ ଘର ଭିତରୁ ଉଠି ଚତୁର୍ଦ୍ଦିଗ କମ୍ପାଇ ଦଏ । ଆଖପାଖର ଲୋକେ ବରକ୍ତର ସହ ଏମାନଙ୍କର ଜନ୍ମର ବୈଧତା ବିଷୟରେ ସନ୍ଦେହ ପ୍ରକାଶ କରନ୍ତି ଓ ସେମାନଙ୍କର ପିତାମାତା, ଜନ୍ମ ହେଲାବେଳେ ସେମାନଙ୍କ ତଣ୍ଟି ଯେ କାହିଁକି ଚିପି ନଦେଲେ ସେଥିରେ ଆଶ୍ଚର୍ଯ୍ୟ ପ୍ରକାଶ କରନ୍ତି ।

ତାସ ଖେଳ ଚାଲିଥାଏ । ଏହିଥର ଛକା ଉଠିବାର ପାଳି, ଖେଳ ଚାରିପଣ ଆଗେଇଛି କି ନାହିଁ, ଲଣ୍ଠନଟି ଜଳିବାକୁ ନାରାଜ ହେଲା । ଜଣେ ଲଣ୍ଠନଟାକୁ ହଲେଇ ଦେଖିଲା ଟବ ଟବ ହେଉଛି, କମୁଛି ତେବେ କଅଁ ? ସମସ୍ତେ ଏଇଆ ପଚାରିଲେ । ଓଥଡ଼ା ବୁଝେଇ ଦେଲା—"କଥାଟା କେହି ବୁଝନ୍ତୁ, ବତିଟି ଶ୍ଳେଟ ହୋଇଯାଇଥିଲା । କିରାସିନକୁ ପାଇଲା ନାହିଁ । ନା ବତିପାଇଁ ପଇସା ନା କିରାସିନ ପାଇଁ ପଇସା ମୋ ପାଖରେ ଥିଲା ? ପାଣି ଭର୍ତ୍ତି କରିଦେଲି, କିରାସିନଟା ପାଣିଉପରେ ଭାସିବାରୁ ବତିରେ ଲାଗିଲା ଓ ଏତେବେଳ ଯାଏ ଜଳିଲା । ଠିକ୍ ବଖତ ବେଳକୁ ସରିଯିବ ବୋଲି କିଏ ଜାଣିଛି, ଏବେ ବତି ପାଣି ଶୋଷିନେଲା । ଆଉ ନ ହୁଏ । ନୂଆ ବତି, କିରାସିନ ଦରକାର । ନ ହେଲେ କଥା ସରିଲା ।

ନିଜ ନିଜ ଅଣ୍ଟା ଓ ପକେଟରେ ସମସ୍ତଙ୍କ ହାତ ନିଷ୍ଫଳତାର ବିଜୟ ମୁକୁଟ ପିନ୍ଧି ଫେରି ଆସିଲେ । ଭଗ୍ନମନର ସୂଚନା ଦେଇ ଅସ୍ୱାଭାବିକ ନୀରବତା କିଛି ସମୟ ପାଇଁ ସେଠି ଅଖଣ୍ଡ ରାଜତ୍ୱ କଲା ।

ଏତିକିବେଳେ ପଦାରେ ଡାକ ଶୁଭିଲା—ସମାଜ । ଓଡ଼ିଶାରେ ନାହିଁ ନ ଥିବା ବନ୍ୟା । ଜଣେ ନିକମା ସଙ୍ଗେ ସଙ୍ଗେ ଚିଲେଇ ଉଠିଲା 'ହେ ସମାଜ ! ଦେଇଯା, ଦେଇଯା, ।' ଅନ୍ଧାର ଭିତରେ ଆଉ ଜଣେ ଚିଲେଇଲା—'ଏଡ଼େ କୁତୁରୁପିଆଟା, ପଇସା ଥିଲା; ଯାଇ ଟିକିଏ କିରାସିନ ଓ ବତି ପକେଇଆଣି ପାରିଲୁ ନାହିଁ ?'

'ରହିବେ ପାଟି କରନା । ଭଣ୍ଡୁର ହୋଇଯିବ । ସେହି କାଗଜବାଲାଠୁଁ ପଇସା ଯୋଗାଡ଼ କରିବି ।'

ହକର୍‌ଟି ପାଖକୁ ଆସିଲା । ନିକମା ଜଣକ କହିଲା—'ଦେ ଖଣ୍ଡେ କାଗଜ ଆଉ ପଇଁତିରିଶି ପଇସା । ଆଠଣିଟିଏ ଆଣି ଦଉଛି । ହକରଟି ୩୫ ପଇସା ଆଉ କାଗଜଟିଏ ବଢ଼େଇ ଦେଲା । ଅନ୍ଧାରଘର ଭିତରକୁ ପଶି ଯାଉ ଯାଉ ନିକମା ଜଣକ କଅଣ ଗୋଟାଏ ଝୁଣ୍ଟିଲାପରି ହୋଇ

ଦୁମ୍‌କର ପଡ଼ି ଗଡ଼ିଗଲା । ସଙ୍ଗେ ସଙ୍ଗେ ଚଲେଇ ଉଠିଲା—'ଆହା ପଇସା କୁଆଡେ ପଡ଼ିଗଲା । ମଲା ମଲା ହଆସିଲିଟା କଅଣ ହେଲା ? ତା ଭିତରେ ଆଠଣିଟି ରଖିଥିଲି । ସେ ଶଳା ଟୋକାଟା ଅଧଘଣ୍ଟାଏ ହେଲା କିରସିନ ପାଇଁ ଗଲାଣି, ଏତେବେଳଯାଏ ଦେଖାନାହିଁ । ଶଳାଟା ଆସୁ, ଆଜି ତା ପିଠିରୁ ଚେପା ଛଡ଼ାଉଛି । ହଇହୋ କାଗଜ, ଟିକିଏ ଅପେକ୍ଷା କର, ଆଲୁଅଟା ଆସିଯାଉ । ପଇସାଗୁଡ଼ାକ ଏଇଠି କୋଉଠି ପଡ଼ିଯାଉଛି ପାଉନ । ଟିକିଏ ଅପେକ୍ଷା କରଯା ।

ପ୍ରାୟ ଦଶମିନଟ୍ ଅପେକ୍ଷା ପରେ ହକର୍‌ଟି ଅଧୈର୍ଯ୍ୟ ହୋଇ ପଡ଼ିବାରୁ ନକମା ଜଣକ ପଦାକୁ ବାହାରି ଆସି କହିଲା—କଅଣ କରିବ, ମୁଁ ନାଚାର । ସେ ଶଳା ଟୋକାଟା ପାଖରେ କିରସିନ ନ ପାଇ ଦୂରକୁ ଯାଇଛି । ଆଉ ଟିକିଏ ରହିଯା ।

ହକର୍‌ଟି ବିବ୍ରତ ହୋଇପଡ଼ି କହିଲା—ବାବୁ ! ଏଇ ସମୟ ଭିତରେ ମୁଁ ୫ଖଣ୍ଡ କାଗଜ ବିକନ୍ତିଣି । ମୁଁ ଯାଉଛି, କାଲି ମୋତେ ଆଠଅଣା ପଇସା ଦେଇଦେବ । ଏହାକହି ସେ ଚାଲିଗଲା, ତାର ଡାକ ଅସ୍ପଷ୍ଟ ହେବାପରେ ନକମା କ୍ଲବ୍ ଘର ଭିତରୁ ହାସ୍ୟରୋଳ ଉଠିଲା । ୩୫ ପଇସାରେ ନୂଆ ବତି, କିରସିନ ବାଦ କଣ୍ଟୁ ବଡ଼ ବ ହୋଇଗଲା । ସମସ୍ତେ ପୁଣି ସଜ ସାଜ ହୋଇ ବସିଲା ବେଳକୁ ଦେଖିଲା ତା'ସ ସବୁ ଗୋଳମାଳ ହୋଇଯାଇଛି । ଛକାଟାଏ ନଷ୍ଟପ୍ରାୟ ହୋଇଥାନ୍ତା । ବହୁତ ଅବଶୋଷ ପରେ ସମସ୍ତେ ଖବର କାଗଜଟାକୁ ଆବୋରି ବସିଲେ—ଆଗ ଖୋଜ ଲଗିଲେ ବନ୍ୟା ଶିରୋନାମା । ଗୋଟାଏ ବିସ୍ତୃତ ଅଞ୍ଚଳରେ ପ୍ରବଳ ବନ୍ୟାହୋଇ ଅକଳନ୍ତ କ୍ଷୟକ୍ଷତି ହୋଇଥିବାର କଥା ପଢ଼ିବା ମାତ୍ରେ ସମସ୍ତଙ୍କ ମନରେ ପ୍ରବଳ ଉଲ୍ଲାସ, ପ୍ରଭୂତ ଆନନ୍ଦ ଓ ପ୍ରଚୁର ଉନ୍ମାଦନା ଦେଖାଦେଲା । ଏ ସର୍ବନାଶ ଭିତରେ ସେମାନଙ୍କୁ ପୁଷମାସର ଲୋଭନୀୟ ଚନ ପରିଷ୍କାର ଦେଖାଗଲା । ଆଉ ମୁହୂର୍ତ୍ତେ ବିଳମ୍ବ କରିବାର ନୁହେଁ । କାର୍ଯ୍ୟପନ୍ଥା ସଙ୍ଗେ ସଙ୍ଗେ ସ୍ଥିର କରିବାକୁ ହେବ । ସନ୍ଧାଉପରୁ ସାଇନ୍‌ବୋର୍ଡଗୁଡ଼ାକ କଡ଼ାହୋଇ ଝଡ଼ାଝଡ଼ି ହେଲା । ପିଚ୍‌ବୋର୍ଡରେ ବଡ଼ ବଡ଼ ଅକ୍ଷରରେ ଲେଖା ହୋଇଥାଏ—ତୋଫାନ ସାହାଯ୍ୟ ସମିତି, ମରୁଡ଼ି ସାହାଯ୍ୟ ସମିତି, ଘରପୋଡ଼ି ସାହାଯ୍ୟ ସମିତି, ସଙ୍କଟତ୍ରାଣ ସମିତି,

ଦୁର୍ଭିକ୍ଷ ସାହାଯ୍ୟ ସମିତି ଓ ବନ୍ୟା ସାହାଯ୍ୟ ସମିତି ଆଦି ନାମ ଫଳକରୁ 'ବନ୍ୟା ସାହାଯ୍ୟ ସମିତି'ଟିକୁ ବାଛି କରାଗଲା । କୋଉଠୁ କେମିତି ଟିକଏ ଟିକଏ କାଳ ଗୁଡ଼ ଯାଇଥିଲା, ସେଠାରେ କାଳ ମଡ଼େଇ ଦିଆଗଲା ଓ ପଦା କାନ୍ଥରେ, ଖେଳେଡ଼ିଆ ଛୁଆଙ୍କ ହାତ ନ ପାଇବା ଭଳି ଥାକରେ ଝୁଲେଇ ଦିଆଗଲା । ସହରର ସମସ୍ତ ସଭ୍ୟଙ୍କୁ ଗତାଗତ ଖବର ଦେଇ ବଡସକାଳୁ ସେଠାରେ ଆଣି ରୁଣ୍ଡ କରେଇବାକୁ ସମସ୍ତଙ୍କୁ କୁହାଗଲା ।

ବଡ଼ଘେରରୁ ନକମା କ୍ଲବ୍ ଉଠୁଥାଏ ପଡୁଥାଏ । ଦକ୍ଷ ଯୋଜନାକାରୀମାନେ ଯୋଜନା ପ୍ରସ୍ତୁତ କରିବାରେ ଲାଗି ପଡ଼ିଥାନ୍ତି । ଗୁଡ଼ିଏ ଉପସମିତି ଗଢ଼ି ଜଣେ ଜଣେ ମାତବରିଆ ସଭ୍ୟଙ୍କୁ ତାହାର ପରିଚାଳକ ଭାବେ ରଖାଗଲା । ଓଥଡ଼ା ଦାସ କୋଷାଧ୍ୟକ୍ଷ ହେଲେ । କର୍ମକର୍ତ୍ତା ବଛାବଛି ପରେ ବିଶଦ୍ ନିର୍ଦ୍ଦେଶନା ଦିଆଗଲା ।

ଉପସମିତିବାଲାଏ ବନ୍ୟା ସାହାଯ୍ୟ ସମିତି ନାମରେ ଏକ ରସିଦ ହଜାରେ ଛପାଇବା ଲାଗି ବହୁ ପ୍ରେସ୍ ଖୋଜିଗଲେ । ଶେଷରେ ଗୋଟିଏ କାଙ୍ଗାଳିଆ ପ୍ରେସ୍‌କୁ ବାଛିଲେ । ପରିଚାଳକ କହିଲେ—"ଦେଖ, ଯାହା ରେଟ୍ ନେଉଛ ନିଅ, ହେଲେ କାଲି ସକାଳୁ ଯେପରି ଆମେ କାମ ପାଉ । କାଗଜ ଓ ଛପା ଖର୍ଚ୍ଚ ମିଶାଇ ଗୋଟାଏ ଆଗୁଆ ବିଲ୍ କରିଦିଅ । ଭୁବନେଶ୍ୱରରୁ ସେଇଟା ପାଶ ହୋଇ ଅର୍ଡରଟା ଏଠା ଆକାଉଣ୍ଟାଣ୍ଟ ପାଖକୁ ଆସିବ । ଆକାଉଣ୍ଟାଣ୍ଟ ରସିଦ ବହି ଦେଖି କେସିଅର୍ ପାଖକୁ ପଠେଇ ଦେଲେ ସେ ସଙ୍ଗେ ସଙ୍ଗେ ଟଙ୍କାଟା ଦେଇ ଦେବେ; ବିଲ୍‌ଟା ଟିକଏ ଚଢ଼ା ରେଟ୍‌ରେ କର । ଚଣ୍ଡୀଗୁମୁଣ୍ଡାଙ୍କ ମୁହଁରେ ପକାଇବାକୁ । ହେବ । ଟଙ୍କାଟା ବି ଚଟାପଟ୍ ମିଳିଯିବ । ଏଡିକରେ କରୁଛି କାମ ଛୁଣ୍ଡିନି । ସମସ୍ତଙ୍କୁ ଖୁସି ରଖିଲେ ହଜାର ହଜାର ଟଙ୍କାର କାମ ତୁମେ ପାଇବ । ଦିଅ, ଶୀଘ୍ର ବିଲଟା କରିଦିଅ ।"

ପ୍ରେସ୍‌ବାଲା ଭାବିଲା ସାମାନ୍ୟ ରସିଦ୍ ହଜାରେ ପାଇଁ ଏତେ ସେଣାରେ ପାଣି ଉଠିବ ! ଅଫିସଟା ବଡ଼ ଅଫିସ ନିଶ୍ଚୟ । ପଚିଶ ଟଙ୍କା ବିଲ୍ କରି ଦେବ । ଚଣ୍ଡିଗୁମୁଣ୍ଡାଙ୍କୁ ଦଶଟଙ୍କା ଦେଇଦେବ । ଖୁବ୍ ହୋଇ ଖର୍ଚ୍ଚ ଦଶ ଯାଉ । ତୋ ପଠାସ ତିରିଶି ଟଙ୍କା ଲାଭ । କୋଉ ପ୍ରେସ୍ ବି କେବେ ଏମିତି କମେଇ ନ ଥିବେ । ଏମିତି ଶୋଚ୍ ବିଚାର କରି ପ୍ରେସ୍‌ବାଲା ୫୦ ଟଙ୍କାର ବିଲ୍‌ଟାଏ କରି ଦେଲା । ପରିଚାଳକ

ଖାଲ୍‌ଟି ଦେଖି କହିଲେ—"ହିଁ ଠିକ୍ ହୋଇଛି । ଆଗେ କଲିକତାରୁ ଛପା ହୋଇ ଆସୁଥିଲା; ୫୫-୬୦ ଟଙ୍କା ଭିତରେ ପଡ଼ୁଥିଲା । ବେଶି କିଛି ହୋଇନାହିଁ ।

ତହିଁଆରଦିନ ଓର ଉର୍ଣ୍ଣି ଜଣେ ଗରାଖ ବସିଥିବା ବେଳେ ପରିଚାଳକ ଆସି ରସିଦ ବହି ମାଗିଲେ । ଗରାଖକୁ ଟିକିଏ ଅପେକ୍ଷା କରିବାକୁ କହି ପ୍ରେସ୍‌ବାଲା ବହିତକ ଧରେଇ ଦେଲା । ପରିଚାଳକ ତାକୁ ସାଙ୍ଗରେ ଅଫିସକୁ ଯିବାପାଇଁ ଡାକିଲେ । ପ୍ରେସ୍‌ବାଲା ବ ଯାଏ କପରି ? ଶେଷରେ ବହିଗୁଡ଼ିକର ପ୍ରାପ୍ତିସ୍ୱୀକାର ପତ୍ରଟିଏ ଲେଖି ଦେଇ, ବହି ନେଇ ଗଲାବେଳେ ପରିଚାଳକ ଇଂରେଜିରେ 'ସେଣ୍ଟ୍ରାଲ୍ ରିଲିଫ୍ ଷ୍ଟେସନ୍' ସାଇନ୍‌ବୋର୍ଡ଼ ମରା ହୋଇଥିବା ଦୋ ମହଲା କୋଠାଘରର ସ୍ଥାନ ବତେଇ ଦେଲେ ଏବଂ କହିଲେ ଯେ ୧୧ଟାରୁ ୪ଟା ଭିତରେ ଯାଇ ଟଙ୍କା ନେଇ ଆସିବ, ନଚେତ୍ ତାଙ୍କ ପିଅନ୍ ଟଙ୍କା ଆଣି ଦେଇଯିବ ଆଉ ରେଭିନ୍ୟୁ ଷ୍ଟାମ୍ପ ଥିବା ପ୍ରେସ ରସିଦ୍‌ଟିଏ ନେଇଯିବ । ପ୍ରେସ୍‌ବାଲା ଖୁସିରେ ରାଜି ହୋଇଗଲା ।

ତା ପରଦିନ ପ୍ରେସ୍‌ବାଲା ସେଣ୍ଟ୍ରାଲ୍ ରିଲିଫ୍ ସେଣ୍ଟର୍ ଖୋଜୁଥିବା ବେଳେ ତେଣେ ନିକମାକ୍ଲବ ଓରଫ୍ ବନ୍ୟାସାହାଯ୍ୟ ସମିତି ଭିତରେ ଚାନ୍ଦା ଆଦାୟର ଯୋଜନା ଘମାଘୋଟ ଚାଲିଥାଏ । ଓଥଡ଼ା ଦାସର ପରାମର୍ଶ ଅନୁସାରୀ ଗୁଡ଼ାଏ ରସିଦ୦୍ର ଫାଳେ ଲେଖାଏଁ ଚିରି ଫୋପାଡ଼ି ଦେଇ ମୁଣ୍ଡା ରସିଦରେ ସମାଜର ଶୀର୍ଷସ୍ଥାନରେ ଥିବା ବଦାନ୍ୟ ବ୍ୟକ୍ତିମାନଙ୍କର ନାମ ଓ ଦାନର ପରିମାଣ ସ୍ୱରୂପ ଷାଠିଏ, ସତୁରି, ଶହେ ଆଉ କାହା କାହା ନାମରେ ପାଞ୍ଚଶହ ଟଙ୍କା ବ ଲେଖି ଦିଆଗଲା । ଓଥଡ଼ା ତାପରେ ଶିକ୍ଷାଦେଲା—"ଆଗ ଖୁବ୍ ସରୁ ନମସ୍କାରଟିଏ ପକେଇବ, ତା'ପରେ ସମସ୍ତେ କଲେଜଛାତ୍ର ବୋଲି ପରିଚୟ ଦେବ, ଆଖିରେ ଟିକିଏ ଟିକିଏ ପିପରମେଣ୍ଟ ମାରିଦେଇ ଲୁହ ଗଡ଼ାଇବ । ହଜାର ହଜାର ଶିଶୁ, ବାଳକ, ବୃଦ୍ଧ, ରୁଗ୍ଣ, ଅସହାୟ ଲୋକ କପରି ଦିନ ଦିନ ଧରି ଅନାହାରରେ ଓ ମେଲା ଥାନାରେ ପଡ଼ି ଟଳି ପଡ଼ୁଛନ୍ତି ତାହା ବର୍ଣ୍ଣନା କରିବ ଓ ଶିକାରକୁ ଜଡ଼ାଚେଲିଟର ଜୁଡ଼ୁ ବୁଡ଼ୁ କରିଦେବ । ସେ ଯେ ଦେଶ ମାତୃକାର ସୁଯୋଗ୍ୟ ସନ୍ତାନ, ଦେଶ ପାଇଁ ସେ ଯେଉଁ ଅସୀମ ତ୍ୟାଗ କରିଛନ୍ତି ତାହାର ତୁଳନା ନାହିଁ, ଦେଶର ବିପଦବେଳେ ତାଙ୍କର ହୃଦୟ ଯେପରି

ବିଚଳିତ ହୁଏ ତାହାର ପଟାନ୍ତର ନାହିଁ । ଅସହାୟ ଶିଶୁମାନେ କାପରି ଲୁହଭରା ଆଖିରେ ତାଙ୍କ ଆଡ଼କୁ ଚାହିଁଛନ୍ତି, ସେ ସବୁ କହିଲା ପରେ ଶ୍ରୋତାମାନଙ୍କର ହୃଦୟ ଅତି ନମ୍ରତାର ସହ ବଢ଼େଇ ଦେବ । ଦାତାମାନଙ୍କର ଦାନର ପରିମାଣ ଦେଖି ସେ ଯାବେବରେଇ ଗଲେ ଧନର ଅସାରତା, ଅନିତ୍ୟ ସଂସାରରେ ଦାନ ଧର୍ମର ଆବଶ୍ୟକତା ବିଷୟରେ ବିଜଣ ବକ୍ତୃତା ଦେଲା ବେଳେ ଆଉ ବିଜଣ ତେଲ ଢ଼ାଳିବାରେ ଲାଗିଥିବେ । ତେଲ ଠୁଁ ବଳି ଅମୋଘ ଅସ୍ତ୍ର ଆଉ କିଛି ନାହିଁ, ଯେଉଁଡ଼େ ବଡ଼ ଦେଉଠା ସିଏ ହୋଇ ଥାଉନା କାହିଁକି ଅଧଘଣ୍ଟାରେ ଆଣ୍ଠେଇ ପଡ଼ିବ । ଦେଖ ଭୁଲ୍ ଇଂରେଜୀ ଶବ୍ଦ କହିବ ନାହିଁ । କଲେଜ ଗ୍ରାଜ ନୁହେଁ ବୋଲି ଦାତାର ସନ୍ଦେହ ହୋଇପାରେ । ଏତିକି ହେଲେ ସବୁ ଭଣ୍ଡୁର ହୋଇଯିବ ।

ଏ ଶ୍ରେଣୀର ଅଧ୍ୟାପନା ଶେଷ କରି ଓଥଡ଼ା 'ବାଦ୍ୟଗୀତ' ଶ୍ରେଣୀର ଅଧ୍ୟାପନା ଆରମ୍ଭ କଲା । ହାରମୋନିଅମ୍‌ର ବେଲେଟା ମୂଷା କାଟି ଦେଇଥିଲା, ଗୋଟାଏ ଖଣ୍ଡିଆ ଜୋତାରୁ ଚମଡ଼ା ଖଣ୍ଡେ କାଟି, ତାକୁ ଛୁରିରେ ଘଷି ପତଳା କରି ଧୂଆ ମଇଦା ଅଠାରେ ତାକୁ ବୋଲି କଣା ଉପରେ ମାଡ଼ି ଦେଲା । ଶୁଖିଗଲାପରେ ହାମୋନିଅମ୍‌ଟି ମନ୍ଦ କାମ ଦେଲାନି, ଗୋଟିଏ କନାରେ 'ବନ୍ୟାସାହାଯ୍ୟ ପାଣ୍ଠି' ଲେଖା ହୋଇ ଆଗରୁ ସାଇତାହୋଇ ରହିଥିଲା । ତହିଁର ଦିକଡ଼ରେ ଦି'ଟା ବାଡ଼ି ଲଗେଇ ଦେଲା । ତାପରେ ଅଧ୍ୟାପନା ଆରମ୍ଭ କଲା—"ଦେଖ ତୁମେ ଦିଜଣ ଦୁଇ ବାଡ଼ିଧରି କନାକୁ ମେଲେଇ ଧରିବ, ଲୋକେ ଯେମିତି ସହଜରେ ପଢ଼ିପାରିବେ, ତୁ ହାରମୋନିଅମ୍ ବଜେଇ ହମିଦ ମିଆଁର 'ଖଣ୍ଡେଇତା ଘାଇର କରୁଣ କାହାଣୀ' ବହିରୁ ପଦେ ଲେଖାଏଁ ବୋଲିବୁ, ତାପରେ ସମସ୍ତେ ପାଳି ଧରିବେ, ତମେ ଦିଜଣ ଏ ଗୃହରର ଦୁଇମୁଣ୍ଡ ଧରିବ ।

ଯିଏ ଯାହା ଦେଉଥିବ ତାର ଗର୍ଭରେ ପଡୁଥିବ । ସମସ୍ତେ ମୁହଁ ଶୁଖାଇ ଆଖି ଛଳ ଛଳ କରୁଥିବ, ଗୋଟିଏ ଦୁଆର ମୁହଁରେ ଯାହା କିଛି ପାଇବା ପର୍ଯ୍ୟନ୍ତ କୋହ ଭଗ୍ନକଣ୍ଠରେ ଗୀତ ଗାଉଥିବ, କାହାକୁ କିଛି ମାଗିବ ନାହିଁ । ପାଇଲାପରେ ଆଗେଇବ, ଯାଅ; ଏଥର ବାହାର ଯାଅ ।"

ତାପରେ ସେ ଧରିଲା 'ସର୍ବହରା' ଶ୍ରେଣୀର ଅଧ୍ୟାପନା । ଏଥର ଗୁପ୍ତ ଭାବରେ ସବୁ ଧେଡ଼ ମୁରୁକୁଟିଆଙ୍କୁ ବାଛି କହିଲା—'ଦେଖ, ତମେ ସମସ୍ତେ ଜଣ ଜଣ ହୋଇ ଲୋକଙ୍କ ପାଖକୁ ଯିବ, ତୁ ଗୋଟାଏ ରାସ୍ତାରେ ଗଲେ ସେ ଆଉ ଗୋଟାଏ ରାସ୍ତାରେ ଯିବ । ଜଣେ ଯାଇଥିବା ରାସ୍ତାରେ ଆଉ ଜଣେ ଯିବନି । ଜଣକ ଘରକୁ ଯାଇ କାନ୍ଦ ବୋବେଇ କହିବ, ମୋ ଘର ସାଙ୍ଗେ ବାପା ମାଆ କୁଆଡ଼େ ଭାସିଗଲେ, ମୁଁ ଅନାଥ ହୋଇଗଲି । କିଛି ଟଙ୍କା ସାହାଯ୍ୟ ଦେଲେ ଯାହି ତାହି ଘରଟିଏ ଠିଆ କରେଇବି, ନ ହେଲେ ଖରା କାକରରେ ପଡ଼ି ପଡ଼ି ମୋ ବାପା ବୋଉଙ୍କ ପାଖକୁ ଚାଲିଯିବି । କହିଲା ବେଳେ କାନ୍ଦୁଥିବ । ଯାଅ, ଶୀଘ୍ର ଶୀଘ୍ର ଯାଅ, କାମରେ ଲାଗିଯାଅ ।"

ଶେଷକୁ ତଗଡ଼ା ତଗଡ଼ା କେତେଜଣଙ୍କୁ ପଢ଼େଇଲା "ଏଇ-ଖଦଡ଼ ଟୋପି ପିନ୍ଧି ପକାଅ, ଗୋଟାଏ କର୍ମୀ ବନିଯାଅ, ମନ୍ତ୍ରୀମାନେ ନିଜ ପାର୍ଟିର ଲୋକଙ୍କୁ ଲୋକପ୍ରିୟ କରାଇବା ପାଇଁ ସେମାନଙ୍କ ହାତରେ ବନ୍ୟାଞ୍ଚଳରେ ବାଣ୍ଟିବା ପାଇଁ ପ୍ରଚୁର ଖାଦ୍ୟଦ୍ରବ୍ୟ, ଲୁଗା, ଔଷଧ ଦେଉଛନ୍ତି, ତୁମେମାନେ ଯାଅ ସେମାନଙ୍କ ପାଖରେ ନସର ପସର ହୋଇ ସେମାନଙ୍କର ବୋଲହାକ କରିବ, ସେମାନେ ଦେଶ ପାଇଁ ଘରଦ୍ୱାର, ବେଉସା ଆଦି ଛାଡ଼ି ଦେଇ, ଭୋକ ଶୋଷ ଭୁଲି କପରି କାମ କରୁଛନ୍ତି, ଆଉ ଆମ ଦେଶ କିପରି ସେମାନଙ୍କ ଭଳି ପୁଅ ଜନ୍ମକରି ଧନ୍ୟ ହୋଇଛି ସେସବୁ କଥା କହି ଅନବରତ ତେଲ ମାଲିସ୍ କରୁଥିବ । ତେଲରେ ସ୍ୱୟଂ ଭଗବାନ ଆଣ୍ଠେଇ ପଡ଼ନ୍ତି, ସେ ଶଳେ ପର ଧନଖିଆ, ଦେଶଧନ ଲୁଟାଳି ଦେଶ ସେବକ ଭେକଧାରୀ ଠକଗୁଡ଼ାକ କିବା ଛାର । ଅଳ୍ପ ସମୟରେ କିଛି କିଛି ଅଂଶର ବଣ୍ଟାବଣ୍ଟି ଭାର ତୁମ ଉପରେ ପଡ଼ିଯିବ । ବାସ୍, ଯାହା ମିଳିବ ବୋହି ଆଣିବ ମନେ ରଖିଥାଅ । ସେ ଠକ ଜୁଆଚୋରଗୁଡ଼ାଙ୍କୁ ସବୁବେଳେ ତେଲରେ ଜୁଡ଼ୁବୁଡ଼ୁ କରି ରଖିଥିବ । ଏଥର ଯାଅ ସମସ୍ତେ କାମରେ ଲାଗିଯାଅ, ପାଖରେ କେହି କିଛି ରଖିବ ନାହିଁ । ସବୁ ଆଣି ମୋ ପାଖରେ ଗଇଠ କରୁଥିବ । ବନ୍ୟାକାମ ବଢ଼ିଲେ ଆମେ ଆମ କାମ ବଢ଼େଇ ଦେବା । କ୍ଲବର ଚଳାଚଳ ପାଇଁ କିଛି ଧନ ରଖିଦେଇ ବାକିତକ ସମାନ କରି ବାଣ୍ଟି ନେଇଯିବା । ଯାଅ, ମା ମଙ୍ଗଳା ନାମ ସୁମରଣା କରି କର୍ମସ୍ଥଳକୁ ବାହାରିଯାଅ ।"

ଯୋଜନା ଅନୁଯାୟୀ କାମ ଗ୍ଭଲିଲା । ଟଙ୍କା ପଇସା, ଗ୍ଭଉଳ ଲୁଗା ଆସି ଓଥଡ଼ା ପାଖରେ ଗଦାହେଲା । ଲୁଗା, ଗ୍ଭଉଳ, ଓଷଧ ଗୁଡ଼ାକ ଟଙ୍କାରେ ପରିଣତ କରିଦେବାକୁ ଅନେକ କହିଲେ କିନ୍ତୁ ଓଥଡ଼ା କହିଲା ବେପାରୀ ବୁଦ୍ଧି ଖଟେଇ ଚଢ଼ା ରେଟ୍ ବେଳେ ବିକ୍ରିକଲେ ବେଶି ପଇସା ହେବ । ସମସ୍ତଙ୍କ ମନକୁ କଥାଟା ପାଇଲା; ଚୁଡ଼ା ଗ୍ଭଉଳ କ୍ରମେ ଘରର ଏତେ ଜାଗା ମାଡ଼ି ବସିଲାଯେ କ୍ଲବ୍ କାମ ପାଇଁ ଥାନ ନଅଣ୍ଟ ହେଲା । ହେଲେ ସେଥିପ୍ରତି କେହି ନଜର ଦେଲେ ନାହିଁ ।

ଦିନେ ଦିପ୍ରହରରେ ଜଣେ ଧେଡ଼ି ସଭ୍ୟ କ୍ଲବ୍ ଘରକୁ ଫେରି ଆସି ଦେଖିଲା ଓଥଡ଼ା ସିଗ୍ରେଟ୍‌ଟାଏ ଟାଣୁଛି । ତାକୁ ଅସମୟରେ ଫେରିବା ଦେଖି ଓଥଡ଼ା ପଗ୍ଭରିଲା—"କରେ, ଏ ଅସମୟରେ ଫେରିଲୁ କାହିଁକି ? ତୋ ଗାଲ ଏମିତି ଓଉଫଡ଼ା ପରି ଫୁଲିଛି କାହିଁକି ?"

ବସିପଡ଼ି ସେ କହିଲା— 'ବେଳ ଖରାପ ପଡ଼ିଲେ ସବୁ ଭଣ୍ଡୁର ହୋଇଯାଏ । ଆଜ କାହା ମୁହଁ ଗ୍ଭହିଁ ଯାଇଥିଲି ଗୋଟାଏ ଫୁଟା ପଇସା ମିଳିଲାନି । ଗୋଟାଏ ଥାନରେ ଘର ଭାଙ୍ଗି ଟଲି, ଜମି ବାଲିରେ ପୋତି ହୋଇଗଲା, ବାପା ବୋଉ କୁଆଡ଼େ ଭାସିଗଲେ କହି ଜମେଇ ଆଣୁଥିଲି, ଶଳା ଗୋଟାଏ ଡାଗଡ଼ା ଲୋକ ଉଠିକି ଆସି ବ୍ରହ୍ମ ଗ୍ଭପୁଡ଼ାଏ ଦେଇ କହିଲା—"ହଇବେ ଶଳା ତାକୁ ତୋର ଘର ପରି ସଇତାନ ବଜାରରେ ! ହଇରେ ଶଳା ସହର ଭିତରେ ବଢ଼ିପାଣି ପଶିଲା କୁଆଡ଼ୁ ? ଆବେ ଶଳା ମୋତେ ଚହ୍ନି ପାରୁନୁ, କଚେରିରେ ପକେଟମାର କରୁଥିଲୁ ବେଳେ ତୋତେ ଥାନାକୁ ନେଇ ଛେଚିଥିଲି । ଶଳା ସେ ଛେଚା ଭୁଲି ଗଲୁଣୁ । ମୁଁ ପ୍ରାଣ ବିକଳରେ ସେଠାରୁ ପଳେଇ ଆସୁଛି । ଟଙ୍କାଟା ଦେଲୁ ମୁଁ ଆଗ କିଛି ଜଳଖିଆ ଖାଇନିଏ ।"

ଓଥଡ଼ା ଗମ୍ଭୀର ହୋଇଯାଇ କହିଲା—"ବଣ୍ଟାବଣ୍ଟି ହେଇଯାଉ ତାପରେ ନେବୁ । ଦଶଜଣଙ୍କ ପଇସା, ମୁଁ ଏକା ତୋତେ ଦେବି କେମିତି ?"

ସଇତାନ ବଜାରଆର ମୁଣ୍ଡ ବ୍ରହ୍ମଗ୍ଭପୁଡ଼ାରେ ବିଗିଡ଼ି ଯାଇଥିଲା । ଓଥଡ଼ାର ନାସ୍ତି ବାଣିରେ ଏକାବେଳକେ ତାତି ଗଲା । ତା ମୁହଁରୁ ବାହାରି ପଡ଼ିଲା—"ତୁ ଶଳା ବସିରହି ଦଶଜଣଙ୍କ ପଇସାରେ ସିଗ୍ରେଟ୍ ଟାଣିବୁ ଆଉ ଆମେ ଖଟି ଖଟି ମାଡ଼ ଖାଇ ପେଟକୁ ଗଣ୍ଡାଏ

ଖାଇ ପାରିବୁନି ? ନମା ବେଳକୁ ଦଶଜଣଙ୍କର ପଇସା, ଆଉ ଚୋ ବେଳକୁ ଜଣଙ୍କର । ଶଳା ମୋତେ ମଫସଲ ଓଲୁ ସମଝିଛୁ—ନା ?"

ଓଥଡ଼ାକୁ ପାଲଟା ଜବାବ ପଇଁଚିଲା ନାହିଁ । ସ୍ୱଗରେ ପାଟସାଇ କହିଲା—"ଶଳାକୁ ଦେବ ହ ଚଣ୍ଡିଆ ଯେ ମାଟି କାମୁଡ଼ ପଡ଼ିବୁ । ମୋତେ କଅଣ ବୋଲି ପାଇଛୁ କରେ ! ଯାବେ ଶଳା ଯା, ମୁଁ ପଇସାଟାଏ ବି ଦେବିନି, ତୁ ମୋର କ ଆଲୁଅ କରି ପକେଇବୁ ପକା ।"

ସଇତାନ ବଜାରିଆର ମୁଣ୍ଡ ଓ ପେଟ ଜଳୁଥିଲା । ଓଥଡ଼ାର ଅପମାନିଆ କଥା ସେଥିରେ ପେଟ୍ରୋଲ ଢ଼ାଳିଲା । ଅଧିକ କିଛି ନ କହି ସେ ସେଠାରୁ ଉଠି ଦମ ଦମ ହୋଇ ଗ୍ଳଲିଗଲା । ଗଲାବେଳକୁ ମନକୁ ମନ କହି ହେଉଥାଏ, "ଶଳା ଚୋର ଏତେ ହିମାକ୍, ରହ ଶଳା ଦଉଛି ପାନେ । ମୁଁ ଯଦି ଖାଇବାକୁ ନ ପାଇଲି ତେବେ କାହାକୁ ମଉଜ କରିବାକୁ ଦେବିନି ।"

ସେଦିନ ସନ୍ଧ୍ୟାବେଳେ ନିକମା କ୍ଲବରେ ତାଆସ, ଚେସ୍, ଲୁଡ଼ୁ ଖେଳର ଧୂମ ଚୁଣ୍ଡୁ ଥାଏ । ବଗ ପକୁଡ଼ି ବୁହା ଗ୍ଳଲିଥାଏ । ହଠାତ୍ ସୁସୁରିଟାଏ ବାଜି ଉଠିଲା । କଅଣ ହେଲା ବୋଲି କେତେଜଣ ପଦାକୁ ଗ୍ଳହିଁ ଦେଖନ୍ତି—ଘରକୁ ଲାଠିଆଲ ପୁଲିସ୍ ଘେରାଉ କରିଛନ୍ତି । ରିଭଲ୍‌ଭର ହାତରେ ଧରି ଜଣେ ପୁଲିସ୍ ଇନ୍‌ସ୍‌ପେକ୍ଟର ଓ'ତିନି ଜଣ ସବ୍‌ଇନ୍‌ସ୍‌ପେକ୍‌ଟରହାଜର; ଇନ୍‌ସପେକ୍‌ଟର କହିଲେ— "ଖବରଦାର୍ ! ଖସି ପଳେଇବାକୁ ଚେଷ୍ଟା କଲେ ଗୁଳିରେ ଖପୁରି ଉଡ଼େଇ ଦେବ ।"

ଗୁଳି ନାଁ ଶୁଣି ସମସ୍ତଙ୍କର ପିଳେହି ପାଣି ହୋଇଗଲା । ସମସ୍ତେ ଚୂପ୍ ଗ୍ଳପ ହୋଇ ରହିଲେ । କେତେଜଣ ତରବର ହୋଇ ବାକିଥିବା ବଗ ପକୁଡ଼ି ଗୁଡ଼ାକ ଗିଳି ପକାଇଲେ ।

ସେମାନଙ୍କ ଉପରେ ବସ୍ତିବାଲାଏ ଆଗରୁ ଚିଡ଼ଥିଲେ । ଫଳରେ ପୁଲିସ୍ ଘର ଖାନ୍‌ତଲାସ ବେଳେ ସାକ୍ଷୀ ରୂପେ ଠିଆ କରେଇବାକୁ ବହୁତ ଲୋକ ପାଇଲେ । ଗୁନ୍ଦା ରସିଦ୍ ବହି, ହଭିନ୍ନ ନାମ ଫଳକ, ଟଙ୍କା ବାକ୍‌ସ, ଗୁନ୍ଦିଲ, ଚୂଡ଼ା, ଲୁଗାପଟା ସବୁ ଜବତ କରାଗଲା । ଓଥଡ଼ା

ସମ୍ଭାଳି ନ ପାରି କହିଲି—"ଆମର ଦୋଷ କଅଣ, ଆମେ ବନ୍ୟା ପ୍ରପୀଡ଼ିତ ଲୋକଙ୍କ ସାହାଯ୍ୟ ପାଇଁ ସଂଗ୍ରହ କରିଛୁ ।"

ଇନସ୍‌ପେକ୍ଟର ଗର୍ଜି ଉଠିଲେ—"ଚୁପ୍ ବେ ଶଳା । ହଇବେ ଶଳେ ତୁମେ ବନ୍ୟା ପ୍ରପୀଡ଼ିତ ଲୋକଙ୍କ ସାହାଯ୍ୟ ପାଇଁ ଏ ସବୁ ସଂଗ୍ରହ କରିଛ ନା ଭବିଷ୍ୟତ ସାହାଯ୍ୟର ବାଟ ବନ୍ଦ କରିବା ପାଇଁ । ଲୋକେ ତୁମ ଗୁଣଗ୍ରାମ ଜାଣିଲେ ଆଉ କାହାକୁ ଚାନ୍ଦା ଦେବେ ନା ହଉ ହଉ, ତୁମ କାମ ଆମେ ବଢ଼େଇ ଦେବା, ଜିନିଷ ଗୁଡ଼ାକ ବନ୍ୟା ଅଞ୍ଚଳକୁ ପଠେଇ ଦେବା । ଆଉ ତୁମେମାନେ ବେଶି ପରିଶ୍ରମ ନ କରି ମାମୁଁ ଘରେ ବିଶ୍ରାମ ନେବ ଚାଲ ।"



# ଯୌତୁକନଶା କାଟେଣୀ ଔଷଧ

'ତୁ କପରୁ ସୋଡ଼୍‌କାଏ ଦେଇ ନଷ୍ଟ ପଗୃଶଲ, ହଇରେ ଜଗୁଲି ! ପାଣ ଠିକ୍ ହେଲା ?'

ଜଗୁଲି ବିରକ୍ତ ହୋଇ କହିଲା—"ଜହନା ଭାଇ ଏ ବରପିତାମାନଙ୍କ ଦାଉ । ଗୋଟାଏ ଗୋଟାଏ ପୁଅ ପୈଦା କରି ପକେଇଛନ୍ତି ବୋଲି ସେମାନଙ୍କର ଗୋଡ଼ ଆଉ ଭୂଇଁରେ ଲାଗୁନି, ଏକାବେଳକେ ଶୂନ୍ୟରେ ଭାସୁଛନ୍ତି । ଶଳେ ନିଜ ନିଜକୁ ନେପୋଲିଅନ୍‌ଙ୍କ ଗୋସେଇଁ ବାପ ବୋଲି ମନେ କରୁଛନ୍ତି । ସେମାନଙ୍କର ଇଚ୍ଛା ସବୁ କନ୍ୟା ବାପମାନେ ବେକରେ ପାଲ ଦଉଡ଼ି ଆଉ ଦାନ୍ତରେ କୁଟା ଦେଇ ଧାଡ଼ି ବାନ୍ଧି ଲମ୍ବ ହୋଇ ସେମାନଙ୍କର ଗୋଡ଼ତଳେ ପଡ଼ୁଥାନ୍ତେ ଆଉ ଦିନ ରାତି ସ୍ତୁତି କରୁଥାନ୍ତେ । ଶଳେ ପୁଅ ଗୋଟାଏ ଗୋଟାଏ ପୈଦା କରିଛନ୍ତି ବୋଲି ଏକାବେଳକେ ସ୍ୱର୍ଗର ଦେବତା ବନି ଯାଉଛନ୍ତି, ଆଉ ଆମେ ଗୋଟାଏ ଗୋଟାଏ ଝିଅ ପୈଦା କରିଛୁ ବୋଲି ନରକର ପୋକ ହୋଇଯାଉଛୁ । ଆମେ ସେମାନଙ୍କୁ ଗନ୍ଧାଉଛୁ । ଶଳେ ଏଡ଼େ ହାରାମ, କହି ହବନି । ଯେତେବେଳଯାଏ ଜାଣି ନ ଥିବେ ଆମେ କାହିଁକି ଯାଇଛୁ ସେତେବେଳ ଯାଏ ବେଶ୍ ଭଲରେ କଥାବାର୍ତ୍ତା, ହସ ଖୁସି, ଆଦର ସବୁ କରନ୍ତି । ଯେମିତି ଜାଣିପିବେ ତାଙ୍କ ପୁଅଙ୍କ ବିଷୟରେ ଏକ ପ୍ରସ୍ତାବ ନେଇଯାଇଛୁ ଶଳାଙ୍କ ଚେହେରା ଆଉ ଦେଖେ କିଏ । ଚିତଳମାଛ ପରି ଶଳେ

ପଟ୍‌କର ଲେଉଟି ପଡ଼ନ୍ତି । ସଙ୍ଗେ ସଙ୍ଗେ ମହାଜନ-ଖାତକ । ଜଜ୍‌ସାହାବ ଆସାମୀ ଅଥବା ଲେଖି ଡାକ୍ତର ଗରିବ ରୋଗୀର ବାତାବରଣ ସେଠି ସୃଷ୍ଟି ହୋଇଯାଏ । ନବାବଙ୍କ ବୋପା ଭଳିଆ ଏମିତି କଥାବାର୍ତ୍ତା ଆରମ୍ଭ କରିଦିଅନ୍ତି ଯେ ସେଠି ମୁହୂର୍ତ୍ତେ ଆଉ ବସିବାକୁ ଇଚ୍ଛା ହୁଏନି । ଶଳେ ବିଲକୁଲ୍ ଭୁଲି ଯାଆନ୍ତି ଯେ ତାଙ୍କୁ ଜଣେ ଝିଅଟାଏ ଦେଇଥିଲା ବୋଲି ସେ ଆଜି ପୁଅଟାଏ ପୈଦା କରି ଏତେ ଗଉଁ ଦେଖାଉଛନ୍ତି । ମୋତେ ଯଦି ଦିନେ ପାଇଁ କିଏ ଯଦି ମାଉସେତୁଙ୍ଗ୍ ବନେଇ ଦିଅନ୍ତା ତେବେ ଏ ଲୋଭୀ ବର ପିତାଗୁଡ଼ାଙ୍କୁ ଧୋଷାଡ଼ି ଆଣି ଡ଼ୋ ଡ଼ା କରି ଦିଅନ୍ତି । ଓଃ ! ଶଳେ ମୋତେ ବିଷପରି ଲାଗୁଛନ୍ତି ।

ଜଗୁଲିର ପ୍ରବଳ କ୍ରୋଧକୁ ଶାନ୍ତ କରିବା ଲାଗି ନଟ କହିଲା— “ଆହା ଏ ସାମାନ୍ୟ କଥାରେ ଏତେ ରାଗିଗଲେ ଚଳିବ ନା । ତୁ ଯେଉଁମାନଙ୍କୁ ଡ଼ୋ ଡ଼ା କରି ଦେବାକୁ ଚାହୁଁଛୁ, ସେମାନେ ତ କେବଳ ବର ପିତା ନୁହନ୍ତି । ସେମାନଙ୍କ ଭିତରେ ଅନେକେ ଉଭୟ ବର ଓ କନ୍ୟା ପିତା ଥିବେ । ସେମାନଙ୍କୁ ଡ଼ୋ କରିଦେଲେ ସେମାନଙ୍କର କନ୍ୟାମାନଙ୍କ ଅବସ୍ଥା କଅଣ ହେବ, ଭାବୁଛୁ ତ ? ସେ ଡ଼ୋ ଡ଼ା କଥା ମନରେ ପୂରାନା । ଅଚ୍ଛା ତୁ ଚନ୍ଦ୍ର ପୁଅ ବିଷୟରେ ବୁଝିଥିଲୁ ?”

‘‘ଆରେ ବାବା, ସେ ବାପପୁଅ ଦୁହିଁଙ୍କ ଗୁଣଗରାକୁ ଦଣ୍ଡବତ । ଆମ ପୁରୋହିତଙ୍କୁ ବାପ ପୁଅ ଦୁହେଁ ମିଶି ତନ୍ତ୍ରୀର କଣ୍ଟା ବନେଇ ଦେଲେ । ବାପ ପଠେଇ ଦେଲା ପୁଅ ପାଖକୁ ପୁଅ ପଠେଇ ଦେଲା ବାପ ପାଖକୁ । ପୁଅ କଲେଜରେ ପଢ଼ିଲା ବେଳେ ଯୌତୁକ ବିରୁଦ୍ଧରେ ଖୁବ୍ ଲେକ୍‌ଚର୍ ଝାଡ଼ୁଥିଲା । ସେତିକି ଶୁଣିଥିଲି ବୋଲି ପୁରୋହିତଙ୍କୁ ପଠାଇଥିଲି । କଲେଜ ବାହାରକୁ ଆସିବାମାତ୍ରେ ଏମିତି ପୁଣି ବଦଳି ଯାଆନ୍ତି । ପୁଅ ଚାହୁଁଛି ସେ ନିଜେ ଭଦ୍ର ସାଜି ଶେଉଳି ମାଛ ଭଳି ଗହିରା ପାଣିରେ ଲୁଚି ରହିବ । ବାପ ଦରଦାମ କଷୁ । ବାପ ବି ଗୋଟାଏ ଶେଉଳି । ସେ ଭାବୁଛି ଟୋକା ଦାବୀପତ୍ରଟା ତିଆରି କରୁ । କଥାଟା ଟୋକାରେ ଟୋକାରେ ଯିବ । ସେ ପାଞ୍ଚ ଜଣଙ୍କ ପାଖରେ ବସାଉଠା କରୁଛି, ସେ ଚାହ୍ନା ପଡ଼ିବ କିଆଁ । ଠାକୁରଙ୍କ ବହୁତ ବେଶି ଦଉଡ଼ା ଦଉଡ଼ି କରିବାକୁ ପଡ଼ିଲାନି । ଟୋକାର ଗୋଟାଏ ସାଙ୍ଗଠୁଁ ଶୁଣିଲି ଯେ ସେ ଟୋକା ଗୋଟାଏ ତାଲିକା ଧରି ବସିଛି । ତାଲିକା ଯିଏ ପୂରଣ କରିବ ତା’ରି ଝିଅକୁ

ବାହା ହେବ । ତାଲିକାରେ ଅଛୁ ସାତ ହର୍ଷ ପାଓ୍ବାର ରସ୍ନେଲ୍ ଏନ୍‌ଫିଲଡ଼୍ ମଟର ସାଇକେଲ, ସୋନି ଟାଞ୍ଜିଷ୍ଟର, ସେ୍‌ଟଲେକ୍‌ସ୍ ଶଷ୍ଟଓ୍ୟାର୍, ପ୍ରେଷ୍ଟଇନ୍ ପ୍ରେସର କୁକର୍, ପର୍କର ୫୧ ଫାଉଣ୍ଟେନ୍ ପେନ୍ । ଷ୍ଟେନ୍‌ଲେସ୍ ଷ୍ଟିଲ ବାସନ ୪ ସେଟ୍, ଗଡ଼୍‌ରେଜ୍ ଷ୍ଟିଲ ଫନଚର ୨ ସେଟ୍ । ଏତକରେ ମୁଁ ରାଜି ଥିଲି । ହେଲେ ସେ ଲୋଖି ବାପ ପୁଅ ଏହା ଉପରେ ଗ୍ରସ୍ତା ଖର୍ଚ୍ଚ ଦଶ ହଜାର ଟଙ୍କା । ଗୋଟାଏ ଘର ତାଙ୍କର ଅଧା ହୋଇ ପଡ଼ି ରହିଛି । ଏ ଟଙ୍କାରେ ତାକୁ ପୁରା କରିବେ । ଏ ଶଳା କସେଁଇଙ୍କ ସଙ୍ଗେ ବନ୍ଧୁତା ବାନ୍ଧିବ ? ଠିକ୍ ବାଘ ଛେଳି ବନ୍ଧୁତା । ଛେଳିର ଜୀବନ ଯିବ ଆଉ ବାଘର ପେଟ ପୂରିବ । ଆଉ କେଇଟା ଜାଗା ଆଖିରେ ଅଛୁ, ଯଦି ସେଥିରେ ବିଫଳ ହୁଏ ତେବେ ଝିଅ କହିଲା କଥା କରିବ ?"

"ଝିଅ କଅଣ କହୁଛି ଯେ ?"

"ସେ କହୁଛି ଯେଉଁ ଟଙ୍କା କୁକୁର ଶାଗୁଣାଙ୍କ ମୁହଁରେ ଫକାଇବାକୁ ଯାଉଛ ତାକୁ ତାର ପଢ଼ାରେ ଖର୍ଚ୍ଚ କଲେ ସେ ଗୃହକର୍ତ୍ତ୍ରୀ କରି ପୁଅପରି ମୋତେ ପୋଷିବ । ବହୁ ଅଧ୍ୟାପିକା, ଡ଼ାକ୍ତରଣୀ, ଲେଖିକା ଚିରକୁମାରୀ ହୋଇ ରହିଛନ୍ତି । ସମାଜରେ ଉଚ୍ଚା ସମ୍ମାନ ପାଉନାହାନ୍ତି । ଗୋଟାଏ ନ୍ୟାଇଁ ଖର୍ଦ୍ଦିକରି ନ ଧାଉଲେ ଶେଷରେ ସେଇଆ କରିବ ।"

ଆଚ୍ଛା ତୁ ଗୋଟାଏ କାମ କର, ଝିଅ ବାହା ଦେଇ ଆଣ୍ଟୁ ଗଣ୍ଠି ଦରଜ ହୋଇଥିବା ବର ପିତା ଖୋଜ ଖୋଜ ଯା । ଭୁକ୍ତଭୋଗୀ ହୋଇଥିବାରୁ ସେ ତୋ ଦୁଃଖ କଥା ବୁଝିବ । ତୋ ଆଣ୍ଠୁ ଗଣ୍ଠି ଦରଜ କରାଇବ ନାହିଁ ।"

"ସେତକ ଆଉ ବାକି ରଖିଛୁ ନା, ଚଣାହାଟର ଦନେଇ ଦାସ ଘରକୁ ଯାଇଥିଲି । ଠିକ୍ ତୋ କହିବା ମୁତାବକ ଲୋକ । ଶଳାଟା ବାଘଠୁଁ ବଳେ । ଅଙ୍ଗେ ନଭେଇ ସେ ନରମିବ କଅଣ ଓଲଟା ଡାହା କଂସେଇ ପାଲଟିଛି । ମୁହଁରୁ ଲାଜ ସରମ ପୋଛି ଖୋଲା ଖୋଲି କହୁଛି—ସେ ତା ଝିଅକୁ ଯାହା ଦେଇଛି ତା'ର ଡବଲ ପୁଅ ମାରଫତ୍‌ରେ ଆଦାୟ କରିବ, କରିବ, କରିବ । ଆଦାୟ ନ ହେଲେ

ପୁଅକୁ ଓଅଡ଼ା ରଖିବ । ଆଉଜଣକ ପାଖକୁ ଯାଇଥିଲି ଯେ ସେ କହିଲା—ପୁଅକୁ ଖୁଆଇ ପିଆଇ ପାଠ ପଢ଼େଇ କେତେ କଷ୍ଟରେ ମଣିଷ କରିଛୁ, ତା ପାଇଁ ସବୁକିଛୁ ଖର୍ଚ୍ଚ କରିଦେଇଛୁ । ତା'ର ଦାମ୍ ଉଉଲ ନପାଇଲେ ତାକୁ ଛାଡ଼ିଦେବା କାହିଁକି ? ରାଗ ଲାଗିଲା—ମନେ ମନେ ଭାବୁଥାଏ—ଶଳା ଖାସିଟାଏ ପେଦା କରିଛୁ । ଖୁଆଇ ପିଆଇ ମୋଟା-ସୋଟା କରିଛୁ ଓଜନ କରି ବିକ୍ରି କରିବ । କହେ। ତମେ ଯେମିତି ପୁଅକୁ ଖୁଆଇ, ପିଆଇ, ପଢ଼େଇ ମଣିଷ କରିଛ, ମୁଁ ସେହିପରି ଝିଅକୁ ଖୁଆଇ, ପିଆଇ ପଢ଼େଇ ମଣି‌ଷ କରିଛୁ । ଆରେ ଶଳାଟି ! ତୋତେ ଦେବି କାହିଁକି ? କ'ଣ ଝିଅ ଜନମ କରିଥିଲି ବୋଲି ଜୋରିମାନା ? ପୁଅକୁ ହାଟରେ ଧରି ବସିଥା, କଳା-ପୋତେଇରେ ଧର୍ମ ବନିଥିବା କେହି ଗରାଖ ଆସିଲେ ବିକ୍ରି କରିବୁ । ଆଉ ଗୋଟାଏ ଛତରଖିଆ ଲେଭୀ ମୋର ପଚେଇବାର ଦେଖି କହୁଛି ଯେ ମୁଁ କଅଣ ତା ପୁଅକୁ ଦଉଛି ? ମୁଁ ଦେବି ମୋ ଝିଅକୁ, କୁଛୁ କୁଛୁ ହେବାର କାରଣ କଅଣ । ପଛେ ନଅନ୍ତା, ହେଇ ହେଇ ଆଗେ ନେବ । ସେ ଶଳାଟି ଇଙ୍ଗିତରେ ମୋତେ ହିନ୍ଦୁକୋର୍ଡ଼ ବିଲ୍ କଥା କହୁଛି । ଶଳେ ମୋ ମୁଣ୍ଡ ଗରମ କରିଦେଲେଣି । ବୋପାଗୁଡ଼ାକ ଲେଭୀ ପାଲଟିଲେ ଟିକିଏ ରକ୍ଷା ଥିଲା । ବୟସ ହୋଇ ଆସିଲାଣି ଖଟି ଖାଇବାକୁ କଷ୍ଟ ହେବ ତେଣୁ ପୁଅକୁ ସିନ୍ଧକାଠି ବନେଇ ଲୁଟି ଖାଇବାକୁ ଇଚ୍ଛା ହେବାରେ ଆଶ୍ଚର୍ଯ୍ୟ ନାହିଁ । କିନ୍ତୁ ଏ ଭେଣ୍ଡିଆ ଟୋକାଗୁଡ଼ାକ ଏଡ଼କ ଲେଖି ପଢ଼ିଲେଣି ! କରେ ବାବୁ ତୁମର ବାହାପିଠି ନିଜ ଅର୍ଜନରେ ଯଦି ସ୍କୁଟର୍‌ଟାଏ କିଣି ପାରିବାର ସାହସନାହିଁ ତେବେ ପର ତଣ୍ଟିଚିପି ସ୍କୁଟର୍‌ଟାଏ ଜବରଦସ୍ତି ଆଦାୟ କରିବାକୁ ଟିକିଏ ସଙ୍କୋଚ ଲାଗେନ । ଏ ଟୋକାଡାକୁ-ଗୁଡ଼ାଙ୍କର ଏତିକ ଟିକିଏ ଚେତା ପଶେନ—ଯେତେବେଳେ ଫଟ ଫଟ ହୋଇ ସ୍କୁଟର୍‌ରେ ବୁଲିଯାଆନ୍ତି ସେତେବେଳେ ତାଙ୍କୁ ଜାଣିଥିବା ଲୋକେ ପଛରେ କୁହାକୋହି ହୁଅନ୍ତି—"ଉଁଃ ! ଶଶୁର ଘରେ ଡାକୁଗିରି କରି ଆଣିଥିବା ଫଟ ଫଟିଆରେ ଚଢ଼ି ଏମିତି ଗୁଡି ଫୁଲା ! ବେହିଆ ଥୋବରାକୁ ସରମ ଲାଗୁନି । ଶଳାଟିର ନାଶ ବି ନାହିଁ । ଶଶୁର ଘରୁ କଣଟାଏ ନେଇଆସି, ନାକରେ ମାଡ଼ି ହାମରି ନାଶ ବୋଲି ଦେଖେଇ ହେଉ । ହା ଶଳା ଏ ଡାକୁଦଳଙ୍କ ମୁଣ୍ଡରେ ବାଧାଚଡ଼କ ପଡ଼ୁ ।"

ଜଗୁଲିର ନାକ୍ଷମୁଣ୍ଡାରୁ ଏ କଥାଗୁଡ଼ାକ ବାହାରି ନଠକୁ ବି କେତେକ ପରିମାଣରେ ଚହଟେଇ ଦେଇଥାଏ । ସେ ବି ଟିକିଏ ଉତ୍ତେଜିତ ହୋଇପଡ଼ି କହିଲା—"ଏ ଯୌତୁକ ଉକେଇଛି ନିଶା ଅଧିକାଂଶ ବର ଓ ବରପିତାଙ୍କୁ ଘାରିଛି । ଆମର ବି ଊଣା ଭୁଲ୍ ନାହିଁ । ସବୁବେଳେ ଧାଉଁଛୁ ବଡ଼ ଲୋକ ଘରେ ଝିଅ ଦେବାକୁ । ଯେତେ ବଡ଼ ଘର ଦେଖିବ ଅଧିକାଂଶଠି ଟୋକାଗୁଡ଼ାକ ମଦୁଆ, ଗଣ୍ଡୁଆ, ନୈତିକତା ବିବର୍ଜିତ । ଝିଅ କେବେହେଲେ ସେଠି ପ୍ରକୃତ ଆନନ୍ଦ ପାଇବନି । ବନ୍ଧୁ, ସ୍ନେହବି ସେଠୁଁ ମିଳିବନି । ଗରିବ ଘର ହେଉ ପଛକେ ସଚ୍ଚରିତ୍ର, ବୁଦ୍ଧିମାନ୍ ପିଲାଥିଲେ ସେଇଠି ଝିଅ ଦେବା ଉଚିତ । ସେମାନେ ଦର କଷାକଷିର ନାଆଁ ଧରିବେନି ।"

" ଭାଇ ଆଉ କହନା—ମୋ ଝିଅ କିଏ ତୋ ଝିଅ କିଏ । ଗୋଟିଏ ଗରିବ ଘର ହେଉ ପଛକେ ଯୋଗାଡ଼ କରିଦେଲୁ । କପାଳରେ ଥିଲେ ସେଇ ପୁଅ ପୁଣି ଜଜ୍, କଲେକ୍ଟର ହୋଇଯାଇ ପାରିବ । କପାଳରେ ନ ଥିଲେ ବଡ଼ ଧନୀ ଘର ପିଲା ମଦ, ମାଇକିନିଆରେ ସବୁ ସମ୍ପତ୍ତି ଉଡ଼େଇ ଘାସ କାଟିବ । ତୁ ଶୀଘ୍ର ଗୋଟିଏ ଘର ଠିକ୍ କରିଦେ—ମୁଁ ଦରମରା ହେଲିଣି ।"

"ଆଜ୍ଞା ଆମେ ଦୁହେଁ ସମୁଦି ବନିଲେ କେମିତି ହୁଅନ୍ତା ?"

"ମୁଁ ବି ସେଇଆ ମନେ ମନେ ଭାବୁଥିଲି, ମୋ ମୁହଁ କଥାଟା ତୁ କହିଦେଲୁ । ଆଃ, କଥାଟିଏ କହିଲୁନି ଯେ ମୋ କାନରେ ଅମୃତ ଢାଳିଦେଲୁ । ବଞ୍ଚେଇ ଦେଲୁ ମୋତେ । ଆଉ—"

"ଆଉମାନେ—ବୁଝି ପାରୁଛୁ । ତୋ ମୁଣ୍ଡ ଯୌତୁକ, ଯୌତୁକ, ହୋଇ ବିଗିଡ଼ି ଯାଇଛୁ । ପଇସାଟିଏର ବି ଯୌତୁକ ବନ୍ଦ । ଢୋଲ, ଗୋସଣି, ଅଜଗଣ୍ଡିଆ ଭୋଜିଭାତ ସବୁ ବନ୍ଦ । ଆମକୁ ଆଦର୍ଶ ଦେଖାଇବାକୁ ହେବ । ବନ୍ଧୁ ବାନ୍ଧବାରେ ଯେପରି ପଇସାଟିଏ ବି କରଜ କରିବାକୁ ନପଡ଼େ । ହଁ ଆଉ ଗୋଟିଏ କଥା । ଗୋଟାଏ ବଡ଼ଲୋଭୀ ବର ଓ ତା ବାପାକୁ ଆଗୁକରି ପାଠ ଶିଖେଇବାକୁ ହେବ । ଏମିତିଆ ପାନେ ଯୌତୁକ ନିଶା କାଟେଣି ଔଷଧ ଚଢ଼େଇ ଦେବାକୁ ହେବ, ଯେମିତି ଜୀବନଭର୍ ଆଉ ତା ନାଁ ଧରିବନି, ଆଉ ବି ଅନ୍ୟମାନଙ୍କର ମନରେ ଟିକିଏ ଚେତା ପଶିବ ।"

ମଜଗୁଲ ମନରେ ଦୁହେଁ 'ଯୌତୁକ କଣା କାଟେଣି' ଔଷଧ ଉପାଦାନ ସଂଗ୍ରହ ଓ ତିଆରିରେ ଲାଗି ପଡ଼ିଲେ ।

× × × ×

ଶିକାର ଟାଏ ଯନ୍ତ୍ରରେ ପଶିଲା ବୋଲି ଭାବି ପଦ୍ମନାଗ ବାବୁ ଜଗୁଲ ବାବୁଙ୍କୁ ଅତି ଆଦରରେ ପାଖରେ ବସାଇ ପୁଅର ପ୍ରଶଂସା ପେଡ଼ି ଖୋଲି ଦେଲେ—"ଆମ ପୁଅ ଶିଶୁନାଗ ଆଇ. ଏସ ହୋଇଗଲେ । ସମାଜରେ ପଢ଼ିଥିବ ?"

,'ହଁ, ହଁ, ପଢ଼ିଛୁ ।''

"ଆମ ଶିଶୁନାଗ ଏମିତି ବଢ଼ିଆ ଉତ୍ତର ଦେଲା ଯେ ସାହେବ ଖୁସିହୋଇ ତାଙ୍କୁ ଆଗ ଆଇ ଏସେ ଦେଲା ।"

"ହଁ ହଁ ଆଉ ଅନ୍ୟମାନେ ସମସ୍ତେ ପଛରେ ପାଇଲେ ।"

"ଖବର ପାଇଛୁ ଯେ ସାହେବ କୁଆଡେ ତାଙ୍କୁ କଟକର କଲେକ୍ଟର କରି ପଠାଉଛୁ ।"

"ହଁ ହଁ ମୁଁ ତ ସେଇଆ ଶୁଣିଛୁ, ସାହେବ ଅନ୍ୟମାନଙ୍କୁ ଟ୍ରେନିଂ ପାଇଁ ପଠେଇ ଦେଲା ଆଉ ଆପଣଙ୍କ ପୁଅଙ୍କର ଟ୍ରେନିଂ ଦରକାର ନାହିଁ ଜାଣି କଟକର କଲେକ୍ଟର୍ କରି ପଠାଇ ଦେଲା ।"

"ଭାବୁଛୁ ଏ ଘରଟାକୁ ସାଙ୍ଗେ ସାଙ୍ଗେ କୋଠା ନ କଲେ ସେ ଚଳପ୍ରଚଳ ହୋଇ ପାରିବେନି ।"

"ହଁ, ହଁ ସେଇଟା ଶୀଘ୍ର କରି ପକେଇବା ଦରକାର । ଆଜିକାଲି କଟକରେ ଘର ଅବସ୍ଥା ଯେମିତି, କାଲେ କଲେକ୍ଟରଙ୍କୁ କୋଠି ନମିଳିବ ? ଇଆଡ଼ୁ ପ୍ରସ୍ତୁତ ହୋଇଯିବା ଦରକାର ।"

"ପଶ୍ଚିମକୁ ଲାଗି ଗୋଟାଏ ମଟର ଗାଡ଼ି ଘର ତିଆରି ହେବ ।"

"ହଁ, ହଁ ସେତିକି ନ ହେଲେ କଲେକ୍ଟର୍ ସାହେବଙ୍କ ମଟରଗାଡ଼ି କଅଣ ଖରା ବର୍ଷାରେ ସିଝିବ ? ଆଗ ମଟର ଘର ତାପରେ ନିଜେ ରହିବା ଘର ।"

'ଗୋଟିଏ ନୂଆ ଆମ୍ବସଡ଼ା ମଟରଗାଡ଼ି କିଣା ହେବ ।'

"ହଁ ହଁ କଲେକ୍ଟରଙ୍କ ପାଇଁ ଆମ୍ବସଡ଼ା ଗାଡ଼ି ନିହାତି ଦରକାର । ଦାମ୍ ସେମିତି କିଛି ଅତି ବେଶି ନୁହେଁ । ମୋଟେ ବାଇଶି ହଜାର ।"

"ସେ ସବୁ କଥା ଆମେ ମୁଣ୍ଡରେ ପୂରାଉ ନାହୁଁ । ଆମେ ପୁଅଙ୍କୁ ଆଇ. ଏସେ କରିଦେଲୁ, ଏଣିକି ତାଙ୍କ କଥା ସେ ବୁଝିବେ କି ତାଙ୍କ ଶ୍ୱଶୁର ବୁଝିବେ ।"

ଜଗୁଲି ମନେ ମନେ କହିଲେ "ଆଉ ତୁ ଶଳାଟି ଏତେ ଭୂମିକା ବାନ୍ଧୁଛୁ କାହିଁକି ? ଗୁଡ଼ମୁଆଁ କେତେ ଖାଉଛୁ ଖାଇଯା !"

ଶିକାରକୁ ଟିକିଏ ଚୁପ ହୋଇ ଯିବା'ର ଦେଖି ପଦ୍ମନାଭେ ପୁଣି ଉଖୁରେଇଲେ, 'କଅଣ ଜଗୁଲି ବାବୁ ! ମୁଁ କଅଣ ନାକରା କଥା କହିଲି ?"

"ଆହା ! ନାକରା କଥା କାହିଁକି ହେବ ? ଆମ୍ବସଡ଼ା ମଟର ଗାଡ଼ି ବାଇଶି ହଜାର, ଘର ତିଆରି ଧର ଅଠର ହଜାର ଆଉ ଅନ୍ୟାନ୍ୟରେ ୧୦ ହଜାର, ମୋଟ ୫୦ ହଜାର ଟଙ୍କା । ଆଇ. ଏସେ ଜ୍ୱାଇଁ ଯେ କରିବ ସେ ପଚିଶ ହଜାର ଟଙ୍କା ଖର୍ଚ୍ଚ ନ କରିବ କାହିଁକି ?"

'ହଁ ହେ ସମୁଦ୍ଧ ତୁମେ କଅଣ ଆମକୁ—ଦଉଛ, ତୁମ ଝିଅ ଓ ଜ୍ୱାଇଁକୁ ଦେବ । ସେମାନେ ଭୋଗ କରିବେ, ଆମେ ଖାଲି ଦେଖିବା ଲୋକ ।"

'ହଁ ସମୁଦ୍ଧ ସେଇଆ ନୁହେଁତ କଅଣ । ଅମେ ଖାଲି ବନ୍ଧୁ ପ୍ରୀତିରେ ଯାହା ଉବେଇ ଚୁବେଇ ହେବା—"

ପଦ୍ମନାଭ ଆନନ୍ଦରେ ଉଲୁସି ଉଠୁଥାନ୍ତି ଯେତିକି, ପସ୍ତାଉଥାନ୍ତି ସେତିକି । ପସ୍ତେଇବାର କାରଣ ହେଉଛି—ପ୍ରାୟ ପାଞ୍ଚଶହରୁ ବେଶି ଶିକାର ତାଙ୍କ ଖାଲେଇ ଭିଙ୍ଗି ଖସି ପଳେଇଛନ୍ତି । ଏମିତି ସବୁ ଦାବି ମାନିନେଇ ଖାଲେଇ ଭିତରେ ଖୁସିମନରେ ପଶି ସେଇଠି ରହିବା ଶିକାର ଏଇ ପ୍ରଥମ । ଶିକାର ବୋଧହୁଏ ଏହାଠୁଁ ବେଶି ପାଇଁ ପ୍ରସ୍ତୁତ ଥିଲା । କମ୍ ଦାବି ହୋଇଗଲା ବୋଲି ଉଁ ଚୁଁ ନକରି ସବୁଥିରେ ରାଜି ହୋଇଗଲା । ବୋଧହୁଏ ଯୋଡ଼ାଏ ମଟରଗାଡ଼ି ମାଗିଥିଲେ ଦେଇଥାନ୍ତା । ଓଃ, କି ଭୁଲଟାଏ ହୋଇଗଲା । ହଉ ଯାହା ହେବାର ହୋଇଗଲା । ଘର ନାଆଁରେ ଆଉ କୋଡ଼ିଏ ହଜାର ଟଙ୍କା ମାଗିବା ।

ସମୁଦ୍ଧଙ୍କୁ ନୀରବ ରହିବା ଦେଖି ଜଗୁଲି ପଚାରିଲେ—"ଆଉ କଅଣ ଭାବୁଛ ସମୁଦ୍ଧ ! କଥାଟା ପକ୍କା ହେଲା ତ ?"

"ସବୁଥିଲା କଅଣକି, ଏ ମହର୍ଗ ଯୁଗରେ ଅଠର ହଜାରରେ କୋଠା ହୋଇ ପାରିବନି । ଖୁବ୍ କମ୍‌ରେ ଆହୁରି କୋଡ଼ିଏ ହଜାର ନ ହେଲେ ହବନି ।"

"ଦେଖ ସମୁଦ୍ର, ନୂଆ ଜମି ଜମା ଆଇନ୍ ପାଇଁ ମୁଁ କୋଡିଏ ଏକର ଭୂମି ବିକ୍ରିକରି ୫୦ ହଜାର ଟଙ୍କା ହାତରେ ରଖିଛି । ବାହାଘରଟା ସରିଯାଉ, ପରେ ଆଉ କୋଡ଼ିଏ ହଜାର ଟଙ୍କା ଆଉ ଜମିବିକ୍ରି କରି ଦେଇ ଦେବ । ଜମିବିକ୍ରି କରିବାକୁ ସମୟ ତ ପୁଣି ଲାଗିବ । ଏଇଟା ମାମୁଲି କଥା । ଏଇଥି ପାଇଁ କଅଣ କାମ ଅଟକି ଯିବ ?"

"ବେଶ୍ ବେଶ୍ ତାହାହିଁ ହେଉ । ଆଚ୍ଛା ଜଉତିଷ ଡାକି ଜାତକ ମେଳ, ନିର୍ବନ୍ଧ ଦିନ ଓ ବିଭାଘର ଦିନଟା ଠିକଣା କରିନେବ । ଝିନେ ଝିଅକୁ ଆପଣ ଚଣ୍ଡୀ ମନ୍ଦିରକୁ ନେଇ ଆସିବେ, ସେଇଠି ଶିଶୁନାଗଙ୍କ ବୋଉ ଆଉ ମୁଁ ଦେଖି ନେବୁ ।"

ସବୁ କଥା ତୁଣ୍ଡିଗଲା । ଜାତକ ମେଳ ଓ ନିର୍ବନ୍ଧ କାମଟା ସର୍ବମଙ୍ଗଳ ଜଗନ୍ନାଥଙ୍କ ଉପରେ ଛାଡ଼ି ଦିଆଗଲା । ସବୁ କଥା ସରିବା ପରେ ଜଗୁଲିବାବୁ ଯିବାକୁ ବାହାରିଲେ । ବାଟ ଉଗାଳିଲା ପରି ପଦ୍ମନାଗେ ଆଗରେ ଠିଆ ହୋଇ ପଡ଼ି କହିଲେ—"ହଁ ସମୁଦ୍ର ଗୋଟାଏ କଥା କହିବାକୁ ଭୁଲିଗଲି । ଅଧେ ଟଙ୍କା କାଲି ପଅରି ଦିନ ଭିତରେ ଆଗତୁରା ଦେଇଦେବେ । ବାକି ଟଙ୍କାଟା ବେଦି ଉପରକୁ ଗଲା ପୂର୍ବରୁ ଦବାକୁ ପଡ଼ିବ । କଥାଟା ଆଗରୁ ସଫା ହୋଇଯିବା ଭଲ । ତୁମର ଗାଡ଼ି କିଣିବା ଦରକାର ନାହିଁ । ସେ ଟଙ୍କା ଦେଇ ଦେଲେ ଆମ ଶିଶୁନାଗ ନିଜେ କିଣି ନେବେ ।

"ସମୁଦ୍ର ! ମୋର ସେଥିରେ କିଛି ଆପତ୍ତି ନାହିଁ । ହେଲେ ଟିକିଏ ଅସୁବିଧା ହୋଇ ଯାଇଛି । ୫୦ ହଜାର ଟଙ୍କା ମୁଁ ବ୍ୟାଙ୍କରେ ଧାର୍ଯ୍ୟଜମା କରି ଦେଇଛି । ତାର ମିଆଦ ଠିକ୍ ମଙ୍ଗନ ଦିନ ପୂରୁଛି । ବିଭାଘର ଦିନ ଆଣିବତ ପୁରା ଟଙ୍କାଟା ତୁମ ହାତରେ ଦେଇଦେବି । ବଥରରେ ଦେଇଥାନ୍ତି, ଥରକରେ ଦେଇଦେବି । ବର ଆଗ ଟଙ୍କା ଧରିବ, ତାପରେ ବେଦିକୁ ଉଠିବ । ମୋର ଗୋଟାଏ ମୁହଁ, ଗୋଟାଏ ଜବାବ ।"

ପଦ୍ମନାଭଙ୍କ ଯାହାବା ଟିକେ କୁନ୍ଥ କୁନ୍ଥ ହୋଇଥାନ୍ତେ, ତାଙ୍କର ଭସ୍ମ ହେଲା । ୪୦୦ କି ୫୦୦ ଫେର ଯାଇଛନ୍ତି, ବେଶି ମୋଡ଼ା ମୋଡ଼ କଲେ କାଳେ ଏ ଫେରିଯାଏ ! ତେଣେ ପୁଅ ଯଦି କୋଉ ଡାକୁଣୀ ହାବୁଡ଼ରେ ପଡ଼ଯାଏ ! ଏଇ ଡର ତାଙ୍କ ତୁଣ୍ଡ ବନ୍ଦ କରି ଦେଲା । ସମ୍ବନ୍ଧ କଥାରେ ରାଜି ହୋଇଗଲେ କିନ୍ତୁ ଶେଷ୍ ଚୋଟ୍ ଶୁଣାଇ ଦେଲେ—"ଦେଖ ସମ୍ବନ୍ଧ, ମୋ ହାତରେ ଆଗ ପଚାଶ ହଜାର ଟଙ୍କା ଦେବ ତ ବର ବେଦି ଉପରକୁ ଉଠିବ । ଏଥିରେ ଟିକେ ଏପାଖ ସେପାଖ ହେଲେ ତୁମ ଝିଅ ତୁମ ଘରେ, ମୁଁ ପୁଅକୁ ଫେରାଇ ଆଣିବି । ମୁଁ ଝିଅକୁ ବରପୂଜା କରିଦେଲି ବୋଲି ଦୋଷ ଦେବନି ।"

"ଠିକ୍ ଅଛି । ମୁଁ ତହିଁରେ ରାଜି ।" କହି ଜଗୁଲି ଫେରିଲେ । ନଟ ସାଙ୍ଗରେ ଦେଖାହେଲା । ଦୁହେଁ ପେଟପୂରା ହସିଲେ । ଯୌତୁକ-ନଶା-କାଟେଣୀ ଔଷଧଟା ଯେ କେବଳ ରୋଗ ବିନାଶ କରିବ ତା ନୁହେଁ । ହଇଜା ପ୍ରତିଶେଧକ ଇଞ୍ଜେକ୍‌ସନ ପରି ରୋଗର ପ୍ରତିରୋଧ ମଧ୍ୟ କରିବ ବୋଲି ଦୁହେଁ ନିଶ୍ଚିତ ହୋଇଗଲେ । ଜଗୁଲି କହିଲା—ପୁଅ ଆଇ. ଏ. ଏସ୍ ପରୀକ୍ଷା ଦେଇ ମାଙ୍କଡଚିତ୍ର । ଏଣେ ବାପ ତାକୁ କଟକରେ କଲଟର ବନେଇ ଦେଲାଣି । ଏଡ଼େ କାମ, ଏଡ଼େ ଲୋଭି ଦୁନିଆରେ ନଥିବେ । ବୁଢ଼ା ୩ ଲକ୍ଷ ଟଙ୍କା ଲୁହା ସିନ୍ଦୁକରେ ଭର୍ତ୍ତିକରି ରଖିଛି । ଘରଟାଏ ଭଲକରି ତିଆରି କରୁନି ଯେ ଯୌତୁକ ଟଙ୍କାରେ କରିବ ବୋଲି ମନରେ ଆଶା କରିବସିଛି ।

× × × ×

ଜଗୁଲିଙ୍କ ଘର ଦାଣ୍ଡରେ ବର ଶୋଭାଯାତ୍ରା ପହଞ୍ଚିଲା । ବର ଓ ବରଯାତ୍ରୀମାନଙ୍କୁ ମାନ୍ୟ ଗଉରବ କରି କନ୍ୟାପକ୍ଷ ଆଗରେ ଥିବା ଖାଲି ଗୁହାଳ ଘରେ ବସେଇଲେ ଗାଆଁର ପ୍ରାୟ ସବୁ ଭେଣ୍ଡିଆ ଟୋକାଏ ସ୍ୱେଚ୍ଛାସେବକ ରୂପେ ଟହଲ ମାରୁଥାଆନ୍ତି । ସେମାନଙ୍କର ଲୁଂଗପଣିଆ ଓ ଭୃତ୍ୟ ମନୋଭାବର ଅଭାବ ଦେଖି ବର ଓ ବରଯାତ୍ରୀମାନେ ନାକ ଟେକିଲେ ।

ବେଦି ଉପରେ ମନ୍ତ୍ର ଫୋପାଡୁଥିବା ପୁରୋହିତେ ବରକୁ ବେଦି ଉପରକୁ ଆଣିବାଲାଗି ଭଣ୍ଡାରୀକୁ ହୁକୁମ ଦେଲେ । ଅବାଗିଆ ଭଣ୍ଡାରିଟା

ଠେଙ୍ଗାପରି ଯାଇ ବର ହାତ ଧରି ଉଠେଇଲା । ସତେକି ଗୋଟାଏ ଅମଙ୍ଗ ବଳଦକୁ ଗୁହାଳରୁ ଘୋଷାଡ଼ି କାଢ଼ିନେବ । ବର ସ୍ୱଗରେ ଇଡ଼ିଅଟ୍, ନନ୍‌ସେନ୍‌ସ କହି ଭଣ୍ଡାରି ଗାଲରେ ଠୋ କରି ଚଟକଣାଏ ଦେଲେ । ସ୍ୱେଚ୍ଛାସେବକମାନେ ହାଉକରି ଉଠି ଆସୁଥିଲେ । ଜଗୁଲିଙ୍କ ଇଙ୍ଗିତରେ କିନ୍ତୁ ନରମିଗଲେ । ପଦ୍ମନାଗେ ଆଉ ସମ୍ଭାଳି ନ ପାରି ପାଟି କଲେ—"କହେ। ଜଗୁଲି ବାବୁ ! କି ଜବାବ ଥିଲା ? ପଚିଶ ହଜାର ଟଙ୍କା ଆଗ ନ ଥୋଇ ବରକୁ ଉଠାଉଛ କାହିଁକି ?"

ଥେଣ୍ଟିଲା ପରି ଜଗୁଲି କହିଲେ—"ଏମିତି ହଗାମୁତା ହଉଛ କାହିଁକି ? ବାହାଘର ପରେ ଟଙ୍କା ଦେବ ।"

ପଦ୍ମନାଗ ଓ ଶିଶୁନାଗ ଉଭୟେ ପ୍ରଚଣ୍ଡ କ୍ରୋଧରେ ବାଉଳା ହୋଇଗଲେ । "ତୁମ ଝିଅକୁ ଘରେ ରଖି କାଞ୍ଜି କରୁଥାଅ । ମୁଁ ପୁଅକୁ ଅନ୍ୟ ଜାଗାରେ ବାହା ଦେବି" କହି ପଦ୍ମନାଗେ ପୁଅ ଓ ବରଯାତ୍ରୀଙ୍କ ସହ ଫେରିବା ପାଇଁ ଘର ଭିତରୁ ବାହାରି ଆସିଲେ । କିନ୍ତୁ ହାୟ ! ଯାଇ ପାରିଲେ ନାହିଁ । ସ୍ୱେଚ୍ଛାସେବକମାନେ ଠେଙ୍ଗାବାଡ଼ି ଧରି ସେମାନଙ୍କୁ ଘେରିଗଲେ । ଜଣେ କହିଦେଲା—"ହଉ ବାହା ନ ହେବ ତ ନାହିଁ । ବାହାଘର କେମିତି ହୁଏ ଟିକିଏ ଦେଖିସାରି ଯାଅ ।"

ସ୍ୱେଚ୍ଛାସେବକମାନଙ୍କର ସଂଖ୍ୟାଗରିଷ୍ଠତା ଓ ଲଗୁଡ଼ହସ୍ତ ଦେଖି ସମସ୍ତେ ବାଧ୍ୟ ହୋଇ ବେଦି ପାଖରେ ଠିଆହୋଇ ରହିଲେ । ସମସ୍ତଙ୍କ ଆଗରେ ନଟପୁଅ କୃଷ୍ଣଚନ୍ଦ୍ରଙ୍କର ଜଗୁଲି ଝିଅ ରୁକ୍ମିଣୀର ହାତଗଣ୍ଠି ପଡ଼ିଲା – ଘେରଉ ଖୋଲିଲା ବେଳେ ଜଣେ ସ୍ୱେଚ୍ଛାସେବକ କହି ପକାଇଲା—"ଏଥର ନାଁ'ଟା ବଦଳେଇ ଶିଶୁପାଳ କରିଦିଅ । ମନେ ରଖିବ ଯୌତୁକ ପାଇଁ ରେଣ୍ଡି ବସିଲେ ଏମିତି ଶିଶୁପାଳ ବନିବାକୁ ପଡିବ କି ପଡ଼ିବ ।" ଆଉ ଜଣେ କହିଲା—"ଯୌତୁକ ନିଶା କାଟେଣି ଔଷଧଟା ଠିକଣା କାମ ଦେଖେଇଛ ।"



# ଅଉଲନମ୍ବର ଚାଳକ

ମୁକୁନ୍ଦ ବାବୁଙ୍କ ଗାଡ଼ି ଚଳେଇବ କିଏ ? ତାଙ୍କ ଗାଡ଼ି କିଛି ଏମିତିଆ ସେମିତିଆ ଗାଡ଼ି ନୁହେଁ । ଏକାବେଳକେ ଗାଡ଼ିମାନଙ୍କ ମୁକୁଟମଣି ରୋଲ୍‌ସରଏସ । ଗଡ଼ଜାତ ମିଶ୍ରଣ ବେଳେ ମୋଗଲବନ୍ଦିଆ ହାକିମ ଓ ନେତାମାନେ ରାଜା ମହାରାଜାଙ୍କ ଗନ୍ତାଘରୁ ଯେଉଁ ସବୁ ଜିନିଷ ଦି'ହାତିଆ ବୋହି ଆଣିଥିଲେ, ଏ ରୋଲସ୍ ରଏସ ଗାଡ଼ିଟି ତା ମଧ୍ୟରୁ ଗୋଟିଏ । ଯେଉଁ ଗାଡ଼ିଟି ୧୫।୨୦ବର୍ଷ ଧରି ଜଣେ ଶ୍ରୀଗ୍ରୁମୁଙ୍କ ଶ୍ରୀଗଣ୍ଡିକୁ ଅତି ବିଶ୍ୱସ୍ତ ଭାବରେ ବୋହିଥିଲା, ସେହି ଗାଡ଼ିକୁ ଭାଗ୍ୟ ଦୁର୍ବିପାକରୁ କିଛିଦିନ ଗୋଟିଏ ହରିଲୁଟିଆ ହାକିମକୁ ବୋହିବାକୁ ପଡ଼ିଲା । ହାକିମ ଜଣେକ କିଛିଦିନ ଚଢ଼ିବା ପରେ ଦେଖିଲେ ଯେ ଲୋକେ ତାଙ୍କୁ ସେ ଗାଡ଼ି ଭିତରେ ଦେଖିବା ମାତ୍ରେ ଅତି ସନ୍ଦେହଜନକ ଭାବରେ ଚୂପୁରୁ ଚାପୁରୁ ହେଉଛନ୍ତି, ମୁରୁକି ହସା ଦେଉଛନ୍ତି । ଏତିକିରେ ଯେ ଜିନିଷଟା ସରି ଯାଉଛି ତା'ନୁହେଁ, ବେଳେ ବେଳେ ମିଆଁ ବିବୀକୁ ତୃଷ୍ଣାପୂ ପୁରୁଷ କହିଦେଲା ପରି, ଜଣେ ଜଣେ ଥରେ ଦି'ଥର କହିଦେବାର ଶୁଣା ଗଲାଣି—"ହରିଲୁଟ୍‌ର ବେଳ ପଡ଼ୁଛି, କେତେ ବୋହିବ ବୋହି ନେଇଯାଅବେ"—"ଅଠର ଠା ଝଲେଇ ସାଇକଲରୁ ଏକାବେଳକେ ରୋଲସ୍ ରଏସ, ଡେଇଁବାରେ ହନୁମାନର ବଡ଼ବାପା, ଅପରେ କିଂ ଭବିଷ୍ୟତ—ଛପର କରିବାକୁ ନଡ଼ା କିଣି ହେଉ ନଥିଲା । ଚାଳ କଣା ହୋଇ ରହିଥିଲା । ଖୋଦାଙ୍କୁ ସୁବିଧା ହେଲା ସେହି କଣାବାଟେ ଗଳେଇ ଫିକେଇଦେଲେ—"

ହାକିମ ଜଣକ ଏ ସବୁ କଥାକୁ ଏ କାନରେ ପୂରେଇ ସେ କାନରେ କାଢ଼ି ଦେଇ ଥାଆନ୍ତେ; କିନ୍ତୁ ଗୋଟିଏ କଥା ଆଉ ପାଖ କାନରେ ବଣ୍ଡା ବାନ୍ଧି ରହିଗଲା । ଫଳତଃ ଏ କଥା ଗୁଡ଼ାକ ସେ ବାଟେ ବାହାରି ନ ଯାଇ ମୁଣ୍ଡ ଭିତରେ ବହୁତ ଗଡ଼ବଡ଼ ସୃଷ୍ଟି କଲା । କଥାଟି ହେଉଛି,—ଗାଡ଼ିଟି ଥିଲା ଗୋଟାଏ ହାତୀ । କାମ ତୁଳନାରେ ଖାଇବା ଅତି ବେଶି । କେବଳ ଦରମା ଓ ସାଧାରଣ ଉପୁରିରେ ତାକୁ ପୋଷିବା ଅସମ୍ଭବ । ଅଳ୍ପ ସମୟ ଭିତରେ ଠୁଳ ହୋଇଥିବା ସମ୍ପଦ ଉପରେ ଏତେ ଆଖି ପଡ଼ିଲାଣି ଯେ ଆଉ ଅଧିକ ଉପୁରି ସଂଗ୍ରହ କରିବା ନିରାପଦ ନୁହେଁ । ଏଣୁ ପଣ୍ଡିତଙ୍କ ପରି ଏ ହାତୀକୁ ବିଦାୟ ଦେଇ ଚୋଟିଏ ଖଚର ପୋଷିବା କୋଟିଗୁଣେ ଭଲ ।

ଶେଷରେ ଏ ହାକିମଙ୍କ ବିଶିଷ୍ଟ ଭକ୍ତ, ବିଶିଷ୍ଟ କଂଟ୍ରାକ୍ଟର, ବିରାଟ ବପୁବନ୍ତ ଶ୍ରୀଯୁକ୍ତ ମୁକୁନ୍ଦପ୍ରସାଦ ଦାସ ଓରଫ୍ ମୁକୁନ୍ଦି ବାବୁ ହାକିମଙ୍କଠାରୁ ହାତୀଟିକୁ କିଣିନେଲେ । ତାଙ୍କୁ ଅବଶ୍ୟ ମାନିଲା ଓ ପୋଷାଇଲା । ଗାଡ଼ି ଭିତରେ ବସି ଦୋହଲି ଗଲାବେଳେ ତାଙ୍କ ମନ ବି ଦୋହଲି ଯାଏ, ମଧୁର ଉଷ୍ମତାରେ କୁଲୁରି ଉଠେ । ତାଙ୍କ ଛଡ଼ା ସହର ଭିତରେ ଆଜି କାହାରି ରୋଲ୍‌ସରଏସ ନାହିଁ ଯାହା ଉପରେ ଦିନେ ଏକ ପ୍ରବଳ ପ୍ରତାପୀ ମହାରାଜା ସ୍ୱୀୟ ଅଙ୍ଗକୁ ଅଜାଡ଼ି ଦେଇଥିଲେ, ସେଇଠି ଆଜି ସେ ପୁରା ଅଙ୍କଡ଼େଇ ବସିଛନ୍ତି । ଅବାଧ ହାତ ଦୁ'ଟା ନିଶକୁ ଘନ ଘନ ସାଉଁଳେଇ ମଜଗୁଲିଆ ମନକୁ ଅଧିକ ମଜଗୁଲ କରି ଦେଉ ଥାଆନ୍ତି । ବେଳେ ବେଳେ ତାଙ୍କ ମନରେ ଏକ ଅଜବ ଖିଆଲ ପଶିଯାଏ—"ଛି, ଛି ! ଆରପାରି ରାସ୍ତାରେ ଗୋଟାଏ ବୈତରଣୀ ନଦୀ, ଫେର ଗୋଟାଏ ହଡ଼ା ଲାଙ୍ଗୁଡ଼ ଧରି ପହଁରି ପହଁରି ତାକୁ ପାରି ହେବାକୁ ପଡ଼ିବ । ଭଗବାନ ଗୋଟାଏ ପାଞ୍ଚବର୍ଷିଆ ଯୋଜନା କରି ବୈତରଣୀ ଉପରେ ଗୋଟାଏ ପୋଲ କରି ଦିଅନ୍ତେ କି ତାଙ୍କୁ ଲାଞ୍ଚ ଲୁଞ୍ଚା ଦେଇ ଏଇ ଗାଡ଼ିରେ ବସି ବୈତରଣୀ ଉପର ଦେଇ ଆରପାଖକୁ ଯିବାର ଅନୁମତି ପତ୍ରଟା ହାସଲ କରି ନିଅନ୍ତି ।"

ପୁଣି ଯେତେବେଳେ ସେ ହୋସ୍‌କୁ ଫେରି ଆସନ୍ତି ଗୋଟାଏ ଜମାଟିଆ ଦୀର୍ଘଶ୍ୱାସ ଫଁ କରି ତାଙ୍କ ନାକବାଟେ ବାହାରିଯାଏ । "ଦିନେ

ନା ହେଲେ ଏ ଗାଡ଼ିକୁ ଛାଡ଼ିବାକୁ ପଡ଼ିବ" ଏ କଥା ତାଙ୍କ ମୁଣ୍ଡରେ ପଶିବା ମାତ୍ରେ ସେ ମନଟାକୁ ଅନ୍ୟଆଡ଼େ ଟାଣିନିଅନ୍ତି ।

ଅନ୍ତତଃ ଜୀବଦଶାରେ ଥିବା ପର୍ଯ୍ୟନ୍ତ ସେ ଯେପରି ଏ ଗାଡ଼ିଟାକୁ ଭୋଗ କରିବେ, ସେଥିପାଇଁ ସେ ଖୁବ୍ ସତର୍କ ଦୃଷ୍ଟି ଦେଇଥିଲେ । ଗାଡ଼ିଟିର ହିଫାଜତ ଓ ଦୀର୍ଘଜୀବନ ପାଇଁ ସେ ଏତେ ଉଦ୍‌ବିଗ୍ନ ଥିଲେ ଯେ ସହରରେ କେବଳ ଘୂରି ଘୂରି କରିବା ଛଡ଼ା ଅନ୍ୟ କୌଣସି ସ୍ଥାନକୁ ନେବାକୁ ସେ ସବୁବେଳେ ପଛାଉଥିଲେ । ସେ ଗାଡ଼ିକୁ ଦୂର ସ୍ଥାନକୁ ନେବା-ପାଇଁ ତାଙ୍କର ପୁରୁଣା ଗୁଲକଟି ଯେ ଅସମର୍ଥ ଏ ଦୃଢ଼ ଧାରଣା ତାଙ୍କର ଥିଲା । ତେଣୁ ସହର ବାହାରକୁ ଗଲେ ସେ କାହାର ଜିପ୍‌ରେ ବା ଟ୍ରାନ୍ସ-ପୋର୍ଟ ବସ୍‌ରେ ଯାଉଥିଲେ ପଛକେ ରୋଲ୍‌ସରଏସ୍‌କୁ କାଢ଼ୁ ନ ଥିଲେ ।

ଯେଉଁଠି ମହୁଭରା ଫୁଲ, ସେଇଠି ମହୁମାଛିମାନଙ୍କର ଭିଡ଼ ବେଶି । ମହୁତକ ଶୋଷି ନେବାପାଇଁ ପ୍ରବଳ ଠେଲାପେଲା । ମୁକୁନ୍ଦ ବାବୁଙ୍କର ଅଚଳାଚଳ ଧନ କାହାକୁ ଅଛପା ନ ଥିଲା । ଫଳରେ ବହୁ ଦ'ଗୋଡ଼ିଆ ମହୁମାଛି ଅଣ୍ଟା ପକେଇ ତାଙ୍କ ଘରପାଖେ ହେନ ରାତି ଗୁଣୁ ଗୁଣୁ ଆରମ୍ଭ କରି ଦେଇ ଥାଆନ୍ତି ।

ଏ ମହୁମାଛି ଦଳରୁ ଦଳେ ହେଉଛନ୍ତି ପ୍ରସ୍ତାବିତ ଭୁଞ୍ଜଙ୍ଗ କଲେଜର କର୍ମକର୍ତ୍ତାଗଣ । ସମସ୍ତଙ୍କର ଏକା ଜିଗର ମୁକୁନ୍ଦବାବୁ କଲେଜ କୋଠାର ଶୁଭ ଦେବେ । ସହରଠାରୁ ମାତ୍ର ୪୦ ମାଇଲ ଦୂର । ସିଧା ସରପଟ ପିଚ୍ ହୋଇ ରାସ୍ତା ପଡ଼ିଛି । ଅଙ୍ଗ ହଲିବ ନାହିଁ ।

ଯେଉଁ ଥାନରୁ ଓଡ଼ିଶାର ଭବିଷ୍ୟତ ମୁଖ୍ୟମନ୍ତ୍ରୀ, ଉପମନ୍ତ୍ରୀ, ଇଞ୍ଜିନିଅର, ଇନ୍‌କମ ଟ୍ୟାକ୍ସ ଅଫିସର, ଇନ୍‌କମ ଟ୍ୟାକ୍ସ ଓକିଲ ଓ ଗ୍ରେଟର୍ ଆକାଉଣ୍ଟାଣ୍ଟମାନେ ଗୁଲ୍‌ଗାଲ୍ ହୋଇ ଜନ୍ମଲାଭ କରିବେ, ସେଇଠି ଶଙ୍ଖମଲ ପଥରରେ ନାଁ ଖୋଳା ହୋଇ ରହିଥିବ, ଏହା କଣ କମ୍ ସୌଭାଗ୍ୟର କଥା ନୁହେଁ । ଶେଷରେ ମୁକୁନ୍ଦ ବାବୁ ମୁଣ୍ଡ ଟେକିଲେ । ମାମୁଲି ପିଅନ ବି ଚଢି ବୁଲୁଥିବା ଜିପ୍‌ରେ ବସି ସେ ପୁଣି ଯିବେ ଏଡ଼େବଡ଼ ଗୌରବ ମିଳିବା ଥାନକୁ ? ଏଇ କଥାଟା ଜଣେ କାନଭିଡ଼ା ମୁକୁନ୍ଦ ବାବୁଙ୍କ ମୁଣ୍ଡରେ ଖଞ୍ଜିବାକୁ ଲାଗିଲା । ଏଥିରେ ଆହୁରି ଅନେକ ବି ପାଳ ଧରିବାକୁ ଛାଡ଼ିଲେ ନାହିଁ । ମୁକୁନ୍ଦ ବାବୁ ବି ଅଡ଼ଲନମ୍ବର ଗୁଲକ ନ ହେଲେ ସହରର ୪୦ ମାଇଲ ଦୂରକୁ ରୋଲସ୍‌ରଏସ୍ ଗାଡ଼ି

ନ ନେବାର ଜିଦ୍ ଛାଡ଼ିଲେ ନାହିଁ । ନିଜର ଚାଳକ, ସେ ଗାଡ଼ିର କଳ କବ୍‌ଜାକୁ ପୂରାପୂରି ଅକ୍ତିଆର କରିବାରେ ଅସମର୍ଥ ବୋଲି ତାଙ୍କର ଦୃଢ଼ ଧାରଣା ଥିଲା । ଫଳରେ ବିନକ ପାଇଁ ଜଣେ ଅଭଲ ନମ୍ବର ଠିକାଚାଳକ ବାଛିବାରେ ସେ ଲାଗିଗଲେ ।

"ରଘ କଣ୍ଟ୍ରାକ୍‌ଟରର ଚାଳକ ?"

"ଦୂର୍, ଦୂର୍, ଟ୍ରକ୍ ଚଳେଇଲାବାଲା, ସେ ପୁଣି କାର୍ ଚଳେଇବ ?"

"କାନୁଗୋଇ ଓକିଲଙ୍କ ଚାଳକ ?"...

"ହେଃ ! ଫୋର୍ଡ଼ ୧୮୭୨ ମଡ଼େଲ୍ ଚଳାଉଛି । ରୋଲ୍‌ସରଇସ୍‌ର ଡ୍ୟାସ୍‌ବୋର୍ଡ଼ ଦେଖିଲେ ଛେରି ପକେଇବ ।"

"ମଧୁ ଡାକ୍ତରଙ୍କ ଚାଳକ ?"

"ନା, ନା, ସେଇଟା ମଦୁଆଟାଏ, ଭଲଅଛି ମନ୍ଦ ଅଛି ।"

"ପ୍ରିନ୍‌ସପାଲ ବଂଶୀ ବାବୁଙ୍କ ଡ୍ରାଇଭ୍ରର୍ ?"

ମନ୍ଦ ନୁହେଁ, ହେଲେ ମେକାନିକ୍ ନୁହେଁ । ଇଞ୍ଜିନ୍‌ର 'ଇ' ଅକ୍ଷର ଜାଣେନା—"

ଶେଷରେ ମୁକୁନ୍ଦବାବୁ ବୁଝେଇ ଦେଲେ—"ମୋଟ ଉପରେ ଚାଳକ ଜଣକ ବେଶ୍ ତାଗଡ଼ା ହୋଇଥିବ, ମଦ ପିଉ ନ ଥିବ, ଭଦ୍ର ବ୍ୟବହାର ଓ ଆଦବ କାଇଦା ଜାଣିଥିବ, ଏକନମ୍ବର ମେକାନିକ୍ ହୋଇଥିବ । ଖୁବ୍ ଦାମିକା ଦାମିକା ଗାଡ଼ି ଚଳାଇଥିବ, ଏମିତିଆ ଜଣେ ଚାଳକ ଯଦି ମିଳେ ତେବେ ଯାଇଁ ସେ ରୋଲ୍‌ସ ରଇସରେ ସହରର ୪୦ ମାଇଲ ଦୂରକୁ ଯିବେ । ମାସ ଦିନକ ପାଇଁ ଦରକାର, ଯାହା ସେ ନେବାକୁ ଚାହିଁବ ତାହା ଦେବାକୁ ସେ ପ୍ରସ୍ତୁତ ।

ସାରା ଦୁନିଆରେ ଯେ ଏମିତିଆ ଜଣେ ଚାଳକ ନଥିବ ଏହା ଭାବିବା ଉଚିତ ନୁହେଁ । ବହୁତ ଖୋଜାଖୋଜି ପରେ ପଟ୍ଟନାୟକ ମଟର ଗାଡ଼ି କାରଖାନାରେ ଜଣକୁ ଆବିଷ୍କାର କରାଗଲା । ନାଁ ତା'ର ଶେଖ୍ କାଲୁ ମିଆଁ । କିଛିଦିନ ହବକ୍ ସାହାବଙ୍କ ଗାଡ଼ି ଚଳାଉଥିଲା । ଘଣ୍ଟାକେ ଇଞ୍ଜିନକୁ ଠୁକୁର ଠୁକୁର କରି ଥୋଇ ଦେବ ଓ ଘଣ୍ଟାକେ ପୁଣି ଫିଟ୍‌ଫାଟ୍ । ଗାଡ଼ି ଚାଳିଲାବେଳେ କେଉଁଠି କିଛି ଟିକିଏ ଅସ୍ୱାଭାବିକ ଶବ୍ଦ

ହେଲେ ସେ ଚଟ୍‌କର ଧରନେବ କେଉଁଠି କ ଗଣ୍ଡଗୋଳ ହୋଇଛି । ପଟ୍ଟନାୟକ କୋମ୍ପାନୀ ମାଗଣା କଅଣ ତାକୁ ମାସକୁ ତିନଶହଟଙ୍କା ଦେଇ ରଖିଛି । ଆଇନ କାନୁନ, ଭଦ୍ରତା ସବୁଥିରେ ସମସ୍ତଙ୍କୁ ଟପି ଯାଇଛି । ଟୋପାଏ ବି ମଦ ଜୀବନଭର୍ କେବେ ଛୁଇଁନି । ମୁକୁନ୍ଦ ବାବୁଙ୍କ ମନକୁ ପାଇଗଲା । ସେଇ କେବଳ ଦିନକପାଇଁ ରୋଲ୍‌ସରଇସ୍‌କୁ ସହରର ୪୦ ମାଇଲ ଦୂରକୁ ନେବବୋଲି ସେ ରାଜି ହୋଇଗଲେ ।

ଶୁଭ ଦିନ ଉପସ୍ଥିତ ହେଲା । କଲେଜର ଜଣେ ମୁଖ୍ୟକର୍ତ୍ତା ଆସି ମୁକୁନ୍ଦବାବୁଙ୍କ ଘରେ ପହଞ୍ଚିଲେ । ସକାଳ ସାଢ଼େ ସାତଟାରେ ଯାତ୍ରାରମ୍ଭ । ଅଧଘଣ୍ଟାକ ପୂର୍ବରୁ ଅଡ଼ୁଲ ନମ୍ବର ଗ୍ୱଳକ କାଲୁମିଆଁ ଆସି ତାକର ଷ୍ଟୋରୀକୁ ଦେଖିଲାପରେ ଗାଡ଼ିର ଆଗଠୁଁ ପଛଯାଏ ସବୁଠି ଟିକିଏ ଟିକିଏ ହାତମାରି ଦେଇଗଲା । ପଛ କବାଟ ପାଖରେ ଅଳ୍ପ ଟିକିଏ ତେଲିଆ ଦାଗ ଦେଖି ଖପା ହୋଇଗଲା । ମୁକୁନ୍ଦ ବାବୁଙ୍କ ନିଜ ଗ୍ୱଳକକୁ ଡାକି କହିଲା—"ହଇବେ, ଏମିତି ରୋଲ୍‌ସ ରଇସ ଗାଡ଼ିକୁ ରଖିଛୁ । ଯିଏ ଦେଖିବ ତୋତେ ଡ୍ରାଇଭର କହିବ ନା ମୋଚି କହିବ । ଆଣ ଆଣ ଖଣ୍ଡେ ଭଲ ବାସି କନା ଆଣ ।"

ମୁକୁନ୍ଦବାବୁଙ୍କ ସାବକ ଗ୍ୱଳକ ପେଟ ଭିତରେ ରାଗରେ ମରି ହୋଇ ଯାଉଥିଲେ ବି ପାଟି ଫିଟେଇ କିଛି କହିଲା ନାହିଁ । କାରଣ ଯେତେହେଲେ କାଲୁମିଆଁ ଗ୍ୱଳକମାନଙ୍କ ମଧ୍ୟରେ ସର୍ଦ୍ଦାର, ତା'ପାଖରେ ସମସ୍ତଙ୍କ ମୁଣ୍ଡ ନଇଁଯାଏ । ସେ ଜଣେ ବାଧ୍ୟ ଭୃତ୍ୟପରି ସଫା କନାଟିଏ ଆଣି ଦେଲା । କନାଟା ଧରି କାଲୁମିଆଁ ପୁଣି ପାଟି କଲା—"ଆରେ ଓଲୁ ଖାଲି କନାଟା ଦଉଛୁ କ'ଣ, ମୋବିଲ ଗ୍ଲାସ୍ ଟିକିଏ ଦେ !"

ସେ ମୋବିଲ ଗ୍ଲାସ ଡବାଟା ଆଣି ଦେଲା । ନିଜେ କାଲୁମିଆଁ ଫାଳେ ଓଦା କନାରେ ଟିକିଏ ଗ୍ଲାସ ନେଇ ଦାଗଥିବା ଜାଗାରେ ଘସି ଭଲ କନାରେ ପୋଛିଦେଲା । ସେଇ ଅଂଶତକ ଝଟକି ଉଠିଲା । ତା ତୁଳନାରେ ଅନ୍ୟ ଅଂଶତକ ମଳିନ ଦେଖାଗଲା । କାଲୁମିଆଁ ଫେର୍ ରାଗିଉଠି କହିଲା—"ହଇରେ ! ରୋଲସ୍ ରଇସ ଗାଡ଼ି, ସପ୍ତାହରେ ଥରେ ମୋବିଲ ଗ୍ଲାସ୍ ଘଷୁନୁ । ଗାଡ଼ିର କି ହେପାଜତ୍ ନଉଛୁ ବେ, ଆଣବେ ଆଣ, ଆଣ ଆଉ କନା ଆଣ !"—

ଜନା ଆସିଲ । ଦୁହିଁଙ୍କର ବଜର ଅଧଘଣ୍ଟା ଘଷାଘଷି ପୋଛୁ ପୋଛୁ ଫଳରେ ଗାଡ଼ିଟି ଝଟକ ଉଠିଲା । ମୁକୁନ୍ଦବାବୁଙ୍କ ଚାଳକ ଯାହା ବା କାଲୁମିଆଁ ପାଖରେ ବସି ଯାଇଥାଆନ୍ତା, ସେ ତାର ପହିଲ ଚୋଡ଼ ଦେଖି ପଛେଇ ଗଲା । ନାନା ଆଳ ଦେଖାଇ ସେ ରହିଗଲା ।

ମୁକୁନ୍ଦବାବୁ କଲେଜ କର୍ତ୍ତାଙ୍କ ସହ ଘର ଭିତରୁ ବାହାର ଆସିଲା ବେଳକୁ କାଲୁମିଆଁ ପଛ ଦୁଆରଟି ଖୋଲଦେଇ ସୈନିକ ଠାଣିରେ ଠିଆ ହୋଇଗଲା । କବାଟ ପାଖ ହେବା ମାତ୍ରେ ତାଙ୍କୁ ଏକ ମିଲିଟାରୀ ସଲାମ୍ ଦେଲା । ଗାଡ଼ିରେ ବସିବା ପରେ କବାଟଟାକୁ ସେ ଲଗାଇ ଦେଇ ନିଜ ଥାନରେ ବସିଲା । ମୁକୁନ୍ଦବାବୁ ଗାଡ଼ିର ଝଲକ୍ ଓ କାଲୁମିଆଁର ମିଲିଟାରୀ ସଲାମ୍ ପାଇ ମନ ଭିତରେ କୁଲୁର ଉଠିଲେ ।

ଚାଳକ କବାଟ କଡ଼୍ କରି ବନ୍ଦ ହୋଇଯିବା ପରେ ଗାଡ଼ି ମୃଦୁ ଗର୍ଜନର ସହ ସଜୀବ ହୋଇ ଉଠିଲା ଓ ଧୀରେ ଧୀରେ ଆଗେଇଲା । ସହର ଭିତର ଦେଇ ଗାଡ଼ି ମନ୍ଥର ଗତିରେ ଚାଲିଲା । ବାଙ୍କ ଅତିକ୍ରମ, ପାଖ ଛାଡ଼ିଦେବା ଆଦି ମାର୍ଗ ନିୟମମାନ ଠିକ୍ ଠିକ୍ ପାଳନ କରୁଥିବାର ଦେଖି ମୁକୁନ୍ଦବାବୁ ଖୁସ୍ ହୋଇଗଲେ । କାଲୁମିଆଁ ଯେ ସହରର ସର୍ବଶ୍ରେଷ୍ଠ ଚାଳକ ସେଥିରେ ତାଙ୍କର ଆଉ ଟିକିଏ ହେଲେ ସନ୍ଦେହ ରହିଲା ନାହିଁ । ଆଜି ଗାଡ଼ିକୁ ଚାହିଁ ଚାଳକ ମିଳିଛି ଭାବି ତାଙ୍କ ମନ ବେଶ୍ ଉତ୍ଫୁଲ୍ଲେଇ ଗଲା ।

ଗାଡ଼ି କ୍ରମେ ସହର ତଳି ଅଞ୍ଚଳ ଛାଡ଼ି ନିର୍ଜନ ରାସ୍ତା ଧରିଲା । ଇଞ୍ଜିନ୍‌ର ଗର୍ଜନରେ କର୍କଶତା ନଥାଏ ବରଂ ସଙ୍ଗୀତର ମୂର୍ଚ୍ଛନାପରି ଏକ ପ୍ରକାର ମୂର୍ଚ୍ଛନା ଚୋଳୁଥାଏ । ୧୦ ମାଇଲ ଖଣ୍ଡେ ଯାଇଛି କି ନାହିଁ ହଠାତ୍ ଗାଡ଼ିଟି ରାସ୍ତାର ଗୋଟିଏ କଡ଼ରେ ଅଟକିଗଲା । ଅଟକିବାର କାରଣ ଜାଣିବାକୁ ଏଣେତେଣେ ଚାହିଁ ମୁକୁନ୍ଦବାବୁ ଦେଖିଲେ ରାସ୍ତାର ଆର କଡ଼ରେ ଗୋଟିଏ ଗାଡ଼ି ଠିଆ ହୋଇଛି । ପଛରେ କେତୋଟି ପିଲା । ଚାଳକ ଜଣକ ଗାଡ଼ିର ବୋନେଟ୍‌ଟା ଟେକି ଶୁଷ୍କ ବଦନରେ ଇଞ୍ଜିନ୍‌ଟାକୁ ପରୀକ୍ଷା କରୁଛି ।

ମୁକୁନ୍ଦବାବୁ ପଚାରିଲେ—"ଗାଡ଼ି ବନ୍ଦ କଲ କାହିଁକି ?"

ସଲାମ୍ ବଜାଇ କାଲୁ ମିଆଁ କହିଲା—"ମାଫ୍ କରିବେ । ଏହା ହେଉଛି ସଚା ଡ୍ରାଇଭରର ସ୍ୱତମାତ । ରାସ୍ତାରେ କାହାରି କାର୍ ଅଚଳ

ହୋଇ ଯାଇଥିଲେ, ଅନ୍ୟ ଜଣେ ଡ୍ରାଇଭର୍ ସେଠି ନିଶ୍ଚୟ ଅଟକିବ ଓ ତାକୁ ସାହାଯ୍ୟ କରିବ ।"

ହୁଁ—ମାନବିକତା ଦୃଷ୍ଟିରୁ ଅବଶ୍ୟ ଠିକ୍ । ଏହା ଭାବି ମୁକୁନ୍ଦ ବାବୁ ଚୁପ୍ ରହିଲେ । କାଲୁମିଆଁ ଆଉ ଗାଡ଼ି ଗୃଳକ ସହିତ ବୋନେଟ୍ ତଳେ ମୁଣ୍ଡ ଭର୍ତ୍ତିକଲା । ଯେତେହେଲେ ସେ ଗୋଟାଏ ବଡ଼ ବିଚକ୍ଷଣ କାରିଗର, ଇଞ୍ଜିନ ଉପରେ ହାତ ବୁଲେଇ ନେଇ କହିଲା—"ହୁଁ, ହୁଁ:...ଗାଡ଼ି ତଳକୁ ନ ଗଲେ ନ ଚଳେ । ଆଉ ଜଣକ ହତାଶ ଭାବେ କହିଲା—"ମୁଁ ଏତେ ଜିନିଷ ଯଦି ଜାଣି ଥାଆନ୍ତି, ତେବେ ଘଣ୍ଟାଏ ହେଲା ଏଠି ପଡ଼ି ଥାଆନ୍ତି କାହିଁକି ?"

"ଆଚ୍ଛା ହଉ" କହି କାଲୁ ପୋଷାକ ଫିଟେଇ ପକେଇଲା । ଲୁଙ୍ଗିଟା ବେଡ଼େଇ ହୋଇପଡ଼ି ଗାଡ଼ି କଡ଼ରେ ଚିତ୍ହୋଇ ଶୋଇ ପଡ଼ିଲା ଓ ଦୁଇ ତିନିଟା ରେଞ୍ଚ ହାତରେ ଧରି ଗାଡ଼ି ତଳକୁ ଗଡ଼ି ଗଡ଼ି ପଶିଗଲା । ମୁକୁନ୍ଦ ବାବୁ ବଗାଙ୍କ ପରି ଗୃହିଁ ଥାଆନ୍ତି । କଲେଜ କର୍ତ୍ତାଜଣକ ଡେରି ହୋଇଯିବା ଭୟରେ ଛଟରପଟର ହେବାକୁ ଲାଗିଲେ ।

ଘଣ୍ଟାଏ ଉଦ୍‌ବେଗପୂର୍ଣ୍ଣ ଅପେକ୍ଷା କଲା ପରେ କଳା ବାଲୁ ବାଲୁ ହୋଇ କାଲୁ ଗାଡ଼ିତଳୁ ଗଡ଼ି ଗଡ଼ି ପଦାକୁ ବାହାରିଲା । ଉପରେ ଇଞ୍ଜିନ୍‌ର ଦୁଇ ତିନିଜାଗା କଷାକଷି କରିଦେଇ ଷ୍ଟାର୍ଟରକୁ ମାଡ଼ିଦେବା ମାତ୍ରେ ଗାଡ଼ି ଘୋର ଗର୍ଜନ କରି ଜୀବନର ଧର୍ମ ପ୍ରକାଶ କଲା । ସେ ଗାଡ଼ିର ଗୃଳକ କୃତଜ୍ଞତା ଜଣାଇ ଗୋଟିଏ ଦଶଟଙ୍କିଆ ନୋଟ ଯାଚିଲା । ହାତଯୋଡ଼ି କାଲୁ କହିଲା—"ମାଫ୍ କର, ଖୋଦା ଖୁବ୍ ଦେଉଛନ୍ତି । ଆପଣ ଏଥର ବେଧଡ଼କରେ ଯାଆନ୍ତୁ ।" ସେ ଗାଡ଼ିଟି ଗର୍ଜନ କରି ସେଠାରୁ ଗୃଲିଗଲା । ଯେତେ ପୋଛି ହେଲେ ବି କାଲୁ ମୁହଁରୁ କଳା ଛାଡ଼ିଲା ନାହିଁ । କଲେଜରେ ଯାଇ ଧୂଆଧୋଇ ହେବ ବୋଲି କର୍ତ୍ତା ଜଣକ କହିବାରୁ ଅନନ୍ୟୋପାୟ ହୋଇ କାଲୁ ଗାଡ଼ି ଚଲେଇଲା ।

ଭୁଚ୍ଛା କାମଟାରେ ଦେଡ଼ଘଣ୍ଟା ଡେରି ହୋଇଗଲା ଭାବି ଦୁହେଁ ଟିକିଏ ମନେ ମନେ ଅବଶୋଷ ପ୍ରକାଶ କରୁଛନ୍ତି କି ନାହିଁ, ଗାଡ଼ିଟି ପୁଣି ପ୍ରାୟ ଧମାଇଲ ଯିବାପରେ ଅଟକି ଗଲା । ଆରୋହୀ ଦୁହେଁ ଗୃରି ଆଡ଼କୁ ଗୃହିଁ ଦେଖିଲେ କେଉଁ ଆଡ଼େ କିଛି ନାହିଁ ଅଥଚ କାଲୁ କାନ ତରାଟି

ଡ୍ୟାସ୍ ବୋର୍ଡ ଆଡ଼କୁ ଚାହିଁଛି । ଅବାକ୍ ହୋଇ ଦୁହେଁ ଏକାବେଳକେ ପଚାରି ଉଠିଲେ "କଅଣ ହେଲା ?"

କାଳୁର ଧ୍ୟାନ ଭାଙ୍ଗିଲା ନାହିଁ । ସେ ପୂର୍ବପରି କାନକୁ ଚଗଣ୍ଟି ଇଞ୍ଜିନ୍‌ର ଗୁଡ଼ୁର୍ ଗୁଡ଼ୁର୍ ଶବ୍ଦକୁ ନିବିଷ୍ଟ ଚିତ୍ତରେ ଶୁଣିଲା ପରି ଦେଖା ଯାଉଥାଏ । ବିରକ୍ତ ହୋଇ ଦୁହେଁ ପାଟି କଲେ—"କଅଣ ହୋଇଛି ?"

କାଳୁ ଗମ୍ଭୀର ହୋଇ କହିଲା—"ଗୋଟାଏ ସିଲିଣ୍ଡର କାମ କରୁନି ।"

"ଗାଡ଼ି ତେବେ ଏତେ ବାଟ ଆସିଲା କେମିତି ?"

"ସେଲ୍‌ସ୍‌ରଏସ୍ ଗାଡ଼ି, ବାରଟା ସିଲିଣ୍ଡର, ଗୋଟାଏ କାମ କଲାନି, ଅନ୍ୟ ଏଗାରଟା ତାକୁ ଟେଲିନେଇ ଆସିଲେ ।"

ଆଣିଲେତ କଲେଜ ଯାଏ ନେଇ ଯାଇ ଥାଆନ୍ତେ, ଅଟକାଇଲେ କାହିଁକି ?"

"ଆଜ୍ଞା ଇଞ୍ଜିନ୍ କଥା ଆପଣ ବୁଝି ପାରିବେ ନାହିଁ । ସଚ୍ଚା ଡ୍ରାଇଭର୍ ଯିଏ, ସେ କୌଣସି ପ୍ରକାର ଗୋଳମାଳ ଜାଣି ପାରିଲେ ତାକୁ ନ ସଜାଡ଼ି କେବେହେଲେ ଗାଡ଼ି ଚଳେଇବ ନାହିଁ । ସେ କେବେହେଲେ ଇଞ୍ଜିନକୁ ବେଶି ଖରାପ ହେବାକୁ ଦେବନି । ଏତେ ଦାମିକା ଗାଡ଼ି ! ମୁଁ ଜାଣୁ ଜାଣୁ ତାକୁ ଅଧିକ ଖରାପ କରି ପାରିବିନି ।

"କାହିଁ କେଉଁଠି ଖରାପ ଶବ୍ଦ ବାହାରୁନି ?"

"ଆଜ୍ଞା କାନଡେରି ଶୁଣନ୍ତୁ । ସବୁ ସିଲିଣ୍ଡର ଠିକ୍ ଠିକ୍ କାମ କରୁଥିଲେ ଗୁଡ଼ୁର୍, ଗୁଡ଼ୁର୍, ଗୁଡ଼ୁର୍, ଗୁଡ଼ୁର୍ ଶବ୍ଦ ହେଉଥାଆନ୍ତା, କିନ୍ତୁ ଶୁଣନ୍ତୁ—ଗୁଡ଼ୁର୍, ଗୁଡ଼ୁର୍, ଗୁଡ଼ୁର୍ । ଗୁଡ଼ୁର୍, ଗୁଡ଼ୁର୍, ଗୁଡ଼ର୍ ମୋଟରଟା କେମିତି ଗାଡ଼ି ଚଳାଉଥିଲା କେଜାଣି ।"

ଦୁହେଁ ଭକୁଆ ହୋଇ ବସି ଥାଆନ୍ତି । କାଳୁ ରେଞ୍ଚଟାଏ ଧରି ପଛାକୁ ଗଲା ଓ ବୋନେଟ୍ ଟେକି ମୋଡ଼ାମୋଡ଼ି ଆରମ୍ଭ କରିଦେଲା । ପନ୍ଦର ମିନିଟ୍ ଖଣ୍ଡେ ଖୋଲାଖୋଲି କଷାକଷି ପରେ କାଳୁ ବୋନେଟ୍ ପକାଇ ଦେଇ ଆସି ନିଜ ଥାନରେ ବସିଲା । ତୃପ୍ତ ମନରେ କହିଲା— "ଏଥର ଶବ୍ଦକୁ ବାରନ୍ତୁ—ଠିକ୍ ଗୁଡ଼ୁର୍ ଗୁଡ଼ୁର୍ ଗୁଡ଼ୁର୍ ଗୁଡ଼ୁର୍ ହେଉଛି । ଡିଷ୍ଟ୍ରିବ୍ୟୁଟର୍‌ରେ ଗଣ୍ଡଗୋଳ ଥିଲା । ନ ସଜାଡ଼ି ମୋଟରଟା କେମିତି ଚଳାଉଥିଲା କେଜାଣି ?"

"ହଉ ହଉ, ଏଥର ଗୁଡ୍‌ଲ୍ ଗୁଡ୍‌ରୁ ଫୁଡ୍‌ର୍ ଫାଡ୍‌ର୍ ହେଲା । ଏବେ ଚଳେଇବଟି ।"

ଗାଡ଼ିଟା ପୁଣି ପକ୍ଷୀରାଜ ପରି ଥୋଡ଼ାଏ ବାଟ ଉଡ଼ି ଗୃଲଗଲା । ନିର୍ଦ୍ଧାରିତ ସମୟରୁ ଅଧ ଘଣ୍ଟାଏ କି ଘଣ୍ଟାଏ ଡେରି ହୋଇଗଲେ ହୋଇଯିବ । ଦୈବ ଦୁର୍ଯୋଗକୁ ହାତ କାହାର ? କର୍ତ୍ତା ଜଣକ ଏହାପରି କୈଫିୟତ ଦେବାକୁ ମନରେ ବିଗ୍ଭରୁ ଥାଆନ୍ତି, ଗାଡ଼ି ପୁଣି ଗୋଟିଏ ଗହଳିଆ ଗଛ ମୂଳରେ ଅଟକିଲା ।

ମୁକୁନ୍ଦ ବାବୁ ବିରକ୍ତ ହୋଇ ପଗ୍ଭରିଲେ—"ଗାଡ଼ିତ ପାଣିପରି ଗ୍ଭଲିଛି, ଫେର୍ ଅଟକେଇଲ କାହିଁକି ?"

"ଆଜ୍ଞା ଗଣ୍ଡଗୋଳଟା ଆପଣ ଧରି ପାରୁ ନାହାନ୍ତି, ୪ ନମ୍ବର ସିଲିଣ୍ଡର୍‌ର ସ୍ପାର୍କିଂପ୍ଲଗ୍‌ରେ କାର୍ବନ ଜମି ଗଲାଣି; ମୋଟରଟା ଇଞ୍ଜିନ୍‌କୁ ଟିକିଏ ହେଲେ ନଜର ଦେଉନି । ଇଞ୍ଜିନ୍‌ର ଗୋଟିଏ ଅଂଶ ଖରାପ ହେଲେ ଓ ସେ ଖରାପକୁ ନ ସଜାଡ଼ିଲେ ଇଞ୍ଜିନ୍‌ର ଗ୍ଭରିଆଡ଼କୁ ଆଞ୍ଚ ଲାଗିବ । ସଜଡ଼ାରେ ଯେତିକି ଡେରି ହେବ ଇଞ୍ଜିନ୍‌ର ସେତିକି ବେଶି କ୍ଷତି ହେବ, ମୁଁ ଜାଣୁ ଜାଣୁ ଏଡ଼େ ବଡ଼ ଦାମିକା ଗାଡ଼ିର କ୍ଷତି ହେବାକୁ ଦେବିନି ।"

ଦୁହିଁଙ୍କ ମୁହଁରୁ ଆଉ କଥା ବାହାରିଲା ନାହିଁ । କାଲୁ ବୋନେଟ୍ ଉଠାଇ ସ୍ପାର୍କ୍‌ପ୍ଲଗ୍‌କୁ ଖୋଲି ଦେଲା, ଟିକିଏ ଗ୍ଭହିଁ ଦେଇ ବିଜୟୋଲ୍ଲାସରେ ତାକୁ ଦୁହିଁଙ୍କୁ ଦେଖାଇ କହିଲା—"ଦେଖନ୍ତୁ କେତେ କାର୍ବନ ଜମିଛି, ଏଥିରେ ସ୍ପାର୍କିଂ ହବ କୁଆଡ଼ୁ ?

"ଆଉ ଦେଖାଇବା ଦରକାର ନାହିଁ, କଅଣ କରି ଯାଉଛ ଶୀଘ୍ର କରିଯାଅ ।"

ଯନ୍ତ୍ର ବାକ୍‌ସ ଅଣ୍ଟାଳି କାଲୁ ଖଣ୍ଡିଏ ଶିରିଷ କାଗଜ କାଢ଼ିଲା । ପ୍ଲଗ୍‌କୁ ସେଥିରେ ଘଷାଘଷି କରି ଫିଟ୍ କରିଦେଲା । ଗାଡ଼ି ପୁଣି ପାଣିପରି ଛୁଟିଛି । କର୍ତ୍ତା ଜଣକ ଭାବୁଥାଏ—"ଅନ୍ୟାନ୍ୟ କର୍ମକର୍ତ୍ତାମାନେ ବଗିଡ଼ି ଯିବେଣି, ମୋ ଉପରେ ଚାଡ଼ି ଯିବେଣି ମୋତେ ଦାୟିତ୍ୱହୀନ, କାଣ୍ଡଜ୍ଞାନହୀନ ବୋଲି ବିଗ୍ଭରୁଥିବେ ।"

ହାୟ ହାୟ, ୪ ମାଇଲ ଖଣ୍ଡେ ଯାଇଛୁ କି ନା କାଲୁ ପୁଣି ଗାଡ଼ି ଅଟକେଇଲା । ସଙ୍ଗେ ସଙ୍ଗେ ଇଞ୍ଜିନ ଟାକୁ ବି ବନ୍ଦ କରିଦେଲା ।

ଦୁହିଁଙ୍କର ଆଉ ସାହସ ନଥାଏ ପଚାରିବାକୁ । ବହୁ କଷ୍ଟରେ ମୁକୁନ୍ଦବାବୁ କୁନ୍ଥେଇ କୁନ୍ଥେଇ ପଚାରିଲେ, "ଫେର୍ ମୋଟ କଅଣ କଲା ?

"ଆଜ୍ଞା ସେ ମୋଟରଟାକୁ କାହିଁକି ରଖିଛନ୍ତି ? ଏଡ଼େ ବଡ଼ ଦାମିକା ଗାଡ଼ିକୁ ଏତେ ଡ଼ିଫେକ୍‌ଟ ଥାଇ ଚଳାଉଛନ୍ତି କେମିତି ? ରୋଲସ୍ ରଏସ୍ ବୋଲି ଚଳି ଯାଉଛି, ଆଉ କୋଉ ଗାଡ଼ି ହୋଇଥିଲେ ଦଫାଡ଼୍ ହୋଇ ଯାଆନ୍ତାଣି ।

"ଗାଡ଼ି ଯୁରୁଖୁରୁରେ ଚାଲିଛି ତ ?"

"କେତେବେଳେ ଦଗା ଦେବା ପୂର୍ବରୁ-ହୁସିଆର ନ ହେବା କାହିଁକି ? ଅଳ୍ପ ଖରାପ ବେଳୁ ସଜାଡ଼ି ନ ନେବା କାହିଁକି ? ବେଶି ଖରାପ ଯାଏ ରହିଁ ବସିବା କାହିଁକି ? ଦଶ ଗୁଣ ଅଧିକା ଖର୍ଚ୍ଚହିଁ ସାର ହେବ । ସଚ୍ଚା ଡ୍ରାଇଭରର୍ ଷ୍ଟକରି ଗୁଡ଼ି ଦେବ ପଛଟକେ ଏମିତିଆ କାମ କରାଇ ଦେବନି ।"

"କଅଣ ଶୀଘ୍ର ସଜାଡ଼ି ହେବ ନା ନାହିଁ ?''

"ଆଜ୍ଞା ଖରାପ କହୁଛି କମ୍ ଧରଣର ନୁହେଁ । ୫ ନମ୍ବର ପିଷ୍ଟନ୍‌ର କନେକ୍‌ଟିଂ ରଡ଼୍ କେମିତି ଚଡ଼କି ଯାଇଛି; ଫଳରେ ଗଜନ୍‌ପିନ୍ ଗଣ୍ଡଗୋଳ କରୁଛି । ଗଜନ୍‌ପିନ୍ କଡ଼କୁ ଖସି ଯାଇ ସିଲିଣ୍ଡର୍‌ରେ ଦାଗ କରିଦେଏ ତେବେ ଏଡ଼େ ଦାମିକା ଗାଡ଼ି ଏକାବେଳେକେ କଣ୍ଡମ୍ ହୋଇଯିବ ।

"ହେ ଭଗବାନ ! ଏତିକି ବେଳକୁ ଏ ଗୋଜନ୍‌ପିନ୍ ଦେଖାଇବାକୁ ଥିଲା । ଏ ଗୋଜକୁ ଏବେ କରୁ କଅଣ—''

"ଏ ଅବସ୍ଥାରେ ଇଞ୍ଜିନ ଚଳେଇବା ମାନେ ବିପଦ । ବର୍ତ୍ତମାନ ସ୍ଥାକୁ ଗୋଟିଏ ଟ୍ରକ୍ ପଛରେ ବାନ୍ଧି ଗ୍ୟାରେଜ୍ ନ ନେଲେ ଚାଲିବ ନାହିଁ । ଆପଣମାନେ ଅପେକ୍ଷା କରନ୍ତୁ । ସର୍ଭିସ୍‌ବସ୍ କି ଟ୍ରକ୍‌ଟାଏ ଆସିଲେ ବସି ଚାଲିଯିବେ । ମୁଁ ରହୁଛି ଆଉ ଗୋଟିଏ ଟ୍ରକ୍ ପଛରେ ବାନ୍ଧି ଗ୍ୟାରେଜ୍‌କୁ ନେଇଯିବି । ସାରା ଇଞ୍ଜିନ୍‌ଟା ଖୋଲିବାକୁ ପଡ଼ିବ । ଗ୍ୟାରେଜ୍ ନ ଗଲେ ନ ଚଳେ ।''

"ଆରେ କଲେଜ ଯାଏ ନେଇ ଯାଇ ଗୋଜ କାଢୁଥା ।"

"ଆଜ୍ଞା ଟଙ୍କା ନ ଦେଲେ ନ ଦେବେ ପଛେକେ ମୁଁ ଜାଣୁ ଜାଣୁ ମୂର୍ଖାଣ୍ଡିଆ କାମ କରି ପାରିବିନି । ଏତେ ବର୍ଷଧରି ଯେଉଁ ନାମ କମେଇଛି ତାକୁ ଠିକକରେ ଗମେଇ ପାରିବି ନାହିଁ । ଇଜ୍ଜତ ବାଲା ଡ୍ରାଇଭର୍ କେବଳ ଷ୍ଟେଲ୍ ସରଇସ୍ ର ଇଜ୍ଜତ୍ ଜାଣେ—"

ଅନନ୍ୟୋପାୟ ହୋଇ ମୁକୁନ୍ଦବାବୁ ଓ କର୍ତ୍ତା ଜଣକ ଗାଲରେ ହାତ ଦେଇ ଚୁପ ଗୃପ ହୋଇ ବସିଲେ । କାଲୁ ମିଆଁ ପଦାରେ ଠିଆ ହୋଇ ରସ୍ତାର ଏ ପାଖ ସେ ପାଖ ଗୃହିଁ ଲାଗିଲା । କିଛି ସମୟ ପରେ ପଛ ଆଡ଼ୁ ଗୋଟିଏ ଖାଲି ଟ୍ରକ୍ ଆସିଲା । କାଲୁ ହାତ ଟେକି ତାକୁ ଅଟକାଇ ଦେଲା । ଟ୍ରକ୍ ଡ୍ରାଇଭର୍ଟି କାଲୁର ଚେଲା ଥିଲା । ତେଣୁ କାଲୁ କଥାରେ ଦୁହିଁଙ୍କୁ କଲେଜ ଯାଏ ନେଇ ଯିବାକୁ ରାଜି ହେଲା । ମୁକୁନ୍ଦବାବୁ ବି ବାଧ୍ୟ ହୋଇ କାଲୁ ଜିମାରେ ଗାଡ଼ି ଗୁଡ଼ିଦେଇ ଟ୍ରକ୍‌ରେ ଯିବାକୁ ରାଜି ହେଲେ ।

ଘୋର କର୍କଶ ଗର୍ଜନ, ଧୂଳି, ପବନ ମାଡ଼, ଟାଣୁଆ ବଦା ଆସନରେ ଛେଚଗୁଚ ହୋଇ ଗଲାବେଳେ ମୁକୁନ୍ଦବାବୁ ଭାବୁ ଥାଆନ୍ତି, ଛେନାରୁ ଜୀବନରେ ଆଉ ଗୃେପା ଛଡ଼େଇବି ନାହିଁ କି ଅଭଲ ନମ୍ବର ଘୃଳକ ଆଉ ଲୋଡ଼ିବି ନାହିଁ ।

